# କଳିଙ୍ଗର ମନ୍ଦିର ଗାତ୍ରରେ
# ଦେବଦେବୀ ମୂର୍ତ୍ତି

(ଇତିହାସ ପୃଷ୍ଠଭୂମିରେ ମୂର୍ତ୍ତିତତ୍ତ୍ୱ ଓ କଳାଶୈଳୀ ଅଧ୍ୟୟନ)

ଦୁର୍ଗାଚରଣ ପଣ୍ଡା



ଭୁବନେଶ୍ୱର: ୨୦୦୬




କଳିଙ୍ଗର ମନ୍ଦିର ଗାତ୍ରରେ ଦେବଦେବୀ ମୂର୍ତ୍ତି

ଲେଖକ: ଦୁର୍ଗାଚରଣ ପଣ୍ଡା (ସର୍ବସ୍ୱତ୍ୱ ସଂରକ୍ଷିତ)

ପ୍ରକାଶିକା: ଶ୍ରୀମତୀ ପଦ୍ମାବତୀ ପଣ୍ଡା
ଏମ୍.ବି-୮୩. ବ୍ରୀଟ୍ କଲୋନୀ, ବଡ଼ଗଡ଼
ଭୁବନେଶ୍ୱର- ୭୫୧୦୧୮

ପ୍ରକାଶନ କାଳ: ୨୦୦୬, ପ୍ରଥମ ସଂସ୍କରଣ

ଅକ୍ଷର ସଜ୍ଜା: ଦିଲିପ କୁମାର
ମୁଦ୍ରଣ: ଆର୍ଟ ସେଣ୍ଟର, ଭୁବନେଶ୍ୱର
ପ୍ରଚ୍ଛଦ ଶିଳ୍ପୀ: ସବିତା ପଣ୍ଡା

ମୂଲ୍ୟ: ଟ.୧୨୫/-(ଏକଶହ ପଚିଶ ଟଙ୍କା ମାତ୍ର)

Kalingara Mandira Gatrare
**Devadevi Murti**

Author: **Durga Charan Panda** ©

Published by: **Smt. Padmabati Panda**
MB-83. BRIT Colony, Badagada
BHUBANESWAR-751018,India

D.T.P by: Dillip Kumar
Printed by: Art Centre,Bhubaneswar.

First Published: 2006
Cover Art by: Sabita Panda

Price: Rs.125/-
(Rupees One Hundred Twenty Five Only)

## ସମର୍ପଣ

ଓଡ଼ିଶାର ପ୍ରତ୍ନତତ୍ତ୍ୱ ପୃଷ୍ଠଭୂମିକୁ
ପରିପୁଷ୍ଟ କରିଥିବା ଓଡ଼ିଆ ବିଦ୍ୱାନଗଣ;
ଯାହାଙ୍କ ପ୍ରତ୍ୟକ୍ଷ କିମ୍ବା ପରୋକ୍ଷ ସଂସ୍ପର୍ଶ
ମୋତେ ପ୍ରତ୍ନତତ୍ତ୍ୱ ଅଧ୍ୟୟନରେ ଅନୁପ୍ରାଣୀତ
କରିଛି, ସେହି ମହାନ୍ ଆତ୍ମା

*৺ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ, ৺ କେଦାରନାଥ ମହାପାତ୍ର,*
*৺ ଡଃ. କୃଷ୍ଣଚନ୍ଦ୍ର ପାଣିଗ୍ରାହୀ,*
*৺ ସୁଶୀଲ୍ ଚନ୍ଦ୍ର ଦେ ଓ ৺ ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ*

ଅମ୍ଲାନ ସ୍ମୃତିରେ ସମର୍ପିତ ଏହି ପୁସ୍ତକ ।



ଲେଖକ

# ସୂଚୀପତ୍ର




ଦେବଦେବୀ ମୂର୍ତ୍ତିଙ୍କ ହସ୍ତମୁଦ୍ରା ଓ ଆୟୁଧ, କ୍ରମ ବର୍ଣ୍ଣନାର ଉଦାହରଣ ଚିତ୍ର

# ପ୍ରାକ୍‌କଥନ

ମନ୍ଦିରମାଳିନୀ ଓଡ଼ିଶା ତା'ର ଇତିହାସ ଯୁଗୀୟ 'କଳିଙ୍ଗ ଶୈଳୀ ମନ୍ଦିର ସ୍ଥାପତ୍ୟ' ନିମନ୍ତେ ବିଶ୍ୱବିଦିତ ହେଲେ ହେଁ, ଏହି ମନ୍ଦିର ଗାତ୍ରରେ ଥିବା ଉଚ୍ଚକୋଟୀର ମୂର୍ତ୍ତିକଳା ନିମନ୍ତେ ସମକକ୍ଷ ସମ୍ମାନର ଅଧିକାରୀ ହୋଇପାରିନାହିଁ। ଏହାର ମୁଖ୍ୟ କାରଣ ହେଉଛି; ଏହି ବିଷୟର ଚର୍ଚ୍ଚା, ପ୍ରଚାର ଓ ପ୍ରସାରର ଅଭାବ। ଜଣେ ସାଧାରଣ ବ୍ୟକ୍ତି ଦେବତା ଦର୍ଶନାର୍ଥେ ମନ୍ଦିରରେ ପ୍ରବେଶ କରେ। ପ୍ରତ୍ୟାବର୍ତ୍ତନ ସମୟରେ ମନ୍ଦିର ଗାତ୍ରର ମୂର୍ତ୍ତି ଓ ମଣ୍ଡନକୃତିଗୁଡ଼ିକ ଉପରେ ସାଧାରଣ ଭାବେ ଦୃଷ୍ଟି ନିକ୍ଷେପ କରୁଥିବାବେଳେ ଜଣେ କଳାପ୍ରେମୀ କଳାକୃତିଗୁଡ଼ିକର କମନୀୟତାରେ ମୁଗ୍ଧ ହୋଇ କିଛି ସମୟ ସ୍ଥିର ହୋଇପଡ଼େ। ତେବେ, ଜଣେ ଐତିହାସିକ, ପ୍ରତ୍ନତତ୍ତ୍ୱବିତ୍, କଳାତତ୍ତ୍ୱବିତ୍ ତଥା ଏହି ବିଷୟ ଅଧ୍ୟୟନ କରୁଥିବା ଛାତ୍ରଛାତ୍ରୀଗଣ କୃତିଗୁଡ଼ିକର ଅଧ୍ୟୟନ ଓ ଅନୁଶୀଳନରେ ଆଗ୍ରହ ପ୍ରକାଶ କରିଥାଆନ୍ତି। ପରିତାପର ବିଷୟ ଯେ, ଓଡ଼ିଶାର ଏହି କଳା ଓ ସଂସ୍କୃତି ଉପରେ ସମ୍ୟକ ଜ୍ଞାନ ଆହରଣ ନିମନ୍ତେ ଓଡ଼ିଆରେ ଖଣ୍ଡିଏ ଖଣ୍ଡିଏ ପୁସ୍ତକର ଅଭାବ ରହିଥିଲା। ଏହି ଲେଖକଙ୍କ ପ୍ରଚେଷ୍ଟାରେ 'କଳିଙ୍ଗର ମନ୍ଦିର ସ୍ଥାପତ୍ୟ' ପୁସ୍ତକ ୨୦୦୦ ମସିହାରେ ପ୍ରକାଶ ପାଇଥିବାବେଳେ ମୂର୍ତ୍ତିକଳା ସମ୍ପର୍କିତ 'କଳିଙ୍ଗର ମନ୍ଦିର ଗାତ୍ରରେ ଦେବଦେବୀ ମୂର୍ତ୍ତି' ପୁସ୍ତକଟି ଚଳିତ ବର୍ଷ ଅର୍ଥାତ୍ ୨୦୦୬ ମସିହାରେ ପ୍ରକାଶ ପାଇବାକୁ ଯାଉଛି। ଏହି ପୁସ୍ତକର ପାଣ୍ଡୁଲିପି ଯଥେଷ୍ଟ ପୂର୍ବରୁ ପ୍ରସ୍ତୁତ ହୋଇଥିବା ସତ୍ତ୍ୱେ ଏହାର ପ୍ରକାଶନରେ ଅହେତୁକ ବିଳମ୍ବ ଘଟିଥିବାରୁ ଲେଖକ ଦୁଃଖିତ।

ବେଦ, ଉପନିଷଦ, ଧର୍ମଶାସ୍ତ୍ର ଓ ପୁରାଣମାନଙ୍କରେ ବ୍ରାହ୍ମଣ୍ୟ ଧର୍ମର ବିଭିନ୍ନ ଦେବଦେବୀଙ୍କ ରୂପ ବର୍ଣ୍ଣିତ ହୋଇଛି। ଅର୍ଥାତ୍, ଏଥିରେ ଦେବତାଙ୍କ ଅଙ୍ଗ, ବର୍ଣ୍ଣ, ଆସନ, ଭାବଭଙ୍ଗୀ, ବସ୍ତ୍ରଭୂଷଣ, ହସ୍ତରେ ଧାରଣ କରିଥିବା ଆୟୁଧ ଓ ବାହନମାନଙ୍କ ସୂଚନା ଦିଆଯାଇଛି। ତେବେ, କେତେକ କ୍ଷେତ୍ରରେ ଏହି ଶାସ୍ତ୍ରୀୟ ବର୍ଣ୍ଣନାଗୁଡ଼ିକରେ ପାର୍ଥକ୍ୟ ଥାଏ। ଏହି ସବୁ ମୂର୍ତ୍ତି ନିର୍ମାଣ ଉପରେ କେତେକ ଶିଳ୍ପଶାସ୍ତ୍ର ମଧ୍ୟ ରଚିତ ହୋଇଛି। କେତେକ ମୂର୍ତ୍ତି ଶାସ୍ତ୍ରୀୟ ମତରେ ନିର୍ମିତ ହୋଇଥିବାବେଳେ ଅନ୍ୟ କେତେକରେ ଏହାର ବିଚ୍ୟୁତି ମଧ୍ୟ ଦେଖାଯାଏ। ସେହିପରି ବିଭିନ୍ନ ସ୍ଥାନ ଓ ସମୟରେ ନିର୍ମିତ ମୂର୍ତ୍ତିଗୁଡ଼ିକର ଉପସ୍ଥାପନା ବା କଳାଶୈଳୀରେ ମଧ୍ୟ ଭିନ୍ନତା ଥାଏ। ସାମଗ୍ରିକ ଭାବେ ଏହାହିଁ 'ମୂର୍ତ୍ତିତତ୍ତ୍ୱ'। ଏହା ଏକ ବ୍ୟାପକ ବିଷୟ ହୋଇଥିବାବେଳେ ଓଡ଼ିଶାର କଳାପ୍ରେମୀ ବ୍ୟକ୍ତିବିଶେଷ ଓ ଛାତ୍ରଛାତ୍ରୀଙ୍କୁ ଇତିହାସ ଯୁଗର ଦେବଦେବୀ ମୂର୍ତ୍ତିକଳା ସମ୍ପର୍କରେ ସମ୍ୟକ ଧାରଣା ଦେବା ନିମନ୍ତେ ଏହି ପୁସ୍ତକଟି ଉଦ୍ଦିଷ୍ଟ କହିବା ସମୀଚୀନ ହେବ।

ମୂର୍ତ୍ତିତତ୍ତ୍ୱ ଅଧ୍ୟୟନ ବେଳେ ଦେଖାଯାଏ ଯେ, ଦେବଦେବୀ ପ୍ରତିମାଗୁଡ଼ିକର ଆସନ, ଆୟୁଧ ଓ ବାହନ ଶାସ୍ତ୍ରୀୟତା ଉପରେ ଆଧାରିତ ହୋଇଥିବାବେଳେ ସେମାନଙ୍କ ବସ୍ତ୍ରଭୂଷଣରେ ରହିଥାଏ ଶାସ୍ତ୍ରୀୟତା ସହିତ ସମସାମୟିକ ସାମାଜିକ ଓ ସାଂସ୍କୃତିକ ପରମ୍ପରାର ପ୍ରଭାବ ଏବଂ ମୂର୍ତ୍ତିଗଠନ ବା କଳାଶୈଳୀରେ ପ୍ରତିଫଳିତ ହୋଇଥାଏ ସମୟାନୁକ୍ରମ କଳାର ବିକାଶଧାରା। ଏହା ବ୍ୟତୀତ ବିଭିନ୍ନ ସ୍ଥାନର କଳାକୃତିରେ ପ୍ରାନ୍ତୀୟତାର ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ। ଯେପରିକି, ଓଡ଼ିଶାର କେତେକ ଦେବଦେବୀ ପ୍ରତିମାରେ ମଧ୍ୟ ଆଞ୍ଚଳିକ ବୈଶିଷ୍ଟ୍ୟ ରହିଛି। ଏହି ପୁସ୍ତକର ବିଭିନ୍ନ ଅଧ୍ୟାୟରେ ଏହାର କେତେକ ଉଦାହାରଣ ଦିଆଯାଇଛି।

ଏକ ନିର୍ଦ୍ଦିଷ୍ଟ ଧାରାରେ ମୂର୍ତ୍ତିତତ୍ତ୍ୱ ଅଧ୍ୟୟନ କରାଯାଏ। ଯେପରିକି, ଦେବତାମାନେ ହସ୍ତରେ ପ୍ରଦର୍ଶନ କରୁଥିବା ମୁଦ୍ରା ତଥା ଧାରଣ କରିଥିବା ପଦାର୍ଥ ବା ଆୟୁଧର ସ୍ଥିତି ଏହି ବିଷୟର ଏକ ମୁଖ୍ୟ ବିଭାଗ। କୌଣସି ଦେବତାଙ୍କ ସ୍କନ୍ଧ ସହିତ ରହିଥିବା ମୂଳ ହସ୍ତଦ୍ୱୟକୁ 'ମୁଖ୍ୟହସ୍ତ' କୁହାଯାଉଥିବାବେଳେ ଏଥିରେ ପ୍ରଦର୍ଶିତ ଦକ୍ଷିଣହସ୍ତର ମୁଦ୍ରା କିମ୍ବା ସେଥିରେ ଧାରଣ କରିଥିବା ପଦାର୍ଥର ସୂଚନା ପ୍ରଥମେ ଓ ବାମହସ୍ତର ସୂଚନା ପରେ ଉଲ୍ଲେଖ କରାଯାଏ। ଦ୍ୱିତୀୟ ପର୍ଯ୍ୟାୟରେ ଦକ୍ଷିଣ ପାର୍ଶ୍ୱର ଅନ୍ୟ ହସ୍ତଗୁଡ଼ିକରେ ଥିବା ପଦାର୍ଥ ବା ଆୟୁଧଗୁଡ଼ିକର ବର୍ଣ୍ଣନା ଉପରୁ ତଳକୁ ଏବଂ ପରେ ବାମପାର୍ଶ୍ୱ ହସ୍ତଗୁଡ଼ିକରେ ଥିବା ଆୟୁଧଗୁଡ଼ିକର ସୂଚନା ଅନୁରୂପ ଦିଆଯାଏ। ଏହା ବ୍ୟତୀତ ମୂର୍ତ୍ତିର ସମ୍ପୂର୍ଣ୍ଣ ବର୍ଣ୍ଣନାବେଳେ କ୍ରମାନୁସାରେ ଆସନ, ବାହନ, ଭଙ୍ଗୀ, ହସ୍ତର ମୁଦ୍ରା ଓ ଆୟୁଧ, ଶରୀରର ବସ୍ତ୍ରଭୂଷଣ, ମୁଖ୍ୟ ମୂର୍ତ୍ତି ସହିତ ଥିବା ଅନ୍ୟ କ୍ଷୁଦ୍ର ପିତୁଳା ବା ମୂର୍ତ୍ତିଗୁଡ଼ିକର ସୂଚନା ଏବଂ ପରିଶେଷରେ ପ୍ରଚ୍ଛଦର ପ୍ରଭାମଣ୍ଡଳ ଓ ତୋରଣ ଇତ୍ୟାଦି ମଣ୍ଡନକୃତି ସମ୍ପର୍କରେ ଉଲ୍ଲେଖ କରାଯାଏ। ଏହାର ଉଦାହରଣ ପୂର୍ବ ପୃଷ୍ଠାର ଏକ ଦେବୀ ଚିତ୍ରରେ ଉପଲବ୍ଧ।ଏହି ପୁସ୍ତକର ମୂର୍ତ୍ତି ବର୍ଣ୍ଣନାରେ ପ୍ରାୟତଃ ଉପରୋକ୍ତ ଧାରା ଅନୁସୃତ ହୋଇଛି।

ଓଡ଼ିଶାର ବିଭିନ୍ନ ସ୍ଥାନରେ ଇତିହାସ ଯୁଗର ମନ୍ଦିର ଓ ମୂର୍ତ୍ତିକଳା ରହିଛି। ତେବେ, ଛାତ୍ରଛାତ୍ରୀମାନଙ୍କ ସୁବିଧା ନିମନ୍ତେ ଏହି ପୁସ୍ତକରେ ଐତିହାସିକ ଓ ପ୍ରତ୍ନତତ୍ତ୍ୱବିତ୍‌ଙ୍କ ସୁପରିଚିତ କେତେକ ସ୍ଥାନର ମନ୍ଦିର ଓ ତା'ର ମୂର୍ତ୍ତିକଳା ବିଷୟରେ ସୂଚନା ଦିଆଯାଇଛି। ଏହି ପରିପ୍ରେକ୍ଷୀରେ ଭୁବନେଶ୍ୱର ଅଗ୍ରଣୀ ସ୍ଥାନ ଅଧିକାର କରେ। କାରଣ ଏଠାରେ ଓଡ଼ିଶାର ପ୍ରାରମ୍ଭ ସମୟର ମୂର୍ତ୍ତିକଳାଠାରୁ ପାରମ୍ପରିକ କଳାର ଅନ୍ତିମ ସମୟ ଅର୍ଥାତ୍, ଖ୍ରୀଷ୍ଟୀୟ ୧୬ଶ ଶତାବ୍ଦୀ ମଧ୍ୟରେ ନିର୍ମିତ ସବୁ ସମୟର ମୂର୍ତ୍ତିକଳା ଦେଖିବାକୁ ମିଳେ। କହିବାକୁ ଗଲେ ଛାତ୍ରଛାତ୍ରୀମାନଙ୍କ ମୂର୍ତ୍ତିତତ୍ତ୍ୱ ଓ କଳାଶୈଳୀ ଅଧ୍ୟୟନ ନିମନ୍ତେ ଭୁବନେଶ୍ୱର ଏକ ଅତୁଳନୀୟ ସ୍ଥାନ। ଏହା ବ୍ୟତୀତ ନିକଟରେ ପୁରୀର ଶ୍ରୀଜଗନ୍ନାଥ ମନ୍ଦିର, କୋଣାର୍କର ସୂର୍ଯ୍ୟମନ୍ଦିର, ପ୍ରାଚୀନଦୀ ଅବବାହିକାର ବହୁ କୀର୍ତ୍ତି ଓ ଚତୁଃପାର୍ଶ୍ୱରେ ଥିବା ଅନ୍ୟାନ୍ୟ ସ୍ଥାନର ମନ୍ଦିରମାନଙ୍କରେ ବହୁ ମୂର୍ତ୍ତି ରହିଛି। କଳା ଇତିହାସ ଓ ପ୍ରତ୍ନତତ୍ତ୍ୱର ଛାତ୍ରଛାତ୍ରୀମାନେ ମୂର୍ତ୍ତିକଳା ଓ ମୂର୍ତ୍ତିତତ୍ତ୍ୱ ବିଷୟର ପୁସ୍ତକ ପଠନ ସହିତ ବାସ୍ତବ ଜ୍ଞାନ ଆହରଣ ନିମନ୍ତେ ବିଭିନ୍ନ ସ୍ଥାନର ମୂର୍ତ୍ତିଗୁଡ଼ିକୁ ନିରୀକ୍ଷଣ କରିବା ଆବଶ୍ୟକ।

ଓଡ଼ିଶାର ମୂର୍ତ୍ତିତତ୍ତ୍ୱ ଓ ମୂର୍ତ୍ତିକଳା ଅଧ୍ୟୟନ ଏକ ବ୍ୟାପକ ବିଷୟ। ସ୍ୱଳ୍ପ ମୂଲ୍ୟର ଏହି ପୁସ୍ତକଟିରେ ଏହାର ସଂକ୍ଷିପ୍ତ ଉପସ୍ଥାପନାହିଁ ହୋଇଛି। ପ୍ରତ୍ୟେକ ବିଭାଗରେ ପ୍ରାଚୀନ, ମଧ୍ୟଯୁଗୀୟ ଓ ପରବର୍ତ୍ତୀ କାଳର କେତେକ ଉଲ୍ଲେଖଯୋଗ୍ୟ ମୂର୍ତ୍ତିର ସୂଚନା ସହିତ କେତେକ ଗୁରୁତ୍ୱପୂର୍ଣ୍ଣ କୃତିର ବର୍ଣ୍ଣନା ଦିଆଯାଇଛି। ପୁସ୍ତକଟି ପାଠ କରିବାପରେ ଛାତ୍ରଛାତ୍ରୀମାନେ ଓଡ଼ିଶାର ଦେବଦେବୀ ମୂର୍ତ୍ତିଗୁଡ଼ିକର ସାଧାରଣ (general) ମୂର୍ତ୍ତିତତ୍ତ୍ୱ (iconography) ତଥା କଳାଶୈଳୀ (art style) ବିଷୟରେ ସମ୍ୟକ ଧାରଣା କରିପାରିବେବୋଲି ଆଶାକରେ। ଲେଖକଙ୍କ ଅଜ୍ଞତାରେ ପୁସ୍ତକରେ ରହିଥିବା ଯେ କୌଣସି ପ୍ରକାର ତ୍ରୁଟି ନିମନ୍ତେ ଲେଖକ ସୁଧୀ ପାଠକପାଠିକାଙ୍କଠାରେ କ୍ଷମା ପ୍ରାର୍ଥନା କରନ୍ତି।

**ବିଜୟା ଦଶମୀ** — *ଦୁର୍ଗାଚରଣ ପଣ୍ଡା*

ତା.୦୨.୧୦.୨୦୦୬

# କଳିଙ୍ଗ ଶୈଳୀ ମୂର୍ତ୍ତିକଳାର ପୃଷ୍ଠଭୂମି

ପ୍ରାଚୀନ ଓଡ୍ରଦେଶ ବିଶାଳ କଳିଙ୍ଗ ସାମ୍ରାଜ୍ୟର ଏକ ଅଂଶ ଥିଲାବୋଲି ଅନୁମାନ କରାଯାଏ। ଏହି ପରିପ୍ରେକ୍ଷୀରେ ଓଡ଼ିଶାର ପାରମ୍ପରିକ ମନ୍ଦିର ସ୍ଥାପତ୍ୟ ଓ ମୂର୍ତ୍ତିକଳା ସର୍ବଭାରତୀୟ ସ୍ତରରେ 'କଳିଙ୍ଗ ଶୈଳୀ' ନାମରେ ପରିଚିତ। ମୌର୍ଯ୍ୟ ସମ୍ରାଟ ଅଶୋକଙ୍କ ଶାସନ ବେଳକୁ କଳିଙ୍ଗ ଏକ ସମୃଦ୍ଧ ଓ ବଳଶାଳୀ ଅଞ୍ଚଳ ଥିବା; ଐତିହାସିକମାନଙ୍କ ଦ୍ୱାରା ସ୍ୱୀକୃତ। ଓଡ଼ିଶାରେ ଅଶୋକଙ୍କ ଦୁଇଟି ଶିଳାଲେଖ ରହିଛି। ଏଥି ମଧ୍ୟରୁ ଗୋଟିଏ ଭୁବନେଶ୍ୱର ନିକଟ ଧଉଳିଠାରେ ଓ ଅନ୍ୟଟି ଗଞ୍ଜାମ ଜିଲ୍ଲାର ପୁରୁଷୋତ୍ତମପୁର ନିକଟ ଜଉଗଡ଼ ଠାରେ ଅବସ୍ଥିତ। ଏହା ବ୍ୟତୀତ ଭୁବନେଶ୍ୱରଠାରେ ଅଶୋକଙ୍କ ଦ୍ୱାରା ସ୍ଥାପିତ ଏକ ସ୍ତମ୍ଭ ଓ ବୌଦ୍ଧ ବିହାରର ପ୍ରତ୍ନାବଶେଷ ମଧ୍ୟ ଦେଖାଯାଏ। ଧଉଳି ଶିଳାଲେଖ ଉପରେ ଥିବା ଅଶୋକଙ୍କ ସମୟର ଏକ ହସ୍ତୀମୂର୍ତ୍ତି ଓ ଅଶୋକସ୍ତମ୍ଭ ସହିତ ଥିବା ସିଂହ ଓ ରେଲିଂ ବାଡ଼ର ଅନ୍ୟ କେତେକ କଳାକୃତିକୁ ପୂର୍ବତନ କେତେକ ଐତିହାସିକ ଓଡ଼ିଶାର ସର୍ବପ୍ରଥମ ମୂର୍ତ୍ତିକଳାବୋଲି ମତ ଦିଅନ୍ତି। ତେବେ, ଏହି ମତ ଗ୍ରହଣଯୋଗ୍ୟ ନୁହେଁ। ଏହାର କାରଣ ନିମ୍ନରେ ପ୍ରଦତ୍ତ ହେଲା।

କଳିଙ୍ଗରେ ଅଶୋକଙ୍କ ବୌଦ୍ଧଧର୍ମ ପ୍ରଚାର ପୂର୍ବରୁ ଶେଷ ଜୈନ ତୀର୍ଥଙ୍କର ମହାବୀର କଳିଙ୍ଗ ଆସି ଜୈନଧର୍ମ ପ୍ରଚାର କରିଥିଲେ। କଳିଙ୍ଗ ଯୁଦ୍ଧ ବେଳକୁ ଯୁଦ୍ଧ କ୍ଷେତ୍ରର ଅନତି ଦୂରରେ ବୌଦ୍ଧଭିକ୍ଷୁ ଉପଗୁପ୍ତ ଉପସ୍ଥିତ ଥିଲେ। ଯାହାଦ୍ୱାରା ଯୁଦ୍ଧ ସମାହିତ ହେବାପରେ ସେ ଅନୁତପ୍ତ ଅଶୋକଙ୍କ ନିକଟକୁ ଆସି ତାଙ୍କୁ ସାନ୍ତ୍ୱନା ଦେବାସହିତ ବୌଦ୍ଧ ଧର୍ମରେ ଦୀକ୍ଷିତ କରାଇଥିଲେ। ଅଶୋକଙ୍କ ଶିଳାଲେଖରୁ ଜଣାଯାଏ ଯେ, କଳିଙ୍ଗରେ ଯଜ୍ଞ ଓ ବଳିପ୍ରଥା ପ୍ରଚଳନ ଥିଲା। ଯାହାକି ବ୍ରାହ୍ମଣ୍ୟ ଧର୍ମ ତଥା ଲୋକ ବିଶ୍ୱାସର ଏକ ଅଙ୍ଗ। ଏଥିରୁ ପ୍ରମାଣିତ ହୁଏ ଯେ, ଅଶୋକଙ୍କ ଆକ୍ରମଣ ବେଳକୁ କଳିଙ୍ଗରେ ଜୈନ ଓ ବୌଦ୍ଧଧର୍ମର ସାଧାରଣ ପ୍ରଚଳନ ଥିଲା। ଏହା ବ୍ୟତୀତ ପ୍ରାଚୀନ ପରମ୍ପରା ଅନୁସାରେ ଏଠାରେ ଲୋକବିଶ୍ୱାସର ଦେବତାମାନେ ମଧ୍ୟ ପୂଜା ପାଉଥିଲେ। ଏହି ଲୋକଦେବତା ଆଦିମ, ଅର୍ଥାତ୍ ଅତି ପ୍ରାଚୀନ ଏବଂ ପରବର୍ତ୍ତୀ ପର୍ଯ୍ୟାୟର ପ୍ରତ୍ୟେକ ମାର୍ଜିତ ଧର୍ମଧାରା ସହିତ ପ୍ରତ୍ୟକ୍ଷ କିମ୍ବା ପରୋକ୍ଷ ଭାବେ ଯୁଗେ ଯୁଗେ ଜଡ଼ିତ।

ପ୍ରାଚୀନ ଲୋକଦେବତାମାନେ ସାଧାରଣତଃ ବୃକ୍ଷ, ଯକ୍ଷ, ନାଗ ଏବଂ ଭୂତ, ପ୍ରେତ, ପିଶାଚ ଭଳି କେତେକ ଅଦୃଶ୍ୟ ଶକ୍ତି । ଏମାନେ ମଙ୍ଗଳ ଏବଂ ଅମଙ୍ଗଳକାରକ ତଥା ସୁରକ୍ଷାର ଦେବତା ବୋଲି ବିଶ୍ୱାସ କରାଯାଏ । ମହାଭାରତ ଯୁଗରେ ଆଚରଣ ଅନୁସାରେ ଲୋକଙ୍କୁ ତିନି ଶ୍ରେଣୀରେ ବିଭକ୍ତ କରାଯାଇଥିଲା । ତାହା ମଧ୍ୟରୁ ସାତ୍ତ୍ୱିକ ଶ୍ରେଣୀର ଲୋକେ ବୈଦିକ ଦେବତାଙ୍କୁ, ରାଜସିକ ଶ୍ରେଣୀର ଲୋକେ ଯକ୍ଷମାନଙ୍କୁ ଓ ତାମସିକ ଶ୍ରେଣୀର ଲୋକେ ଭୂତ, ପ୍ରେତ ଇତ୍ୟାଦି ନିମ୍ନ ଶ୍ରେଣୀୟ ଶକ୍ତିମାନଙ୍କୁ ପୂଜା କରୁଥିଲେ । ଏଣୁ ପ୍ରାଚୀନ ଭାରତରେ ନଗର, ନଗରୀ ଓ ଜନପଦମାନଙ୍କର ସୁରକ୍ଷା ନିମନ୍ତେ ଯକ୍ଷ ଶ୍ରେଣୀୟ ଦେବତାମାନଙ୍କ ପ୍ରତୀକ କିଂବା ପ୍ରତିମା ସ୍ଥାପନ କରି ପୂଜାର୍ଚ୍ଚନା କରାଯାଉଥିଲା । ବୃକ୍ଷ ଓ ନାଗ ପୂଜା ପରମ୍ପରା ସାଧାରଣତଃ ବନବାସୀ ଜନଜାତିମାନଙ୍କ ମଧ୍ୟରେ ଅଧିକ ପ୍ରଚଳନ ଥିଲା । ବୃକ୍ଷ ସର୍ବମଙ୍ଗଳକାରକ ହୋଇଥିବାବେଳେ ନାଗମାନଙ୍କୁ ବଂଶ ବୃଦ୍ଧି ତଥା ସୁରକ୍ଷାର ଦେବତା ବୋଲି ବିଶ୍ୱାସ କରାଯାଉଥିଲା । ଏହି ପ୍ରାଗୈତିହାସିକ ଧର୍ମଧାରଣାକୁ ଭାରତର ବ୍ରାହ୍ମଣ୍ୟ, ଜୈନ ଓ ବୌଦ୍ଧ ଧର୍ମଧାରା ବିଭିନ୍ନ ଭାବରେ ଗ୍ରହଣ କରିଛନ୍ତି । ତେବେ, ଲୋକଦେବତାଙ୍କ ପ୍ରତୀକ ଓ ପ୍ରତିମାଗୁଡ଼ିକ ପୂର୍ବେ ସାଧାରଣତଃ ମାଟି ଓ କାଠରେ ନିର୍ମିତ ହେଉଥିବାରୁ ଦୀର୍ଘସ୍ଥାୟୀ ହୋଇପାରୁନଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ ପଥର ଓ ପୋଡାମାଟି ନିର୍ମିତ ଏହି ପ୍ରକାର ଦେବତା ମୂର୍ତ୍ତୀଗୁଡ଼ିକ ଭାରତର ବିଭିନ୍ନ ସଂସ୍କୃତି ସମ୍ପର୍ଣ୍ଣ ପ୍ରାଚୀନ ଜନବସତି ମାନଙ୍କରେ ସ୍ଥାପିତ ହୋଇଥିବା ଦେଖାଯାଏ । ମୌର୍ଯ୍ୟ ପୂର୍ବବର୍ତ୍ତୀ କାଳୀନ ଏହି ପ୍ରକାର ଅନେକ ପ୍ରତିମାର ପତ୍ନାବଶେଷ ଭାରତର ବିଭିନ୍ନ ସ୍ଥାନରୁ ପ୍ରାପ୍ତ ହୋଇଥାଏ । ତେଣୁ, ଅଶୋକଙ୍କ ପୂର୍ବରୁ କଳିଙ୍ଗ ସମେତ ଭାରତର ବିଭିନ୍ନ ପ୍ରାନ୍ତରେ ଲୋକଦେବତାମାନଙ୍କ ମୂର୍ତ୍ତି ପୂଜା ହେଉଥିଲେ । ଓଡ଼ିଶାର ଅନେକ ସ୍ଥାନରେ ଏହି ପ୍ରକାର ପ୍ରାଚୀନ ଲୋକଦେବତାଙ୍କ ମୂର୍ତ୍ତୀ କିମ୍ୱା ତା'ର ପ୍ରତ୍ନାବଶେଷ ଦେଖିବାକୁ ମିଳେ । ତେବେ, ଅଭିଜ୍ଞ ପ୍ରତ୍ନତତ୍ତ୍ୱବିତ୍ ଓ କଳାତତ୍ତ୍ୱବିତ୍‌ମାନେହିଁ ଏଗୁଡ଼ିକର କଳାଶୈଳୀ ସଠିକ୍ ଭାବେ ଅଧ୍ୟୟନ ଓ ଅନୁଶୀଳନ ପୂର୍ବକ ଏହାର ପ୍ରାଚୀନତା ନିର୍ଦ୍ଧାରଣ କରିପାରନ୍ତି ।

## କଳିଙ୍ଗର ପ୍ରାଚୀନ ଲୋକଦେବତା :
## ଯକ୍ଷ ବନାମ ଜଗନ୍ନାଥ

ଭାରତର ପୂର୍ବାମ୍ଭୁଧି ସଂଲଗ୍ନ ଏକ ପ୍ରାଚୀନ ଦେଶର ନାମ ଥିଲା କଳିଙ୍ଗ । ଐତିହାସିକ ତଥ୍ୟ ଅନୁଯାୟୀ ଏହି ଅଞ୍ଚଳ ମୁଖ୍ୟତଃ ବର୍ତ୍ତମାନ ଓଡ଼ିଶାର ଦକ୍ଷିଣାଞ୍ଚଳ ଓ ଆନ୍ଧ୍ରପ୍ରଦେଶର ଉତ୍ତରାଞ୍ଚଳକୁ ବୁଝାଉଥିଲା । ତେବେ, ବିଭିନ୍ନ ଶାସକଙ୍କ ସମୟରେ ଏହାର ପରିସୀମା ପ୍ରସାରିତ ଓ ସଙ୍କୁଚିତ ହେଉଥିଲା । ଏହି ରାଜ୍ୟର କେନ୍ଦ୍ରରେ ଥିବା କେତେକ ତୀର୍ଥକ୍ଷେତ୍ର ମଧ୍ୟରେ ମହେନ୍ଦ୍ରଗିରିର କେତେକ କୀର୍ତ୍ତି ଅତି ପ୍ରାଚୀନ ଓ ପ୍ରମୁଖ କହିଲେ ଅତ୍ୟୁକ୍ତି ହେବନାହିଁ । ଏହା ବ୍ୟତୀତ ଅନ୍ୟ କେତେକ ତୀର୍ଥକ୍ଷେତ୍ର ହେଉଛି ମୁଖଲିଙ୍ଗମ୍, ଶ୍ରୀକୂର୍ମମ୍, ସିମାଚଳମ୍ ଇତ୍ୟାଦି । ମହେନ୍ଦ୍ରଗିରିର କୀର୍ତ୍ତିଗୁଡିକ କଳାତ୍ମକ ନହେଲେହେଁ ଏଠାରେ ଥିବା କେତେକ ମନ୍ଦିର ଅତି ପ୍ରାଚୀନ । ଜନଜାତି ବାସ କରୁଥିବା ଏହି ପର୍ବତ ଶିଖରାଞ୍ଚଳରେ ପ୍ରାଗୈତିହାସିକ ସଭ୍ୟତାର ପ୍ରତ୍ନାବଶେଷ ମଧ୍ୟ ଦେଖିବାକୁ ମିଳେ ।



ମହେନ୍ଦ୍ରଗିରି ଉପରେ ଥିବା
ଶ୍ରୀ ଜଗନ୍ନାଥଙ୍କ ଆଦ୍ୟ ପ୍ରତିମା ଯକ୍ଷ

ମହେନ୍ଦ୍ରଗିରି ଶିଖରେ ଥିବା ମୁଖ୍ୟ ଛଅଗୋଟି ମନ୍ଦିର ମଧ୍ୟରୁ ପାଞ୍ଚଟି ପଞ୍ଚୁପାଣ୍ଡବଙ୍କ ନାମରେ ନାମିତ ହୋଇଥିବାବେଳେ ଗୋଟିଏ କୁନ୍ତୀମନ୍ଦିର ଭାବେ ପରିଚିତ । ଏହି ମନ୍ଦିରର ଅନତି ଦୂରରେ ପ୍ରାୟ ମନୁଷ୍ୟ ଉଚ୍ଚତାରୁ ସାମାନ୍ୟ କମ୍ ଏକ ବିଚିତ୍ର ପ୍ରତିମା ଦେଖିବାକୁ ମିଳେ । ମୁଗୁନି ପଥର କୃତିଟିର ଉପରଭାଗ ଚକ୍ରାକାର ଓ ତଳ ଭାଗଟି ଗଣ୍ଡିର ଆଭାସ ଦିଏ । ପ୍ରଥମ ଦର୍ଶନରେ 'ଏହା ଯେ, ଶ୍ରୀଜଗନ୍ନାଥଙ୍କ ଆଦ୍ୟରୂପ' ଏହାହିଁ ପ୍ରତୀୟମାନ ହୁଏ । ତେବେ, ମୂର୍ତ୍ତିଟି ହସ୍ତ ବିହୀନ ହୋଇଥିବାବେଳେ ମସ୍ତକର ଉଭୟ ବିପରୀତ ପାର୍ଶ୍ୱରେ ମୁଖମଣ୍ଡଳର ଅସ୍ପଷ୍ଟ ଆଭାସ ରହିଛି । ମୂର୍ତ୍ତିଟି ଯେ, କୌଣସି ପ୍ରାଚୀନ ଜନଜାତିର ଲୋକଦେବତା ବା ଯକ୍ଷ, ଏଥିରେ ଦ୍ୱିମତ ହେବାର ଅବକାଶ ନାହିଁ । ଭାରତର କେତେକ ଅଞ୍ଚଳରେ ଦ୍ୱିମୁଖ ଓ ଚତୁର୍ମୁଖ ଯକ୍ଷ ପ୍ରତିମାମାନ ରହିଛି । ଏଣୁ କୃତିଟିକୁ 'ଦ୍ୱିମୁଖ-ଯକ୍ଷ' ଭାବେ ଗ୍ରହଣ କରାଯାଇପାରେ ।

ମହେନ୍ଦ୍ରଗିରି ଅଞ୍ଚଳର ପୂର୍ବ-ଗଙ୍ଗବଂଶୀ ଓ ପର-ଗଙ୍ଗବଂଶୀ କ୍ଷତ୍ରୀୟମାନେ ଏହି ଲୋକଦେବତାଙ୍କୁ ନିଜର ଇଷ୍ଟଦେବତା ଭାବେ ଗ୍ରହଣ କରିଥିବାବେଳେ ପରବର୍ତ୍ତୀ ସମୟରେ ପୁରୀର ଶ୍ରୀମନ୍ଦିର ମଧ୍ୟରେ ଏହି ଦେବତାଙ୍କ ବିକଶିତ ଦାରୁବିଗ୍ରହ ଶ୍ରୀଜଗନ୍ନାଥ ନାମରେ ପ୍ରତିଷ୍ଠା କରିଛନ୍ତି । କୋଣାର୍କ ସୂର୍ଯ୍ୟ ମନ୍ଦିରର ଦୁଇଟି ବର୍ଣ୍ଣନାତ୍ମକ ମୂର୍ତ୍ତିକଳାରେ ସିଂହାସନ ଉପରେ ଶିବଲିଙ୍ଗ ଓ ମହିଷମର୍ଦ୍ଦିନୀ ଦୁର୍ଗାଙ୍କ ସହିତ ଏହି ଜଗନ୍ନାଥ ପ୍ରତିମାକୁ ଗଙ୍ଗ ନରପତି ପୂଜାର୍ଚ୍ଚନା କରୁଥିବା ଦୃଶ୍ୟ ଦେଖିବାକୁ ମିଳେ । ତେବେ, ପରବର୍ତ୍ତୀ ସମୟରେ ଶିବ ଓ ଦୁର୍ଗାଙ୍କୁ ଜଗନ୍ନାଥଙ୍କ ସମଶୈଳୀରେ ପରିକଳ୍ପନା କରାଯାଇ, ଦାରୁବିଗ୍ରହ ନିର୍ମାଣ ପୂର୍ବକ ଶ୍ରୀମନ୍ଦିରର ରତ୍ନସିଂହାସନରେ ଏକତ୍ର ପ୍ରତିଷ୍ଠା କରାଯାଇଛି । ଏହା ବ୍ୟତୀତ ବୃକ୍ଷ ପୂଜାର ଆଦି ସଙ୍କେତ ସ୍ୱରୂପ ଏକ ଦାରୁଦଣ୍ଡକୁ ଏହି ତିନି ପ୍ରତିମା ସହିତ ସୁଦର୍ଶନ ନାମରେ ସ୍ଥାନିତ କରାଯାଇଥିବା ଦେଖାଯାଏ । ଏଣୁ ପୁରୀ ଶ୍ରୀଜଗନ୍ନାଥ ମନ୍ଦିରର ଚତୁର୍ଦ୍ଧାମୂର୍ତ୍ତି ପ୍ରାଗ୍‌ବୈଦିକ ଓ ବୈଦିକ ଦେବତାଙ୍କ ଏକତ୍ରୀକରଣର ଏକ ଅଭିନବ ଉପସ୍ଥାପନା କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ପରିପ୍ରେକ୍ଷୀରେ ମହେନ୍ଦ୍ରଗିରିର ଏହି ପ୍ରତିମାଟି ପ୍ରାଚୀନ ଲୋକଦେବତା 'ଯକ୍ଷ' କହିଲେ ଭୁଲ୍ ହେବନାହିଁ ।

# ତୋସାଳୀର ପ୍ରାଚୀନ ଲୋକଦେବତା, ଯକ୍ଷ

ବିଶାଳ କଳିଙ୍ଗ ସାମ୍ରାଜ୍ୟର ଏକ ଅଞ୍ଚଳ ତୋସଳ ନାମରେ ପରିଚିତ ହେଉଥିବାବେଳେ ତୋସାଳୀ ଜନପଦ ଥିଲା ଏହାର ପ୍ରାଣକେନ୍ଦ୍ର । କଳିଙ୍ଗ ବିଜୟ ପରେ ଅଶୋକ ଏହି ସ୍ଥାନରେ ତାଙ୍କ ରାଜ ପ୍ରତିନିଧି ନିଯୁକ୍ତ କରି ତୋସଳ ଶାସନ କରୁଥିଲେ । ଏହା ତାଙ୍କ ଧଉଳୀ ଅଭିଲେଖରୁ ସୂଚିତ ହୁଏ । ଅର୍ଥାତ୍, ବର୍ତ୍ତମାନର ଭୁବନେଶ୍ୱର ଅତୀତରେ ତୋସାଳୀ ନାମରେ ଖ୍ୟାତ ଥିଲା । ଏହା କେତେକ ପ୍ରାଚୀନ ଧର୍ମଶାସ୍ତ୍ର ପୁରାଣ ଓ କାବ୍ୟମାନଙ୍କରୁ ମଧ୍ୟ ପ୍ରମାଣିତ ହୁଏ । ପ୍ରାଚୀନ ଭାରତୀୟ ପରମ୍ପରା ଅନୁଯାୟୀ ଏହି ସମୃଦ୍ଧ ଜନବସତିର ସୁରକ୍ଷା ଓ ଶ୍ରୀରକ୍ଷା ନିମନ୍ତେ ଏହାର ବିଭିନ୍ନ ପ୍ରାନ୍ତରେ ଯକ୍ଷ, ନାଗ ଓ ନାଗନାଗୀଙ୍କ ଭଳି ଲୋକଦେବତା ପ୍ରତିମାମାନ ସ୍ଥାପନ କରାଯାଇ ପୂଜାର୍ଚ୍ଚନା କରାଯାଉଥିଲା । ଯକ୍ଷମାନେ ଧନ ଓ ସମୃଦ୍ଧିର ଦେବତା ଏବଂ କୁବେରଙ୍କ ପାରିଷଦ । ଏଣୁ, ଏମାନେ କୁବେରଙ୍କ ଭଳି କଦାକାର ଓ ଖର୍ବକାୟ ହେଲେ ହେଁ ଦେହରେ ରତ୍ନାଳଙ୍କାର ପରିଧାନ ସହ ମସ୍ତକ ଉପରେ ଏକ ନିଧିପାତ୍ର (ଧନଭାଣ୍ଡ) ଧାରଣ କରିଥାଆନ୍ତି । ନାଗମାନେ ସାଧାରଣତଃ ବନବାସୀମାନଙ୍କ ଦେବତା । ଅନେକ ସ୍ଥଳେ ଏମାନଙ୍କ ସରୀସୃପ ରୂପର ମୂର୍ତ୍ତି ପୂଜା ପାଉଥିବାବେଳେ ମନୁଷ୍ୟାକୃତି ମୂର୍ତ୍ତିଗଡ଼ିକରେ ଜନଜାତିମାନଙ୍କ ବେଶ ପୋଷାକର ପ୍ରଭାବ ଦେଖିବାକୁ





ଭୁବନେଶ୍ୱର ଅଞ୍ଚଳରୁ ସଂଗୃହୀତ
ଦୁଇଟି ପୂର୍ଣ୍ଣାଙ୍ଗ ଯକ୍ଷ ପ୍ରତିମା,
ଓଡ଼ିଶା ରାଜ୍ୟ ସଂଗ୍ରାହଳୟ, ଭୁବନେଶ୍ୱର

ମିଳେ । ତେବେ, ଏହି କୃତିଗୁଡ଼ିକ ଅତି ପ୍ରାଚୀନ ହୋଇଥିବାରୁ ଏହାର କଳାଶୈଳୀ ଅପରିପକ୍ୱ ଓ ରୁକ୍ଷ । ଏହି ପ୍ରକାର କେତୋଟି ମୂର୍ତ୍ତି ଭୁବନେଶ୍ୱରର ବଡ଼ଗଡ଼ ଗ୍ରାମ, ଭୁବନେଶ୍ୱର ନିକଟ ପାଞ୍ଚଗାଁ ଓ ସୁନ୍ଦରପଦାରେ ସ୍ୱସ୍ଥାନରେ ରହିଥିବାବେଳେ ଅନ୍ୟ କେତୋଟି ମୂର୍ତ୍ତି ଓ ଭଗ୍ନ ମୂର୍ତ୍ତିଖଣ୍ଡ ଭୁବନେଶ୍ୱର ନିକଟସ୍ଥ ତୁମୁଡୁମା ଓ ଅନ୍ୟ ସ୍ଥାନରୁ ସଂଗ୍ରହ କରାଯାଇ ରାଜ୍ୟ ସଂଗ୍ରହାଳୟରେ ରଖାଯାଇଛି ।

ପୂର୍ବ ସୂଚିତ ବଡ଼ଗଡ଼ ଓ ପାଞ୍ଚଗାଁର ଯକ୍ଷ ମୂର୍ତ୍ତି ଦ୍ୱୟ ବହୁକାଳ ଧରି ବୃକ୍ଷମୂଳେ ଅବକ୍ଷୟ ଓ ଅବହେଳିତ ଅବସ୍ଥାରେ ରହିଥିଲା । ମୂର୍ତ୍ତିମାନଙ୍କ ମସ୍ତକ ଉପରେ ଥିବା ନିଧିପାତ୍ରକୁ 'ଦଧିଭାଣ୍ଡ' ମନେକରି ସ୍ଥାନୀୟ ଲୋକେ ମୂର୍ତ୍ତିକୁ ଗୋପାଳୁଣୀ ଆଖ୍ୟା ଦେଇଛନ୍ତି । କାରଣ ପୌରାଣିକ ଆଖ୍ୟାନ ଅନୁଯାୟୀ, 'ଏକଦା ପାର୍ବତୀ ଗୋପାଳୁଣୀ ବେଶରେ ମସ୍ତକରେ ଦଧିଭାଣ୍ଡ ଧାରଣ କରି ଏକାମ୍ର କାନନରେ ବିଚରଣ କରିଥିଲେ । ତେବେ, ପରବର୍ତ୍ତୀ ସମୟରେ ଏହି ପ୍ରାଚୀନ କୃତିଗୁଡ଼ିକ ପ୍ରତି ଲୋକେ ସଚେତନ ହେବାଦ୍ୱାରା, ଦୁଇ ମୂର୍ତ୍ତି ବର୍ତ୍ତମାନ ନବ ନିର୍ମିତ ମନ୍ଦିର ମଧ୍ୟରେ ପୂଜା ପାଉଛନ୍ତି । ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ଥିବା ପାଞ୍ଚଗୋଟି ଯକ୍ଷ ମୂର୍ତ୍ତି ମଧ୍ୟରୁ ତିନୋଟି ଖଣ୍ଡିତ ଅଂଶ ଓ ଦୁଇଟି ପୂର୍ଣ୍ଣ ଅବୟବ କୃତି ମଧ୍ୟରୁ ଗୋଟିଏ ଦୁଇଖଣ୍ଡ ହୋଇପଡ଼ିଛି ।

ଭୁବନେଶ୍ୱରର ଏହି ସମସ୍ତ ଯକ୍ଷ ପ୍ରତିମାର ମୌଳିକ ମୂର୍ତ୍ତିତତ୍ତ୍ୱ ଏକ ହେଲେହେଁ, ଭିନ୍ନ ଭିନ୍ନ ସ୍ଥାନରେ, ବିଭିନ୍ନ ସମୟରେ ନିର୍ମିତ ମୂର୍ତ୍ତିଗୁଡ଼ିକର କଳାଶୈଳୀରେ ପାର୍ଥକ୍ୟ ଦେଖାଯାଏ । ତେବେ, ସ୍ଥୂଳତଃ ସମାୟାନୁକ୍ରମେ ଏହି କୃତିଗୁଡ଼ିକୁ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇପାରେ । ଅତି ପ୍ରାଚୀନ ଅର୍ଥାତ୍, ପ୍ରଥମ ପର୍ଯ୍ୟାୟ କୃତିଗୁଡିକର ଉପସ୍ଥାପନା ଅତି ସରଳ । ଏକ ବର୍ଗାକାର ଖମ୍ବ ସଦୃଶ ପଥରକୁ ଖର୍ବକାୟ, ପୃଥୁଳ ଶରୀର, ଏକ ଦେବତାର ରୂପ ଦେବାପାଇଁ ଯତ୍ କିଞ୍ଚିତ୍ ଖୋଦନ ଆବଶ୍ୟକ ସେତିକି ହିଁ କରାଯାଇଛି । ଏଣୁ ଏଗୁଡିକର ଅଙ୍ଗ ପ୍ରତ୍ୟଙ୍ଗ ଓ ବସ୍ତ୍ର ଭୂଷଣ ଅସ୍ପଷ୍ଟ । ଦ୍ୱିତୀୟ ପର୍ଯ୍ୟାୟ ମୂର୍ତ୍ତିଗୁଡିକର ଖୋଦନ ଶୈଳୀ ଅନେକାଂଶରେ ଉନ୍ନତ, ଅଙ୍ଗ ପ୍ରତ୍ୟଙ୍ଗ ଓ ବସ୍ତ୍ରାଳଙ୍କାର ସ୍ପଷ୍ଟ । ଦଣ୍ଡାୟମାନ ପ୍ରତ୍ୟେକ ଦେବତା ଦୁଇହସ୍ତ ଉତ୍ତୋଳନ କରି ମସ୍ତକ ଉପରେ ଥିବା ନିଧିପାତ୍ରକୁ ଧାରଣ କରିଛନ୍ତି । ପ୍ରଥମ ଶ୍ରେଣୀର କୃତିଗୁଡ଼ିକରେ ଉତ୍ତୋଳିତ ହସ୍ତ ଦ୍ୱୟ କର୍ଣ୍ଣସହିତ ସଂଯୋଗ ହୋଇ ରହିଥିବାବେଳେ ପରବର୍ତ୍ତୀ ପର୍ଯ୍ୟାୟର କୃତିରେ ହସ୍ତ ଓ କର୍ଣ୍ଣ ମଧ୍ୟରେ ଶୂନ୍ୟସ୍ଥାନ ରହିଛି । ଏହି ମୂର୍ତ୍ତିଗୁଡ଼ିକର ଲୋଳିତ କର୍ଣ୍ଣରେ କୁଣ୍ଡଳ, ଗଳାରେ ପ୍ରଶସ୍ତ ରତ୍ନହାର । ବକ୍ଷ ଉପରେ ଛନ୍ଦିତ ହୋଇ ରହିଥିବା ପୋହଳାଯୁକ୍ତ ବକ୍ଷବନ୍ଧ, ହସ୍ତରେ ବଳୟପୁଞ୍ଜ ଏବଂ ଆଣ୍ଠୁଯାଏ ପିନ୍ଧିଥିବା ରୁକ୍ଷବସ୍ତ୍ର ଓ କଟିରେ ବସ୍ତ୍ରର କଟିବନ୍ଧ ଦେଖାଯାଏ । କେତେକ ମୂର୍ତ୍ତି ପୃଷ୍ଠଭାଗ କଚ୍ଛାର ଗଣ୍ଠି ଓ ଖୋସା ଶୈଳୀ କୌତୁହଳପୂର୍ଣ୍ଣ । ଏହି ବେଶଭୂଷା ଓଡ଼ିଶାରେ ବସବାସ କରୁଥିବା କେତେକ ଜନଜାତିଙ୍କ ପରିଧାନ ଶୈଳୀ ସହିତ ବହୁଭାବରେ ସମତା ରକ୍ଷାକରେ । ତେବେ, ଏହା ତତ୍କାଳୀନ ସଂଭ୍ରାନ୍ତ ପୁରୁଷଙ୍କ ବେଶଭୂଷା ହୋଇଥିବା ସମ୍ଭବ । ବଗଡ଼ା କନ୍ଦା ପଥରରେ ନିର୍ମିତ ଏହି ମୂର୍ତ୍ତିଗୁଡ଼ିକର ସାଧାରଣ ଉଚ୍ଚତା ପ୍ରାୟ ୧.୫୦ ମିଟର କିଂବା ତା'ଠାରୁ ସାମାନ୍ୟ ଅଧିକ । ସୂକ୍ଷ୍ମତାର ସହିତ ଅନୁଧ୍ୟାନ କଲେ ଜାଣିହେବଯେ, ଏହାର କଳାଶୈଳୀ ଓଡ଼ିଶାର ମୌର୍ଯ୍ୟକାଳୀନ କଳାଠାରୁ ନିମ୍ନମାନର ଅର୍ଥାତ୍ ଅଶୋକଙ୍କ ପୂର୍ବବର୍ତ୍ତୀ ସମୟର ଅଟେ । ପ୍ରାଚୀନ ଭାରତୀୟ ଲୋକଦେବତା, ଯକ୍ଷ ଓ ନାଗ ପରମ୍ପରା ସମ୍ପର୍କରେ ଅଧ୍ୟୟନ ନକରି, ଓଡ଼ିଶାର କେତେକ ପୂର୍ବତନ ଐତିହାସିକ ଏହି କୃତିଗୁଡ଼ିକ କୌଣସି ବୌଦ୍ଧକୀର୍ତ୍ତିର ଅଂଶ ବୋଲି ମଧ୍ୟ ଅନୁମାନ କରିଛନ୍ତି । ଯାହାକି ଗ୍ରହଣ ଯୋଗ୍ୟ ନୁହେଁ ।

# ପ୍ରାଚୀନ ତୋସାଳୀର ନାଗଦେବତା

ବନ, ପର୍ବତ ବହୁଳ ପ୍ରାଚୀନ କଳିଙ୍ଗର ବହୁ ଜନଜାତି ସମେତ ଅନେକ ଶୂଦ୍ର ଓ କ୍ଷତ୍ରୀୟ ନିଜ ଗୋଷ୍ଠୀ ସହିତ ନାଗ, ବାଘ, ହାତୀ, ବରାହ ଇତ୍ୟାଦି ଭୟଙ୍କର ବଣ୍ୟ ପ୍ରାଣୀଙ୍କ ନାମ ସଂଯୋଗ କରୁଥିଲେ । ଏହା ମଧ୍ୟରେ ନାଗବଂଶୀ ବା ଗୋତ୍ରୀଙ୍କ ସଂଖ୍ୟା ସର୍ବାଧିକ । ଏହି ପରିପ୍ରେକ୍ଷୀରେ 'ନାଗ' ସେମାନଙ୍କ ଇଷ୍ଟଦେବତା ତଥା ଗ୍ରାମଦେବତା ମଧ୍ୟ । ଏଣୁ କଳିଙ୍ଗର ବିଭିନ୍ନ ପ୍ରାନ୍ତରେ ବିଭିନ୍ନ ଶୈଳୀର ନାଗଦେବତାଙ୍କ ମୂର୍ତ୍ତି ସ୍ଥାପନ କରାଯାଇ ପୂଜାର୍ଚ୍ଚନା କରାଯାଉଥିଲା । ପୂର୍ବୋକ୍ତ ପାଞ୍ଚଗାଁର ଯକ୍ଷ ମୂର୍ତ୍ତି ନିକଟସ୍ଥ ବୃକ୍ଷମୂଳେ ଏକ ପ୍ରାଚୀନ ନାଗମୂର୍ତ୍ତିର ସନ୍ଧାନ ମିଳିଥିଲା । କୃତିଟି ଅସମାନ ଧାର ବିଶିଷ୍ଟ, ଏକ ଚକ୍ରାକାର, ଚଟକା ପଥର ଉପରେ ଏକ ପଞ୍ଚଫଂଣାଯୁକ୍ତ ନାଗର କୁଣ୍ଡଳୀ ଚିତ୍ର ଅଗଭୀର ଶୈଳୀରେ ଉତ୍କୀର୍ଣ୍ଣ ହୋଇଛି । ବହୁଦିନଧରି ଅବହେଳିତ ଅବସ୍ଥାରେ ପଡ଼ିବା ପରେ ବର୍ତ୍ତମାନ ମୂର୍ତ୍ତିଟି ପୂର୍ବ ସୂଚିତ ନୂତନ ମନ୍ଦିର ମଧ୍ୟରେ ପୂଜା ପାଉଛି ।



ପାଞ୍ଚଗାଁର ପ୍ରାଚୀନ ନାଗମୂର୍ତ୍ତି



ଭୁବନେଶ୍ୱର ଅଞ୍ଚଳରୁ ସଂଗୃହୀତ
ନାଗରାଜ ପ୍ରତିମା, ରାଜ୍ୟ ସଂଗ୍ରହାଳୟ

ପ୍ରାଚୀନ ତୋସାଳୀର ଦ୍ୱିତୀୟ ପର୍ଯ୍ୟାୟ ନାଗଦେବତା ବା ନାଗରାଜ ମୂର୍ତ୍ତିଗୁଡ଼ିକ ମନୁଷ୍ୟ ଶରୀରର ମସ୍ତକ ଉପରେ ନାଗର ପ୍ରସାରିତ ଫଣା ଓ ପ୍ରଚ୍ଛଦରେ ତା'ର କୁଣ୍ଡଳୀ ଦେଖିବାକୁ ମିଳେ । ଭୁବନେଶ୍ୱରର ବିଭିନ୍ନ ସ୍ଥାନରୁ ସଂଗ୍ରହ କରାଯାଇ ଏହି ପ୍ରକାର କେତେକ ପ୍ରତିମାର ପ୍ରତ୍ନାବଶେଷ ରାଜ୍ୟ ସଂଗ୍ରହାଳୟରେ ରଖାଯାଇଛି । ଏହା ମଧ୍ୟରୁ ଗୋଟିଏ ମୂର୍ତ୍ତି ଅବକ୍ଷୟ ଯୋଗୁଁ ସମ୍ପୂର୍ଣ୍ଣ ଅସ୍ପଷ୍ଟ । ଏହାର ଉଚ୍ଚତା ପ୍ରାୟ ୧.୨୫ ମିଟର ଅଟେ । ଏହି ଅବକ୍ଷୟରୁ ଏହାର ପ୍ରାଚୀନତା ଅନୁମେୟ । ଦ୍ୱିତୀୟ ମୂର୍ତ୍ତିଟିର ଉଦର ଠାରୁ ଉର୍ଦ୍ଧ୍ୱ ଅଂଶ ଭଗ୍ନ ଅର୍ଥାତ୍, ନିମ୍ନ ଅଂଶହିଁ ରହିଛି । ଏଠାରେ ପୃଥୁଳ ଶରୀର ନାଗରାଜଙ୍କ ପୃଷ୍ଠଭାଗରେ ନାଗର କୁଣ୍ଡଳୀ ଦେଖାଯାଏ । ସେ ଆଣ୍ଠୁ ପର୍ଯ୍ୟନ୍ତ ଧୋତି ପରିଧାନ ସହିତ ଏକ ବସ୍ତ୍ରକୁ ଗୁଡ଼ାଇ କଟିରେ ବାନ୍ଧିଛନ୍ତି । ବଗଡ଼ା କନ୍ଦା ପଥରରେ ନିର୍ମିତ ଭଗ୍ନ ଅଂଶଟିର ଉଚ୍ଚତା ପ୍ରାୟ ୧.୨୦ ମିଟର ଅଟେ । କଳାଶୈଳୀରୁ ପୂର୍ବୋକ୍ତ ପ୍ରଥମ ପର୍ଯ୍ୟାୟର ଯକ୍ଷମୂର୍ତ୍ତି ଓ ଏହି ନାଗ ମୂର୍ତ୍ତି ସମକାଳୀନ ବୋଲି ପ୍ରତୀୟମାନ ହୁଏ ।

## ସୁନ୍ଦରପଦାର ନାଗ, ନାଗୀ ମୂର୍ତ୍ତି

ଭୁବନେଶ୍ୱରର ଦକ୍ଷିଣରେ ଥିବା ସୁନ୍ଦରପଦା ଗ୍ରାମର ଏକ ବୃକ୍ଷମୂଳେ ଗୋଟିଏ ନାଗ ଓ ଦୁଇ ନାଗୀ ମୂର୍ତ୍ତି ବହୁଦିନ ଧରି ଅବହେଳିତ ଅବସ୍ଥାରେ ପଡ଼ିରହିବା ପରେ ଲୋକେ ତାହା ଗ୍ରାମ ଦେବତା ଭାବେ ପୂଜାର୍ଚ୍ଚନା କରୁଥିବା ମୂର୍ତ୍ତିଗୁଡ଼ିକ ବର୍ତ୍ତମାନ ନବନିର୍ମିତ ମନ୍ଦିର ମଧ୍ୟରେ ରହିଛି । ଗର୍ବର ସହିତ କଟି ଉପରେ ଦୁଇହସ୍ତ ରଖି ସମଭଙ୍ଗରେ ଦଣ୍ଡାୟମାନ, ମନୁଷ୍ୟାକୃତି ଏହି ତିନି ମୂର୍ତ୍ତି ମଧ୍ୟରୁ ପ୍ରତ୍ୟେକଙ୍କ ମସ୍ତକ ଉପରେ ନାଗର ପ୍ରସାରିତ ପଞ୍ଚଫଂଣା ଓ ପ୍ରଚ୍ଛଦରେ ତା'ର କୁଣ୍ଡଳୀ ଦେଖିବାକୁ ମିଳେ । ଏହା ମଧ୍ୟରେ ପୃଥୁଳ ଶରୀର, ଲମ୍ବୋଦର ନାଗରାଜଙ୍କ ମସ୍ତକରେ ମଣିଯୁକ୍ତ ଗୋଲ ଉର୍ଦ୍ଧ୍ୱଯୁଡା, ମାଂସାଳମୁଖମଣ୍ଡଳର ଦୁଇ



ନାଗନାଗୀ ମୂର୍ତ୍ତି,
ସୁନ୍ଦରପଦା, ଭୁବନେଶ୍ୱର

କର୍ଣ୍ଣରେ କୁଣ୍ଡଳ, ବାହୁରେ ବାଜୁବନ୍ଧ, ପାଦରେ ବଳୟ ବ୍ୟତୀତ ଆଣ୍ଠୁ ପର୍ଯ୍ୟନ୍ତ ପାଈକରା ଧୋତି ପରିଧାନ କରିଥିବାବେଳେ କାନ୍ଧଠାରୁ ଦୁଇ ପାର୍ଶ୍ୱରେ ପାଦପର୍ଯ୍ୟନ୍ତ ଲମ୍ବିଥିବା ଉତ୍ତରୀୟର ଏକ ଧାର ଦକ୍ଷିଣ ହସ୍ତରେ ଧାରଣ କରିଛନ୍ତି । ସେହିପରି ନାଗୀଙ୍କ ମଧ୍ୟମ ମୁଖମଣ୍ଡଳ, ପ୍ରଶସ୍ତ ବକ୍ଷ, କ୍ଷୀଣ କଟି ଓ ଗୁରୁ ଜଘନ ଦେଖିବାକୁ ମିଳେ । ବସ୍ତ୍ର ଭୂଷଣ ମଧ୍ୟରେ ତାଙ୍କ ମସ୍ତକରେ ଅଳଙ୍କାର ଖଚିତ ତ୍ରିମୁଦ୍ରା, କର୍ଣ୍ଣରେ କର୍ଣ୍ଣପାଶା, ହସ୍ତ ଓ ପାଦରେ ବଳୟପୁଞ୍ଜ ରହିଛି । ଏହା ବ୍ୟତୀତ ସେ ନାଗଙ୍କ ଭଳି ମଧ୍ୟ ଭାଗରେ ଲମ୍ବ କୁଞ୍ଚକରା ଧୋତି ପରିଧାନ ସହିତ, କାନ୍ଧ ଉପରୁ ବକ୍ଷସ୍ଥଳ ଓ କଟି ପାଶ୍ୱଦେଇ ଦୁଇ ପାର୍ଶ୍ୱରେ ପାଦ ପର୍ଯ୍ୟନ୍ତ ଲମ୍ବିଥିବା ଉତରୀୟକୁ କଟି ନିକଟରେ ଦୁଇ ହସ୍ତରେ ଧାରଣ କରିଛନ୍ତି । ଦ୍ୱିତୀୟ ନାଗୀ ପ୍ରତିମାଟିର ନିମ୍ନାଂଶ ଭଗ୍ନ । ଏହାଙ୍କ ଶରୀର ଗଠନ ଓ ଭଙ୍ଗୀ ପ୍ରଥମ ନାଗୀ ଅନୁରୂପ ହୋଇଥିଲେ ହେଁ ବସ୍ତ୍ରର ପରିଧାନ ଶୈଳୀରେ ସାମାନ୍ୟ ପାର୍ଥକ୍ୟ ପରିଲକ୍ଷିତ ହୁଏ । ତେବେ, ଅବକ୍ଷୟ ଯୋଗୁଁ ମୂର୍ତ୍ତିଗୁଡ଼ିକର ବକ୍ଷ ଅଳଙ୍କାର ଅସ୍ପଷ୍ଟ । କଦାପଥରରେ, ରୁକ୍ଷ ଶୈଳୀରେ ଉତ୍କୀର୍ଣ୍ଣ ତିନି ପ୍ରତିମା ମଧ୍ୟରୁ ନାଗରାଜଙ୍କ ଉଚ୍ଚତା ପ୍ରାୟ ୧.୭୦ ମିଟର ହୋଇଥିବାବେଳେ ନିଖୁଣ ନାଗୀ ମୂର୍ତ୍ତିଟିର ଉଚ୍ଚତା ପ୍ରାୟ ୧.୫୫ ମିଟର ଅଟେ । ଏହି କୃତିଗୁଡ଼ିକର କଳାଶୈଳୀ ଖଣ୍ଡଗିରି ଉଦୟଗିରିର ମୂର୍ତ୍ତିକଳା ଶୈଳୀ ସହିତ ବହୁ ଭାବରେ ସାମଞ୍ଜସ୍ୟ ରକ୍ଷାକରୁଥିବାରୁ ଏହା ଖ୍ରୀ:ପୂ ୧ମ-ଖ୍ରୀ: ୧ମ ଶତାବ୍ଦୀର କୃତି ହୋଇଥିବା ସମ୍ଭବ । ସୂଚନାଯୋଗ୍ୟ ଯେ, ନାଗମାନେ ବହୁ ପତ୍ନୀକ । ଏଣୁ ପ୍ରାଚୀନ ଭାରତୀୟ ମୂର୍ତ୍ତିକଳାରେ ଏକ ନାଗଙ୍କ ସହିତ ଏକାଧିକ ନାଗପତ୍ନୀଙ୍କ ମୂର୍ତ୍ତି ଦେଖିବାକୁ ମିଳେ । ଏଣୁ, ଏହି ପୂଜିତ ପ୍ରତିମାରେ ନାଗରାଜାଙ୍କ ସହିତ ତାଙ୍କ ଦୁଇ ପତ୍ନୀଙ୍କ ପରିକଳ୍ପନା କରାଯାଇଛି । ପ୍ରାଚୀନ ଭାରତୀୟ ଲୋକଦେବତା ଓ ବୌଦ୍ଧ ମୂର୍ତ୍ତିକଳା ଉପରେ ଆବଶ୍ୟକୀୟ ଅଧ୍ୟୟନ ନକରି ଓଡ଼ିଶାର କେତେକ ପୂର୍ବତନ ଐତିହାସିକ ଏହି ତିନି ମୂର୍ତ୍ତିକୁ କୌଣସି ବୌଦ୍ଧ ସ୍ଥାପତ୍ୟର ଅଂଶ ବୋଲି ଅନୁମାନ କରିଥିବା ତଥ୍ୟ ଗ୍ରହଣଯୋଗ୍ୟ ନୁହେଁ ।



ରାୟଗଡ଼ା ଜିଲ୍ଲା ପାଇକପଡ଼ା ଓ ଗଞ୍ଜାମର ଆସ୍କା ନିକଟ
ମାଳତୀଗଡ଼ର ପ୍ରାଚୀନ ଶୈଳୀ ନାଗଦେବତା ମୂର୍ତ୍ତି

# ଓଡ଼ିଶାର ମୌର୍ଯ୍ୟକାଳୀନ ମୂର୍ତ୍ତିକଳା

ମୌର୍ଯ୍ୟ ସମ୍ରାଟ ଅଶୋକଙ୍କ ଦ୍ୱାରା ବିଭିନ୍ନ ସ୍ଥାନରେ ଉତ୍କୀର୍ଣ୍ଣ ତାଙ୍କ ଅନୁଶାସନ ଶିଳାଲେଖମାନଙ୍କରୁ କଳିଙ୍ଗ ଯୁଦ୍ଧର ଭିଷଣତା, ତାଙ୍କ ଶାସନ ପ୍ରଣାଳୀ ତଥା ଅହିଂସା ମାର୍ଗ ବିଷୟରେ ଅନେକ ତଥ୍ୟ ଜାଣିହୁଏ । ତେବେ ସେ ସମୟରେ କଳିଙ୍ଗର ପରିସୀମା କ'ଣ ଥିଲା ଓ ଶେଷ କଳିଙ୍ଗ ଯୁଦ୍ଧ କେଉଁଠାରେ ସମାହିତ ହୋଇଥିଲା ତା'ର କୌଣସି ସୂଚନା ଏହି ଅଭିଲେଖ ମାନଙ୍କରେ ଉଲ୍ଲେଖ ନାହିଁ । କିନ୍ତୁ, ଓଡ଼ିଶାର ଜଣେ, ଦୁଇଜଣ ଐତିହାସିକ ପୂର୍ବର ତୋସଳି ବା ବର୍ତ୍ତମାନର ଭୁବନେଶ୍ୱର ନିକଟସ୍ଥ ଧଉଳି ପାହାଡ଼ ପାଦଦେଶ, ଦୟାନଦୀ କୂଳରେ ଏହି ଯୁଦ୍ଧ ସମାହିତ ହୋଇଥିବା ଉଲ୍ଲେଖ କରିଛନ୍ତି । ତେବେ ଏହି ଭିତ୍ତିହୀନ ମତକୁ ସର୍ବଭାରତୀୟ ସ୍ତରରେ କୌଣସି ଐତିହାସିକ ସମର୍ଥନ କରନ୍ତି ନାହିଁ । ଧଉଳି ଶିଳାଲେଖରୁ ସୂଚିତ ହୁଏଯେ, ସେତେବେଳେ ଏହି ସ୍ଥାନ ତୋସାଳୀ ନାମରେ ପରିଚିତ ଥିଲା । ଯଦି ଏହି ଗୁରୁତ୍ୱପୂର୍ଣ୍ଣ ଯୁଦ୍ଧଟି ତୋସାଳିରେ ହୋଇଥାଆନ୍ତା, ତେବେ ତାହା ତୋସାଳି ଯୁଦ୍ଧ ନାମରେ ଅଭିହିତ ହୋଇଥାଆନ୍ତା ଏବଂ ଏଠାରେ ଅଶୋକଙ୍କ କୀର୍ତ୍ତିଗୁଡିକୁ ସ୍ୱତନ୍ତ୍ର ଗୁରୁତ୍ୱ ଦିଆଯାଇଥାଆନ୍ତା । କିନ୍ତୁ ଅଶୋକଙ୍କ ଅନ୍ୟ କେତେକ କୀର୍ତ୍ତି ତୁଳନାରେ ଧଉଳିର କୀର୍ତ୍ତି ଗୌଣ କହିଲେ ଅତ୍ୟୁକ୍ତି ହେବନାହିଁ । ପୁନଶ୍ଚ ଧଉଳି ଅଭିଲେଖରୁ 'ତୋସଳ ରାଜ୍ୟ କଳିଙ୍ଗର ଏକ ଅଂଶ,' ଏହା ମଧ୍ୟ ସୂଚିତ ହୁଏନାହିଁ । ଅନେକ ଐତିହାସିକ ବିବରଣୀରୁ ଜଣାଯାଏ ଯେ, ଆନ୍ଧ୍ରର ଉତ୍ତରାଞ୍ଚଳ ଓ ଓଡ଼ିଶାର ଦକ୍ଷିଣାଞ୍ଚଳ ମୁଖ୍ୟତଃ କଳିଙ୍ଗକୁ ବୁଝାଉଥିଲା । ଏହି ସମୟରେ କଳିଙ୍ଗ ନଗର କିମ୍ବା ମୁଖଲିଙ୍ଗମ୍ ଏହାର ରାଜଧାନୀ ରହୁଥିଲା ଏବଂ ତୋସଳ କଳିଙ୍ଗର ସନ୍ନିହିତ ରାଜ୍ୟଥିଲା । ତେବେ ବିଭିନ୍ନ ଶାସକଙ୍କ ସମୟରେ କଳିଙ୍ଗର ପରିସୀମା ଭିନ୍ନ ଭିନ୍ନ ଥିଲା । କେତେବେଳେ ତୋସଳ କଳିଙ୍ଗର ଏକ ଅଂଶ ଏବଂ ଅନ୍ୟ କେତେବେଳେ ସ୍ୱତନ୍ତ୍ର ରାଜ୍ୟ ରୂପେ ପରିଚିତ ହେଉଥିଲା । ଏଣୁ ଏ ସମ୍ପର୍କରେ ଅଧିକ ଗବେଷଣା ଅପରିହାର୍ଯ୍ୟ ।

ଐତିହାସିକ ବିବରଣୀ ଅନୁଯାୟୀ ଯୁଦ୍ଧର ଭୟାବହତାରେ ଅନୁତପ୍ତ ଅଶୋକ ବୌଦ୍ଧଧର୍ମ ଗ୍ରହଣ କରି ଚଣ୍ଡାଶୋକରୁ ଧର୍ମାଶୋକ ଭାବେ ପରିଚିତ ହେଲେ । ବୌଦ୍ଧ ଧର୍ମର ଶାନ୍ତି ବାଣୀ ତଥା ନିଜ ଶାସନ ଧାରା ସମ୍ପର୍କରେ ପ୍ରଜାମାନଙ୍କ ଅବଗତ କରାଇବା ଏବଂ ରାଜକର୍ମଚାରୀମାନଙ୍କ ତତ୍ସମ୍ପର୍କିତ ନିର୍ଦ୍ଦେଶ ଦେବା ନିମନ୍ତେ ସେ ବିଭିନ୍ନ ପନ୍ଥା ଗ୍ରହଣ କରିଥିଲେ । ତାହା ମଧ୍ୟରେ ଅନୁଶାସନ ଲେଖଗୁଡ଼ିକୁ ଶିଳା ତଥା ସ୍ତମ୍ଭମାନଙ୍କରେ ଉତ୍କୀର୍ଣ୍ଣ ଏବଂ କଳାତ୍ମକ କୀର୍ତ୍ତି ନିର୍ମାଣ ଅନ୍ୟତମ । ଏହି ଶିଳାଲେଖ ଗୁଡ଼ିକୁ ମର୍ଯ୍ୟାଦାପୂର୍ଣ୍ଣ ଓ ଦୃଷ୍ଟି ଆକର୍ଷଣୀୟ କରିବା ନିମନ୍ତେ ସେ କଳା ଓ ସ୍ଥାପତ୍ୟକୁ ମାଧ୍ୟମ ରୂପେ ଗ୍ରହଣ କରିଥିଲେ । ଏହା ବ୍ୟତୀତ ଧର୍ମାଚରଣ ନିମନ୍ତେ ଅଶୋକ ବହୁ ସଂଖ୍ୟାରେ ବୌଦ୍ଧସ୍ତୁପ ଓ ବିହାରମାନ ନିର୍ମାଣ କରାଇଥିଲେ କେତେକ ଗୁରୁତ୍ୱ ପୂର୍ଣ୍ଣ ସ୍ଥାନର ଏହି ପ୍ରକାର ନିର୍ମାଣରେ ସେ ଗ୍ରୀକ୍ ଓ ରୋମାନ୍ ସ୍ଥପତି ଓ ମୂର୍ତ୍ତିକାରମାନଙ୍କୁ ବିନିଯୋଗ କରିବା ସହିତ ବିହାର ପ୍ରଦେଶର ଚୁନାର ଅଞ୍ଚଳରେ ପ୍ରାପ୍ତ ଉତ୍କୃଷ୍ଟ ଧରଣର ବାଲି ପଥର ବ୍ୟବହାର କରୁଥିଲେ । ତେବେ ଅନେକ ସ୍ଥାନରେ ମୌର୍ଯ୍ୟକାଳୀନ କୀର୍ତ୍ତି ସ୍ଥାନୀୟ ପଥରରେ ସ୍ଥାନୀୟ ଶିଳ୍ପୀମାନଙ୍କ ଦ୍ୱାରା ନିର୍ମିତ ହୋଇଥିବା ଦେଖାଯାଏ । ପ୍ରାଚୀନ ତୋସଳି ବା ଭୁବନେଶ୍ୱରର ମୌର୍ଯ୍ୟକାଳୀନ କୀର୍ତ୍ତିଗୁଡ଼ିକ ଏହି ପ୍ରକାରର ଅଟେ । ଅଶୋକଙ୍କ ଦ୍ୱାରା ନିର୍ମିତ ସ୍ତମ୍ଭଗୁଡ଼ିକ ଉପରେ ଏକ ଗୋଲାକାର, ଓଲଟା ଭାଣ୍ଡ ସଦୃଶ ଶୀର୍ଷମୁକୁଟ (bell capital) ଉପରେ ସାଧାରଣତଃ ସିଂହ, ହସ୍ତୀ, ବୃଷଭ କିଂବା ଅଶ୍ୱ ମଧ୍ୟରୁ କୌଣସି ଏକ ପଶୁର ମୂର୍ତ୍ତି ସ୍ଥାନିତ ହୋଇଥାଏ । ଏହା ମଧ୍ୟରେ ସିଂହର ମୂର୍ତ୍ତି ସଂଖ୍ୟା ଅଧିକ ।

ଏହା ବ୍ୟତୀତ ସ୍ତମ୍ଭ ଏବଂ ସ୍ତୂପଗୁଡ଼ିକର ଚତୁଃପାର୍ଶ୍ୱରେ ଦିଆଯାଉଥିବା ପଥର ବାଡ଼ର (relling) ଲମ୍ବ ଓ ପ୍ରସ୍ତ ପଥର ଗୁଡ଼ିକରେ ବିଭିନ୍ନ ମୂର୍ତ୍ତି ଓ ମଣ୍ଡନ କୃତି ଉତ୍‌କୀର୍ଣ୍ଣ ହେଉଥିଲା । କେତେକ ଶିଳାଲେଖ ଉପରେ ବୁଦ୍ଧଦେବଙ୍କ ପ୍ରତୀକ 'ଗଜୋତ୍ତମ' ଅର୍ଥାତ୍ ଏକ ହସ୍ତୀର ମୂର୍ତ୍ତି କିମ୍ବା ରେଖାଚିତ୍ର ଉତ୍‌କୀର୍ଣ୍ଣ କରାଯାଉ ଥିଲା । ଯଥେଷ୍ଟ ପୂର୍ବରୁ ଭାରତର ବିଭିନ୍ନ ପ୍ରାନ୍ତରେ ଲୋକଦେବତା ଓ ଅନ୍ୟାନ୍ୟ ମୂର୍ତ୍ତି ସ୍ଥାନୀୟ ଭାବେ ନିର୍ମିତ ହେଉଥିବାବେଳେ ଅଶୋକ ଏକ ସମୟରେ, ବହୁ ସଂଖ୍ୟାରେ ଧର୍ମସମ୍ପର୍କିତ ମାର୍ଜିତ ମୂର୍ତ୍ତିକଳା ସୃଷ୍ଟିକରି ଭାରତୀୟ କଳାଇତିହାସରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛନ୍ତି ।

ଓଡ଼ିଶାରେ ଅଶୋକଙ୍କ ଦୁଇଟି ଶିଳାଲେଖ ଅନୁଶାସନ ରହିଛି । ତାହା ମଧ୍ୟରୁ ଭୁବନେଶ୍ୱର ନିକଟସ୍ଥ ଧଉଳିର ଶିଳାଲେଖ ଉପରେ ଏକ ହସ୍ତୀର ସମ୍ମୁଖ ଭାଗ ଉତ୍‌କୀର୍ଣ୍ଣ ହୋଇଥିବାବେଳେ ଗଞ୍ଜାମ ଜିଲ୍ଲା ପୁରୁଷୋତ୍ତମ ପୁର ନିକଟ ଋଷିକୁଲ୍ୟା ନଦୀତୀର ଜଉଗଡ଼ରେ ଥିବା ଶିଳାଲେଖ ଉପରେ କୌଣସି ମୂର୍ତ୍ତି ଦେଖିବାକୁ ମିଳେନାହିଁ । ବ୍ରିଟିଶ୍ ସମୟର କେତେକ ନଥିପତ୍ରରୁ ଜଣାଯାଏ ଯେ ପୂର୍ବେ ଧଉଳୀର ଏହି କୀର୍ତ୍ତି ନିକଟରେ ଅନେକ ବୌଦ୍ଧ ସ୍ତୂପର ଧ୍ୱଂସାବଶେଷ ରହିଥିଲା । କାଳକ୍ରମେ ସେଗୁଡ଼ିକ ସମ୍ପୂର୍ଣ୍ଣ ନିଶ୍ଚିନ୍ନ ହୋଇପଡ଼ିଛି ।



ଧଉଳି ଠାରେ ଥିବା ଅଶୋକଙ୍କ ଅଭିଲେଖ ଉପର ହସ୍ତୀମୂର୍ତ୍ତି

ଉପରୋକ୍ତ ଶିଳାଲେଖର ଊର୍ଦ୍ଧ୍ୱରେ ଥିବା କିଞ୍ଚିତ୍ ସମତଳ ସ୍ଥାନଟି ପ୍ରାୟ ୫.୦୦ ମିଟର ଲମ୍ବ ଓ ୪.୫୦ମିଟର ପ୍ରସ୍ଥ ଅଟେ। ଏହା ଉପରେ ଥିବା ଅନ୍ୟ ଏକ କୁନ୍ଦ ସଦୃଶ ପଥରରେ ହସ୍ତୀ ମୂର୍ତ୍ତିଟିର କେବଳ ସମ୍ମୁଖଭାଗ ଉତ୍କୀର୍ଣ୍ଣ ହୋଇଛି। ଏହି କୃତିଟି ପଥର ଚଟାଣ ଉପରେ ଚଉଡ଼ା ୨.୦୦ ମିଟର, ଉଚ୍ଚତା ୧.୨୦ ମିଟର ଓ ଲମ୍ବ ପ୍ରାୟ ୧.୦୦ ମିଟର ହୋଇଥିବା ସ୍ଥଳେ ଅଖୋଦିତ ପଛପାଖ ପଥରଟି ଚଟାଣ ଉପରେ ଚଉଡ଼ା ୨.୪୦, ସର୍ବାଧିକ ଉଚ୍ଚତା ୧.୪୫ମିଟର ଏବଂ ପଛପାଖ ମୂଷା ଲାଞ୍ଜଭଳି ସରୁଆ ଅଂଶଟିର ଲମ୍ବ ପ୍ରାୟ ୫.୨୫ ମିଟର ଅଟେ।

ଉତ୍ତର ଓ ଉତ୍ତର-ପଶ୍ଚିମ ଭାରତରେ ଥିବା ମୌର୍ଯ୍ୟକାଳୀନ ମୂର୍ତ୍ତିକଳାର ମସୃଣତା ଓ ସୂକ୍ଷ୍ମତା ଏହି କୃତିରେ ନଥିବା ସତ୍ତ୍ୱେ, ମୂର୍ତ୍ତିଟି ଅତ୍ୟନ୍ତ ଜୀବନ୍ତ ଏବଂ ଗାମ୍ଭୀର୍ଯ୍ୟ, ଧୈର୍ଯ୍ୟ ଓ କରୁଣା ଭାବ ପରିପ୍ରକାଶ କରେ।





ଭୁବନେଶ୍ୱର, ଅଶୋକସ୍ତମ୍ଭର
ମୂଳପୀଠ ଓ ଭଗ୍ନ ସିଂହ ମୂର୍ତ୍ତି

ଭୁବନେଶ୍ୱରର ପୂର୍ବଦିଗ ଗଙ୍ଗୁଆ ନଦୀ କୂଳ, ବଡ଼ଗଡ଼ ଓ ବ୍ରହ୍ମେଶ୍ୱର ଗ୍ରାମର ମଧ୍ୟବର୍ତ୍ତୀ ଅଞ୍ଚଳର ଭାସ୍କରେଶ୍ୱର ମନ୍ଦିର ଓ ପଞ୍ଚୁପାଣ୍ଡବ ଗୁମ୍ଫା ମଧ୍ୟ ତୋସଳୀରେ ଅଶୋକଙ୍କ ଧର୍ମଜୀବିର ଏକ ପ୍ରମୁଖ ସ୍ଥାନ ଥିଲା । ଭାସ୍କରେଶ୍ୱର ମନ୍ଦିରର ସୁଉଚ୍ଚ ଶିବଲିଙ୍ଗଟି ପୂର୍ବେ ଏକ ଅଶୋକ ସ୍ତମ୍ଭଥିବା ଜଣାଯାଏ । ଅଶୋକଙ୍କ ଶାସନ ଅନ୍ତେ ପ୍ରତିଶୋଧ ପ୍ରରାୟଣ ତୋସଳିବାସୀ ଓ ପାଶୁପତ ଶୈବ ଗୋଷ୍ଠୀ ସ୍ତମ୍ଭ ଉପରେ ଥିବା ଶୀର୍ଷମୁକୁଟ ଓ ସିଂହ ପ୍ରତିମାଟିକୁ ସେଠାରୁ ଛିନ୍ନ କରିଥିଲେ । ଏହା ପରେ ସ୍ତମ୍ଭର ମୂଳ ଭାଗରେ ଚାରିଖଣ୍ଡ ପଥର ଦେଇ ଏକ ଚକ୍ରାକାର ଅର୍ଘପଟ ବା ଶକ୍ତିଚକ୍ର ନିର୍ମାଣ ପୂର୍ବକ ସ୍ତମ୍ଭଟିକୁ ଶିବଲିଙ୍ଗରେ ରୂପାନ୍ତରିତ କରାଇଥିଲେ । ତେବେ ଭଗ୍ନ ସ୍ତମ୍ଭର ଅଗ୍ରଭାଗକୁ ଅର୍ଦ୍ଧ ଗୋଲାକାର ଓ ମସୃଣ ନକରିବା ଦ୍ୱାରା ପୂର୍ବର ସେହି ଅସମାନ, ଭଗ୍ନ ଚିହ୍ନଗୁଡ଼ିକ ଅଦ୍ୟାବଧି ଦୃଷ୍ଟିଗୋଚର ହୁଏ । ବର୍ତ୍ତମାନ ଏହି ସ୍ତମ୍ଭ ବା ଭାସ୍କରେଶ୍ୱର ଶିବଲିଙ୍ଗର ଉଚ୍ଚତା ପ୍ରାୟ ୩.୦୦ ମିଟର, ପରିଧି ପ୍ରାୟ ୩.୮୦ ମିଟର ଓ ବ୍ୟାସ ପ୍ରାୟ ୧.୧୫ ମିଟର ହୋଇଥିବାବେଳେ ସଂଯୋଗ ହୋଇଥିବା ଅର୍ଘପଟ୍ଟର ପରିଧି ପ୍ରାୟ ୬.୨୦ ମିଟର ଓ ଉଚ୍ଚତା ପ୍ରାୟ ୦.୩୦ ମିଟର ଅଟେ । ସ୍ତମ୍ଭ ଉପର ଶୀର୍ଷ ମୁକୁଟ ଓ ଭଗ୍ନ ସିଂହ ମୂର୍ତ୍ତିଟି ଭୁବନେଶ୍ୱରର ଭିନ୍ନ ଭିନ୍ନ ସ୍ଥାନରେ ବହୁଦିନ ଧରି ଅବହେଳିତ ଅବସ୍ଥାରେ ପଡ଼ିବା ପରେ ସେଗୁଡ଼ିକୁ ଉଦ୍ଧାର କରାଯାଇ ରାଜ୍ୟ ସଂଗ୍ରାହଳୟରେ ରଖାଯାଇଛି ଏଥି ମଧ୍ୟରୁ ଶୀର୍ଷମୁକୁଟର ଉଚ୍ଚତା ପ୍ରାୟ ୦.୮୦ ମିଟର, ଏବଂ ସର୍ବାଧିକ ପରିଧି ବା ଗୋଲେଇ ପ୍ରାୟ ୬.୦୦ ମିଟର ଅଟେ । ଏହା ଅନ୍ୟ ସ୍ଥାନରେ ଥିବା ଅଶୋକ ସ୍ତମ୍ଭର ଶୀର୍ଷମୁକୁଟର ପାରମ୍ପାରିକ ଶୈଳୀରେ ନିର୍ମିତ ହୋଇଥିବାବେଳେ ଏହାର ଉର୍ଦ୍ଧ୍ୱଭାଗ ବଳୟ ଉପରେ ଏକ ହଂସୀ, ବିକଶିତ ପଦ୍ମ, ପକ୍ଷଯୁକ୍ତ ହସ୍ତୀ, ବୃନ୍ତଯୁକ୍ତ ପଦ୍ମ ଓ ଏକ ପକ୍ଷଯୁକ୍ତ ଧାବମାନ ଅଶ୍ୱର ମୂର୍ତ୍ତି ଖୋଦିତ ହୋଇଛି । ଏହା ଉପରେ ସ୍ଥାନିତ ହୋଇଥିବା ଏକକ ସିଂହ ମୂର୍ତ୍ତିଟିର ପୃଷ୍ଠଭାଗ ସମ୍ପୂର୍ଣ୍ଣ ନଷ୍ଟ ହୋଇ ପଡ଼ିଥିବାବେଳେ ତିଷ୍ଠି ରହିଥିବା ସମ୍ମୁଖ ଭାଗର ଉଚ୍ଚତା ପ୍ରାୟ ୧.୧୦ ମିଟର ଓ ତା'ର କେଶର ଉପର ଗୋଲେଇ ପ୍ରାୟ ୨.୬୫ ମିଟର ଅଟେ । ସିଂହ ପୃଷ୍ଠର କେତେକ କୁଞ୍ଚିତ କେଶର ଅସ୍ପଷ୍ଟ ଭାବରେ ଦେଖାଯାଉଥିବାବେଳେ ଗୋଟିଏ ପାର୍ଶ୍ୱରେ ବ୍ରାହ୍ମୀ ଲିପିରେ 'ସିଂହବନ୍ଧ' ବୋଲି ଉଲ୍ଲେଖ ଅଛି । ତେବେ ଏହା ପରବର୍ତ୍ତୀ ସମୟରେ ଉତ୍କୀର୍ଣ୍ଣ ହୋଇଥିବା ଜଣାଯାଏ । ବୃଳିଷ୍ଠ କଳାଶୈଳୀ ମୂର୍ତ୍ତିଟିର ଖଣ୍ଡିତ ଅଂଶରୁ ମଧ୍ୟ ତା'ର ଭିଷଣତା ଓ ଗାମ୍ଭୀର୍ଯ୍ୟ ସ୍ପଷ୍ଟ ବାରିହୁଏ ।

ଉପରୋକ୍ତ ଅଶୋକ ସ୍ତମ୍ଭର ଚତୁଃପାର୍ଶ୍ବରେ ଥିବା ରେଲିଙ୍ଗ ବାଡ଼ ସମ୍ପୂର୍ଣ୍ଣ ଭାଙ୍ଗି ପଡ଼ିଥିବା ସତ୍ତ୍ୱେ ଏହାର ଭଗ୍ନାଂଶଗୁଡ଼ିକରୁ ମୂଳ ବାଡ଼ର ଆକାର ପ୍ରକାର ବିଷୟରେ କିଛିଟା ଧାରଣା କରିହୁଏ । ଏହି ବାଡ଼ ମୁଖ୍ୟ ସ୍ତମ୍ଭର ଚତୁପାର୍ଶ୍ବରେ ଏକ ବର୍ଗାକାର କ୍ଷେତ୍ର ଉପରେ ରହିଥିଲା । ଏହାର ଚାରି କୋଣରେ ଚାରିଗୋଟି ଓ ପ୍ରବେଶ ଦ୍ବାରର ଦୁଇ ପାର୍ଶ୍ବରେ ଦୁଇଗୋଟି ବଡ଼ ଖମ୍ବ ଓ ମଧ୍ୟ ଭାଗରେ ଅପେକ୍ଷାକୃତ ଛୋଟ ଖମ୍ବ ଥିବା ଜଣାଯାଏ । ଖମ୍ବଗୁଡ଼ିକ ସାଧାରଣତଃ ଚତୁଃଷ୍କୋଣ ଓ ଏହାର ଉଚ୍ଚତା ଯଥାକ୍ରମେ ମାଟିଉପରେ ଦେଢ଼ ମିଟର ଓ ଏକ ମିଟର ଥିବା ସମ୍ଭବ । ଏଗୁଡ଼ିକର ଅଳଙ୍କାରଣ ବା ମଣ୍ଡନକୃତିରେ ମୁଖ୍ୟ ଖମ୍ବର ଗଣ୍ଠି ସ୍ଥାନ ଗୁଡ଼ିକରେ ଚକ୍ରାକାର ସ୍ଥାନ ମଧ୍ୟରେ ପଦ୍ମ, ଅର୍ଦ୍ଧପଦ୍ମ, ପୌରାଣିକ ପ୍ରାଣୀ କିମ୍ବା ମନୁଷ୍ୟ ପ୍ରତିମାମାନ ସ୍ଥାନିତ ହୋଇଥିବା ଅନୁମାନ କରାଯାଏ । ଛୋଟ ଖମ୍ବଗୁଡିକରେ ଦୁଇ ପାର୍ଶ୍ବରେ ସୂଚି ଖୋପ ଓ ଅନ୍ୟ ଦୁଇ ପାର୍ଶ୍ବରେ ସାମାଜିକ ଓ ରାଜନୈତିକ ବିଷୟ ସମ୍ବଳିତ ମୂର୍ତ୍ତିକଳା ଥିବା ସୂଚନା ମିଳେ । ଭୁବନେଶ୍ବରର ଭାସ୍କରେଶ୍ୱର ମନ୍ଦିର ଅଞ୍ଚଳରୁ ରେଲିଙ୍ଗ ବାଡ଼ର ମୁଖ୍ୟ ଖମ୍ବର ଏକ ଖଣ୍ଡିତ ଅଂଶ ପ୍ରାପ୍ତ ହୋଇଥିଲା । ଏହାର ଉପର ଭାଗରେ ଏକ ଅର୍ଦ୍ଧପଦ୍ମ ଓ ମଧ୍ୟ ଭାଗରେ ଏକ ପୌରାଣିକ ପ୍ରାଣୀର ମୂର୍ତ୍ତି ଦେଖିବାକୁ ମିଳିଥିଲା । ଏହି କୃତିଟି ବର୍ତ୍ତମାନ ଆଶୁତୋଷ ସଂଗ୍ରହାଳୟ, କଲିକତାରେ ଥିବା ଜଣାଯାଏ । ଓଡ଼ିଶା ରାଜ୍ୟ ସଂଗ୍ରହଳୟରେ ଥିବା କେତେକ ମଧ୍ୟଭାଗ ଖୁଣ୍ଟର ଦୁଇ ପାର୍ଶ୍ବରେ ମଧ୍ୟ ବିଭିନ୍ନ ପ୍ରକାର ମୌର୍ଯ୍ୟ କାଳୀନ ମୂର୍ତ୍ତିକଳା ଦେଖାଯାଏ । ପ୍ରାୟ ୧.୦୦ ମିଟର ଉଚ୍ଚତା ବିଶିଷ୍ଟ ଏକ ଖମ୍ବର ଦୁଇ ପାର୍ଶ୍ବରେ କେତେକ ନର, ନାରୀ ବିଭିନ୍ନ ପ୍ରକାର ବାଦ୍ୟଯନ୍ତ୍ର ବାଦନ କରୁଥିବା ଦୃଶ୍ୟ ରହିଛି । ସେହିପରି ଅନ୍ୟ ଭଗ୍ନ ଖମ୍ବଗୁଡ଼ିକର ଦୁଇପାର୍ଶ୍ବରେ ଯଥାକ୍ରମେ : ମସ୍ତକରେ ପୂର୍ଣ୍ଣକୁମ୍ଭ ଧାରଣ କରିଥିବା ଦୁଇ ଯକ୍ଷିଣୀ, ଦୁଇ ଯୁଗଳ ପ୍ରତିମା, ଦୁଇ ବଳଦ ଟାଣୁଥିବା ଏକ ସଗଡ଼ ଉପରେ ଦୁଇଜଣ ବ୍ୟକ୍ତି ବସିଥିବା ଦୃଶ୍ୟ ଉଦ୍‌କୀର୍ଣ୍ଣ ହୋଇଛି । ସଂଗ୍ରହାଳୟ ବାରଣ୍ଡାରେ ପଡ଼ିଥିବା ଅନ୍ୟ ଏକ ଖମ୍ବାଂଶରେ ଦୁଇଜଣ ବ୍ୟକ୍ତି ପଦ୍ମ ସଂଯୋଗ ହୋଇଥିବା ପୁଷ୍ପମାଳା ଧାରଣ କରି ଦଣ୍ଡାୟମାନ ହୋଇଛନ୍ତି ଏବଂ ଅନ୍ୟ ଏକ କୃତିରେ ଗୋଟିଏ ବଳଦ ଟାଣୁଥିବା ଏକ ସଗଡ଼ ଉପରେ ଜଣେ ସୁବେଶ ପୁରୁଷ ବସିଥିବା ଦୃଶ୍ୟ ରହିଛି । ମୂର୍ତ୍ତିଯୁକ୍ତ ଏହି ରେଲିଙ୍ଗଗୁଡ଼ିକ ବଗଡା କନ୍ଦା ପଥରରେ ନିର୍ମିତ ହୋଇଥିବାରୁ ଏବଂ ଅବକ୍ଷୟ ଯୋଗୁଁ କଳାକୃତି ଗୁଡ଼ିକ ଅନେକାଂଶରେ ଅସ୍ପଷ୍ଟ ହୋଇପଡିଛି । ଭୁବନେଶ୍ବରର ଏହି ମୌର୍ଯ୍ୟକାଳୀନ ମୂର୍ତ୍ତି ବ୍ୟତୀତ ଓଡ଼ିଶାର ଅନ୍ୟ କେଉଁଠାରେ ଏହି ସମୟର କଳାକୃତି ଅଦ୍ୟାବଧି ପ୍ରାପ୍ତ ହୋଇ ନାହିଁ ।





ଭୁବନେଶ୍ବର ଅଶୋକ ସ୍ତମ୍ଭ ସହିତ ଥିବା ରେଲିଂ ବାଡ଼ର କେତେକ ଭଗ୍ନ ଅଂଶ

# କଳିଙ୍ଗ ସମ୍ରାଟ ମହାମେଘବାହନ ଖାରବେଳ ଓ ଖଣ୍ଡଗିରି ଉଦୟଗିରି ଗୁମ୍ଫାର ମୂର୍ତ୍ତିକଳା

ଅଶୋକଙ୍କ ପରେ, ଓଡ଼ିଶାରେ ଶୈଳୋଦ୍ଭବ ରାଜବଂଶର ଅଭ୍ୟୁଦୟ ପର୍ଯ୍ୟନ୍ତ କଳିଙ୍ଗର ସାଂସ୍କୃତିକ ଇତିହାସ ଅସ୍ପଷ୍ଟ । ତେବେ, ଏହା ମଧ୍ୟରେ ଆନୁମାନିକ ଖ୍ରୀ:ପୂ: ୧ମ ଶତାବ୍ଦୀ ବେଳକୁ ଅନ୍ଧକାର ମଧ୍ୟରେ ବିଦ୍ୟୁତ୍‌ରେଖା ସମ ମହାମେଘବାହନ ଉପାଧିଧାରୀ, ଚେତ ବଂଶୋଦ୍ଭବ, କଳିଙ୍ଗ ସମ୍ରାଟ ଐର ଖାରବେଳଙ୍କ ଆବିର୍ଭାବ ଏକ ବିସ୍ମୟକର ଘଟଣା ଅଟେ । କାରଣ ଓଡ଼ିଶା ଇତିହାସରେ ତାଙ୍କ ପୂର୍ବାପର ଶାସକଙ୍କ ସତ୍ତା ଦୃଷ୍ଟିଗୋଚର ହୁଏନାହିଁ । ଭୁବନେଶ୍ୱର ନିକଟସ୍ଥ ଉଦୟଗିରିରେ ସେ ଖୋଦିତ କରାଇଥିବା ଗୁମ୍ଫା ସ୍ଥାପତ୍ୟ ଓ ହାତୀଗୁମ୍ଫା ଶିଳାଲେଖରୁ ଏହି ମହାନ ସମ୍ରାଟଙ୍କ ବାଲ୍ୟ ଜୀବନ ସମେତ ଚଉଦ ବର୍ଷର କୀର୍ତ୍ତିମୟ ଘଟଣାବଳୀ ଯଥା : ରାଜ୍ୟାଭିଷେକ, ରାଜ୍ୟ ବିସ୍ତାର, ଜନହିତକର କାର୍ଯ୍ୟ, ଧର୍ମାଚରଣ ତଥା ଶାସନ ଧାରା ବିଷୟରେ ସମ୍ୟକ ଧାରଣା କରିହୁଏ । ଏହା ବ୍ୟତୀତ ଖାରବେଳଙ୍କ ଜୀବନର ଅନେକ ସ୍ମରଣୀୟ ଘଟଣାବଳୀ କେତେକ ଗୁମ୍ଫାର ମୂର୍ତ୍ତିକଳାରେ ସୁନ୍ଦର ଭାବେ ରୂପାୟିତ ହୋଇଛି । ଐତିହାସିକ ଘଟଣାବଳୀର ଏହିପରି ସମୟାନୁକ୍ରମ ଉପସ୍ଥାପନା ଖାରବେଳଙ୍କ ବ୍ୟତୀତ ଅନ୍ୟ କୌଣସି ଭାରତୀୟ ସମ୍ରାଟ କରିଥିବା ଉଦାହରଣ ଦେଖିବାକୁମିଳେ ନାହିଁ । ଖାରବେଳ ଜୈନ ଥିବାରୁ ଖଣ୍ଡଗିରି-ଉଦୟଗିରିର କଳା ଓ ଗୁମ୍ଫା ସ୍ଥାପତ୍ୟ ଭାରତର ପ୍ରାଚୀନତମ ଜୈନକୀର୍ତ୍ତି ବୋଲି ବିବେଚନା କରାଯାଏ ।

ହାତୀଗୁମ୍ଫା ନାମରେ ପରିଚିତ ଉଦୟଗିରିର ଏକ ଗହ୍ୱର ସଦୃଶ ପଥର ତଳେ ଖାରବେଳଙ୍କ ଅଭିଲେଖଟି ଅବସ୍ଥିତ । ବ୍ରାହ୍ମୀ ଲିପିରେ ଏହା ସତର ଧାଡ଼ି ବିଶିଷ୍ଟ ଅଟେ । ଲେଖଟିର ଅନ୍ୟ ବିଷୟ ବ୍ୟତୀତ ଗୁମ୍ଫାଗୁଡ଼ିକ ଖୋଦନ ସମ୍ପର୍କୀୟ ଅଂଶଟି ଗୁରୁତ୍ୱ ପୂର୍ଣ୍ଣ, ଯାହାର ମୂଳ ଲେଖା ଓ ଓଡ଼ିଆ ଅନୁବାଦ ନିମ୍ନରେ ପ୍ରଦତ୍ତ ହେଲା ।

ମୂଳ ଲେଖ (୧୪ଶ ଧାଡ଼ି) ''x x x ସିନୋ ବସିକରୋତି । ତେରସମେ ସେ ସୁପବର୍ତ୍ତ-ବିଜୟ-ଚକେ କୁମାରୀ-ପବତେ ଅରହିତୋ ପରିନିବସତୋହି କାୟନିସୀଦୀୟାୟ ରାଜଭତକେହି, ରାଭାତିହି, ରାଜପୁତେହି, ରାଜ ମହିସହି ଖାରବେଳ ସରିନା ।''

ଓଡ଼ିଆ ଅନୁବାଦ : '' ରାଜତ୍ୱର ତ୍ରୟୋଦଶ ବର୍ଷରେ ସୁପ୍ରବର୍ତ୍ତ-ବିଜୟ-ଚକ୍ରରେ ଅବସ୍ଥିତ କୁମାରୀ, ପର୍ବତରେ ଖାରବେଳ ଓ ତାଙ୍କ ମହିଷୀ, ପୁତ୍ର, ବନ୍ଧୁ ଓ ରାଜଭୃତ୍ୟମାନେ ଅର୍ହତମାନଙ୍କ ନିବାସ ନିମିତ୍ତ ୧୧୭ଟି ଗୁମ୍ଫା ଖୋଦନ କରାଇଥିଲେ । ''

ଅନ୍ୟ ଭାବରେ ଏହାର ଅର୍ଥ ହେଉଛି ବିଜୟ କରିଥିବା ସୁବ୍ୟବସ୍ଥିତ ରାଜ୍ୟର ସୁନ୍ଦର କୁମାରୀ ପର୍ବତରେ ସେ ତାଙ୍କ ପରିବାର ବର୍ଗ ଓ ରାଜ କର୍ମଚାରୀମାନଙ୍କ ପୃଷ୍ଠପୋଷକତାରେ ଗୁମ୍ଫା ଗୁଡ଼ିକ ଖୋଦିତ ହୋଇଥିଲା । ଏହା ବ୍ୟତୀତ ହାତୀଗୁମ୍ଫା ଅଭିଲେଖର କୌଣସି ସ୍ଥାନରେ ଏହି ପର୍ବତ ନିଜ ରାଜ୍ୟରେ କିଂବା ନିଜ ରାଜଧାନୀ, କଳିଙ୍ଗନଗରର ସମୀପରେ ଥିବା ଉଲ୍ଲେଖ କରାଯାଇ ନାହିଁ । ଅର୍ଥାତ୍, ଏହି ପର୍ବତ ଦ୍ୱୟ ଖାରବେଳ ଜୟ କରିଥିବା ଏକ ଅଞ୍ଚଳର ଅଂଶ ବିଶେଷ ମାତ୍ର ।

ହାତୀଗୁମ୍ଫା ଶିଳାଲେଖ ଅନୁଯାୟୀ କଳିଙ୍ଗନଗର ଥିଲା ଖାରବେଳଙ୍କ ରାଜଧାନୀ । ସୂଚନାଯୋଗ୍ୟ ଯେ, ଓଡ଼ିଶା ଦକ୍ଷିଣ ସୀମାର ଅନତି ଦୂର, ଆନ୍ଧ୍ରପ୍ରଦେଶର ସମୁଦ୍ର ତୀରରେ କଳିଙ୍ଗନଗର ନାମକ ଏକ ପ୍ରାଚୀନ ସହର ରହିଛି । ଅଭିଲେଖରୁ ମଧ୍ୟ ଖାରବେଳଙ୍କ ରାଜଧାନୀ ସମୁଦ୍ର ତୀରରେ ଥିବା ଜଣାଯାଏ । ଏହାର ପରବର୍ତ୍ତୀ ସମୟରେ ମଧ୍ୟ ଏହି କଳିଙ୍ଗନଗର ବିଭିନ୍ନ ରାଜବଂଶର ରାଜଧାନୀ ଥିବା ତାମ୍ରପତ୍ର ଅଭିଲେଖମାନଙ୍କରେ ଉଲ୍ଲେଖ ଅଛି । ଏହା ବ୍ୟତୀତ ଅନେକ ପୁରାଣ ଓ ପ୍ରାଚୀନ କାବ୍ୟ ରେ ମଧ୍ୟ କଳିଙ୍ଗନଗରର ବର୍ଣ୍ଣନା ଦେଖିବାକୁମିଳେ । ତେବେ, ବର୍ତ୍ତମାନ ଓଡ଼ିଶାର କୌଣସି ଠାରେ କଳିଙ୍ଗନଗର ନାମକ ଅନ୍ୟ ଏକ ପ୍ରାଚୀନ ସ୍ଥାନ ନାହିଁ । କେତେକ ଲିପିତତ୍ତ୍ୱବିତ୍‌ଙ୍କ ମତରେ ହାତୀଗୁମ୍ଫା ଶିଳାଲେଖର ଭାଷା ଦକ୍ଷିଣଭାରତୀୟ ଭାଷାଦ୍ୱାରା ବହୁ ଭାବରେ ପ୍ରଭାବିତ ଏବଂ ଏଥିରେ ଥିବା ଅନେକ ବ୍ୟକ୍ତିଙ୍କ ଦକ୍ଷିଣଭାରତୀୟ ନାମ ଦେଖାଯାଏ । ଏପରିକି, ସାତବାହନ, ମେଘବାହନ ଇତ୍ୟାଦି 'ବାହନ' ଉପାଧିଧାରୀ ରାଜବଂଶ ଗୁଡ଼ିକ ସାଧାରଣତଃ ଦକ୍ଷିଣଭାରତୀୟ । ଶିଳାଲେଖରେ ଦେବାୟତନ ସହିତ ଗୋପୁରାଣୀ ବା ଗୋପୁର ଶବ୍ଦ ବ୍ୟବହାର ହୋଇଛି । ଗୋପୁରଗୁଡ଼ିକ କେବଳ ଦକ୍ଷିଣଭାରତୀୟ ମନ୍ଦିର ସହିତ ସଂଯୁକ୍ତ । ଓଡ଼ିଶାର ମନ୍ଦିର ସ୍ଥାପତ୍ୟରେ 'ଗୋପୁର' ବିରଳ । ଏହା ବ୍ୟତୀତ ଖାରବେଳଙ୍କ ସମୟର ଅନ୍ୟ କେତୋଟି ଶିଳାଲେଖ ଆନ୍ଧ୍ର ଓ କର୍ଣ୍ଣାଟକ ଅଞ୍ଚଳରୁ ପ୍ରାପ୍ତ ହୋଇଛି । ଏହିପରି ଅନେକ ବିଷୟରୁ ସୂଚନା ମିଳେ ଯେ, ଖାରବେଳ ଜଣେ ଦକ୍ଷିଣଭାରତୀୟ ସମ୍ରାଟ ଥିଲେ ।

ଓଡ଼ିଶାର କେତେକ ଐତିହାସିକ ଖାରବେଳ ଓଡ଼ିଶାର ସ୍ଥାନୀୟ ରାଜା ଏବଂ ତାଙ୍କ ରାଜଧାନୀ ପୁରୀ କିମ୍ବା ଭୁବନେଶ୍ୱର ହୋଇଥିବାବେଳେ ଶିଶୁପାଳଗଡ଼ ତାଙ୍କ ରାଜପ୍ରାସାଦ ବୋଲି ଅନୁମାନ କରିଛନ୍ତି । ଜଣେ ଐତିହାସିକଙ୍କ ମତରେ 'କଳିଙ୍ଗନଗର' ଏକ ବିଶେଷ ଣ ଶବ୍ଦ, ଯାହାକି ସର୍ବଦା କଳିଙ୍ଗର ରାଜଧାନୀକୁ ବୁଝାଏ । ଅର୍ଥାତ୍, ବିଭିନ୍ନ ସମୟରେ କଳିଙ୍ଗର ରାଜଧାନୀ ଥିବା ଭିନ୍ନ ଭିନ୍ନ ସ୍ଥାନ 'କଳିଙ୍ଗନଗର' ଭାବେ ପରିଚିତ ହେଉଥିଲା । ତେବେ, ଏହି ପ୍ରକାର ଉଦାହରଣ କୌଣସି ଐତିହାସିକ ତଥ୍ୟ କିମ୍ବା ତାମ୍ରପତ୍ର ଲେଖମାନଙ୍କରେ ଦେଖିବାକୁମିଳେ ନାହିଁ । ଏପରିକି, କୌଣସି ସମୟରେ ପ୍ରାଚୀନ ଭୁବନେଶ୍ୱର କିମ୍ବା ପୁରୀ 'କଳିଙ୍ଗନଗର' ନାମରେ ପରିଚିତ ହୋଇଥିବା ଜଣାଯାଏ ନାହିଁ । ଖାରବେଳ ଜଣେ କଳା ଓ ସଂସ୍କୃତିପ୍ରେମୀ ସମ୍ରାଟ ଥିଲେ । ସେ ତାଙ୍କ ରାଜତ୍ୱର ନବମ ବର୍ଷରେ ଅଷ୍ଟବିଂଶ ଲକ୍ଷ ମୁଦ୍ରା ବ୍ୟୟକରି ବୈଦୁର୍ଯ୍ୟ ଖଚିତ 'ମହାବିଜୟ ପ୍ରାସାଦ' ନାମକ କଳିଙ୍ଗ ରାଜପ୍ରାସାଦ ନିର୍ମାଣ କରାଇଥିଲେ । ଏଥିରୁ ସୂଚନା ମିଳେ ଯେ, ପ୍ରାସାଦଟି ନିଶ୍ଚିତ ଭାବେ ଏକ କାରୁକଳାପୂର୍ଣ୍ଣ ନିର୍ମାଣ ହୋଇଥିବ । କିନ୍ତୁ ଶିଶୁପାଳଗଡ଼ରେ ଖାରବେଳଙ୍କ ସମୟ, କାରୁକଳା ଓ ସ୍ଥାପତ୍ୟର କୌଣସି ପ୍ରଭାବ ପରିଲକ୍ଷିତ ହୁଏନାହିଁ । ଏହି ଗଡର ନିରାତମ୍ବର ନିର୍ମାଣ ଶୈଳୀ ଏବଂ ପ୍ରାପ୍ତ ପ୍ରତ୍ନାବଶେଷ ପ୍ରମାଣିତ କରେ ଯେ, ଦୁର୍ଗଟି ଭାରତର ଅଳ୍ପ କେତୋଟି ପ୍ରାଚୀନ ଦୁର୍ଗ ମଧ୍ୟରୁ ଅନ୍ୟତମ । ଏପରିକି, ଏହା ମୌର୍ଯ୍ୟଯୁଗ ପୂର୍ବବର୍ତ୍ତୀ ସମୟର ବୋଲି ପ୍ରତ୍ନତତ୍ତ୍ୱବିତ୍‌ମାନେ ମତ ଦିଅନ୍ତି । ଓଡ଼ିଶାର ଏହି ଐତିହାସିକମାନେ ବହୁ ବିରୋଧାଭାବ ପ୍ରକାଶ କରୁଥିବା, ଅଯୌକ୍ତିକର ବିଷୟ ଉଲ୍ଲେଖ କରି, ଖାରବେଳଙ୍କୁ ତତ୍‌କାଳୀନ ଭୁବନେଶ୍ୱର ଓ ପୁରୀ ଅଞ୍ଚଳର ଶାସକ ଓ ବାସିନ୍ଦା ବୋଲି ପ୍ରମାଣ କରିବାକୁ ଚେଷ୍ଟା କରିଛନ୍ତି । ଉଲ୍ଲେଖଯୋଗ୍ୟ ଯେ ଓଡ଼ିଶା ଅପେକ୍ଷା ଦକ୍ଷିଣଭାରତୀୟ ଇତିହାସମାନଙ୍କରେ ଖାରବେଳଙ୍କ ସମ୍ପର୍କରେ ବହୁ ଚର୍ଚ୍ଚିତ ବିଷୟ ରହିଛି । ବର୍ତ୍ତମାନର ଚିନ୍ତାଶୀଳ ଗବେଷକମାନେ ଏଗୁଡ଼ିକର ସଠିକ ଅଧ୍ୟୟନ ଅନୁସନ୍ଧାନ ଓ ଅନୁଶୀଳନ ଦ୍ୱାରା ଯୁକ୍ତିଯୁକ୍ତ ସମ୍ଭାବନାରେ ଉପନୀତ ହେବା ଉଚିତ୍ । ଏହି ପ୍ରବନ୍ଧରେ ଖଣ୍ଡଗିରି -ଉଦୟଗିରି ଗୁମ୍ଫାର ମୂର୍ତ୍ତିକଳା ମୁଖ୍ୟ ବିଷୟ ହୋଇଥିବାରୁ ଉପରୋକ୍ତ ବିଷୟରେ ଅଧିକ ଆଲୋଚନା ଅନାବଶ୍ୟକ ମନେହୁଏ ।

ଜୈନତୀର୍ଥ ଖଣ୍ଡଗିରି, ଉଦୟଗିରିର ପ୍ରାଚୀନତା ଅନୁସନ୍ଧାନ କଲାବେଳେ ଜଣାଯାଏ ୨୪. ଜୈନମାନଙ୍କର ୨୪ଶ ତମ ଅର୍ଥାତ୍, ଶେଷ ତୀର୍ଥଙ୍କର ମହାବୀରସ୍ୱାମୀ ଧର୍ମ ପ୍ରଚାରାର୍ଥେ ତୋସଳ ଓ ସେଠାରୁ ମୋସଳ ଗମନ କରିଥିଲେ । ଏହାଙ୍କ ସମୟ ଖ୍ରୀ:ପୂ:୬ଷ୍ଠ ଶତାବ୍ଦୀ ବୋଲି ଐତିହାସିକମାନେ ମତ ପ୍ରକାଶ କରନ୍ତି । ଅନ୍ୟ କେତେକ ପ୍ରାଚୀନ ଜୈନ ଗ୍ରନ୍ଥରେ ମହାବୀର ବର୍ଦ୍ଧମାନ କଳିଙ୍ଗରେ ଜୈନଧର୍ମ ପ୍ରଚାର କରିଥିବା ବିଷୟ ଉଲ୍ଲେଖ ଅଛି । ଅର୍ଥାତ୍, ତୋସଳ ଓ କଳିଙ୍ଗ ରାଜ୍ୟରେ ବୌଦ୍ଧ ଓ ବ୍ରାହ୍ମଣ୍ୟ ଧର୍ମର ବହୁଳ ପ୍ରସାର ପୂର୍ବରୁ ଜୈନ ଧର୍ମର ଲୋକପ୍ରିୟତା ରହିଥିଲା । ସୂଚନାଯୋଗ୍ୟ ଯେ, ପୂର୍ବେ ଭୁବନେଶ୍ୱର ଅଞ୍ଚଳ ତୋସାଳୀ ନାମରେ ପରିଚିତ ଥିବାବେଳେ, ଏହାକୁ କେନ୍ଦ୍ରକରି ଏକ ବିସ୍ତୀର୍ଣ୍ଣ ଅଞ୍ଚଳ ତୋସଳ ରାଜ୍ୟ ଥିଲା । ଏଥିରୁ ଅନୁମେୟ ଯେ, ମହାବୀରଙ୍କ ସମୟରୁ ଖଣ୍ଡଗିରି, ଉଦୟଗିରି ଏକ ଜୈନ ତୀର୍ଥ ଭାବେ ପରିଗଣିତ ହେଉଥିଲା । ଖାରବେଳ ଏହି ଅଞ୍ଚଳ ଜୟ କରିବା ପରେ ଏହାର ମଧୁମୟ ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ଆଧ୍ୟାତ୍ମିକ ପରିବେଶରେ ପ୍ରଭାବିତହୋଇ ଏଠାରେ ଧର୍ମାଚରଣ କରୁଥିବା ଜୈନ ସନ୍ୟାସୀମାନଙ୍କ ବସବାସ ନିମନ୍ତେ ପର୍ବତ ଗାତ୍ରରେ ଗୁମ୍ଫାଗୁଡିକ ଖୋଦନ କରାଇଥିଲେ । ପୂର୍ବେ ତୀର୍ଥ କ୍ଷେତ୍ରମାନଙ୍କରେ ଧର୍ମ କୀର୍ତ୍ତି ନିର୍ମାଣ କରିବା ଧର୍ମପ୍ରାଣ ଶାସକମାନଙ୍କ ଏକ ନୈତିକ କାର୍ଯ୍ୟଥିଲା । ପରବର୍ତ୍ତୀ ସମୟରେ ପାଶୁପତ ଶୈବ ସନ୍ୟାସୀମାନଙ୍କ ଧର୍ମ ପ୍ରଚାରରେ ତତ୍‌ପରତା ଓ ଜୈନ ଅନୁଷ୍ଠାନମାନଙ୍କୁ ରାଜ, ମହରାଜାମାନଙ୍କ ପୃଷ୍ଠପୋଷକତାର ଅଭାବ ଯୋଗୁଁ ବିଭିନ୍ନ ଅନୁଷ୍ଠାନ ସମେତ ଖଣ୍ଡଗିରି, ଉଦୟଗିରିର ଜୈନତୀର୍ଥ ମଧ ନିଷ୍କ୍ରିୟ ହୋଇ ପଡ଼ିଥିଲା । ସ୍ଥାନୀୟ ଲୋକେ ସେଠାରୁ ପଥର କାଟି ନେବା ଦ୍ୱାରା ଅନେକ ଗୁମ୍ଫା ସମ୍ପୂର୍ଣ୍ଣ ଓ କେତେକ ଆଂଶିକ ଲୋପ ପାଇଗଲା ।

ବର୍ତ୍ତମାନ ତିଷ୍ଠି ରହିଥିବା ଖଣ୍ଡଗିରିର ୧୫ ଗୋଟି ଗୁମ୍ଫା ଓ ଉଦୟଗିରିର ୧୮ ଗୋଟି ଗୁମ୍ଫାର ସଂରକ୍ଷଣ ଦାୟିତ୍ୱ କେନ୍ଦ୍ର ପ୍ରତ୍ନତତ୍ତ୍ୱ ବିଭାଗ ଗ୍ରହଣ କରିଛନ୍ତି । ଏହା ବ୍ୟତୀତ ଏଠାରେ କେତେକ ଭଗ୍ନ ଓ ଗୌଣ ଗୁମ୍ଫା ମଧ ରହିଛି । ସଂରକ୍ଷିତ କେତୋଟି ଛୋଟ ଗୁମ୍ଫା ବ୍ୟତୀତ ଅଧିକାଂଶ ବୃହଦାକାର ଓ ମଧ୍ୟମ ଆକାରର ଗୁମ୍ଫାରେ ମୂର୍ତ୍ତିକଳା ଓ ମଣ୍ଡନକୃତି ଉତ୍‌କୀର୍ଣ୍ଣ ହୋଇଛି । ଏଠାରେ ମୂର୍ତ୍ତିକଳା ଓ ମଣ୍ଡନକୃତି ଏକ ଅନ୍ୟର ପରିପୂରକ କହିଲେ ଅତ୍ୟୁକ୍ତି ହେବନାହିଁ । ମୂର୍ତ୍ତିଗୁଡ଼ିକର ରଚନା, ଉପସ୍ଥାପନା ଓ କଳାଶୈଳୀର ପାର୍ଥକ୍ୟରୁ, ଏଗୁଡ଼ିକ ବିଭିନ୍ନ ସ୍ଥାନର ଶିଳ୍ପୀ ଗୋଷ୍ଠୀଙ୍କ ଦ୍ୱାରା ଉତ୍‌କୀର୍ଣ୍ଣ ହୋଇଥିବା ସୂଚନା ମିଳେ । ଏହା ମଧରେ କେତେକ ନିପୁଣ ଶିଳ୍ପୀ ମଧ ଅନ୍ତର୍ଭୁକ୍ତ । ତେବେ, ଏହି ସମସ୍ତ କୃତିକୁ ସାଧାରଣତଃ ତିନି ଶ୍ରେଣୀରେ ବିଭକ୍ତ କରାଯାଇପାରେ, ଯଥା : ଏକକ ମୂର୍ତ୍ତି, ବର୍ଣ୍ଣନାତ୍ମକ ମୂର୍ତ୍ତି ଓ ମଣ୍ଡନ ଧର୍ମୀ ମୂର୍ତ୍ତି । ଏହା ବ୍ୟତୀତ ପରବର୍ତ୍ତୀ ସମୟରେ ଖୋଦିତ କେତେକ ଗୁମ୍ଫାରେ ଜୈନ ତୀର୍ଥଙ୍କର, ଶାସନଦେବୀ ଓ କେତୋଟି ହିନ୍ଦୁ ଦେବତାଙ୍କ ମୂର୍ତ୍ତି ଖୋଦିତ ହୋଇଥିବା ଦେଖିବାକୁ ମିଳେ । ଉଲ୍ଲେଖଯୋଗ୍ୟ ଯେ, ଖାରବେଳଙ୍କ ସମୟରେ ଜୈନ ଦେବଦେବୀଙ୍କ ମୂର୍ତ୍ତି ଖୋଦନର ପରମ୍ପରା ନଥିଲା । ଏଣୁ , ଅଳ୍ପ କେତେକ ଲୋକଦେବତାଙ୍କ ମଣ୍ଡନଧର୍ମୀ ମୂର୍ତ୍ତି ବ୍ୟତୀତ ଖାରବେଳଙ୍କ ସମୟରେ କୌଣସି ଦେବତା ପ୍ରତିମା ଖୋଦିତ ହୋଇ ନାହିଁ । ପୂର୍ବ ସୂଚିତ ଏକକ ମୂର୍ତ୍ତିଗୁଡ଼ିକ କେତେକ ଗୁମ୍ଫାର ସମ୍ମୁଖଭାଗ ଦୁଇ ପାର୍ଶ୍ୱ ଓ ଖମ୍ଭ ଉପରେ ଥିବା ଦ୍ୱାରପାଳ ପରିଚାରକ, ପରିଚାରିକା ଓ ଅନ୍ୟ ମୂର୍ତ୍ତି ବର୍ଣ୍ଣନାତ୍ମକ ମୂର୍ତ୍ତିକଳା ଗୁଡ଼ିକ ସାଧାରଣତଃ କୌଣସି ଏକ ଘଟଣା କିମ୍ବା ସ୍ଥାନର ବିସ୍ତୃତ ଚିତ୍ର । କେତେକ ସ୍ଥଳେ ଏହା ଏକାଧିକ ଭାଗରେ ଧାରାବାହିକ ଭାବେ ଉପସ୍ଥାପିତ । ଏହି ପ୍ରକାର କୃତି ଗୁମ୍ଫା ବାରଣ୍ଡାର ଭିତର ପାଖ ତୋରଣମାନଙ୍କ ଉପର ଭାଗର ଦୁଇ ପାର୍ଶ୍ୱରେ ଦେଖିବାକୁ ମିଳେ । ମଣ୍ଡନ ଧର୍ମୀ ମୂର୍ତ୍ତିକଳା ବହୁବିଧ । ଏହା ସାଧାରଣତଃ ଖମ୍ଭମାନଙ୍କ ଉପର ଭାଗରେ ଥିବା ବନ୍ଧନୀ, ଓ ତୋରଣ ଓ ଖମ୍ଭ ଧାରମାନଙ୍କରେ କ୍ଷୁଦ୍ର ଅକାରରେ ଉତ୍‌କୀର୍ଣ୍ଣ ହୋଇଛି । ମନୁଷ୍ୟ ବ୍ୟତୀତ ପଶୁ, ପକ୍ଷୀ ଓ ପୌରାଣିକ ପ୍ରାଣୀମାନଙ୍କ ମୂର୍ତ୍ତି ଏହି ପର୍ଯ୍ୟାୟଭୁକ୍ତ କରାଯାଇ ପାରେ । ତେବେ, ଉଦୟଗିରି ଗୁମ୍ଫାର ବର୍ଣ୍ଣନାତ୍ମକ ମୂର୍ତ୍ତିକଳା ଅଦ୍ୱିତୀୟ ଓ ମୁଖ୍ୟ ଆକର୍ଷଣ ।

ଖଣ୍ଡଗିରି ଓ ଉଦୟଗିରି ପାହାଡ଼ର ଗୁମ୍ଫାମାନଙ୍କ ମଧ୍ୟରୁ ଉଦୟଗିରି ରାଣୀଗୁମ୍ଫାର ନିର୍ମାଣ ଶୈଳୀ ସୁପରିକଳ୍ପିତ ଓ ମୂର୍ତ୍ତିକଳା ଉଚ୍ଚକୋଟୀର । ଏହି ଦୁଇ ମହଲା ବିଶିଷ୍ଟ ନିର୍ମାଣର ତଳ ମହଲା ବାରଣ୍ଡା ଓ ବାମ ପାର୍ଶ୍ୱର କୋଠରୀ ମାନଙ୍କରେ ମୋଟ ୧୩ ଭାଗରେ ବର୍ଣ୍ଣାନାତ୍ମକ ମୂର୍ତ୍ତିକଳା ରହିଛି । ଏହା ମଧ୍ୟରୁ ସମ୍ମୁଖ ଭାଗ ବାରଣ୍ଡାଟି ସମ୍ପୂର୍ଣ୍ଣ ଭାଙ୍ଗିପଡ଼ିଥିବାରୁ ଏହାର କାନ୍ଥରେ ଥିବା ୯ଭାଗ ମୂର୍ତ୍ତି ମଧ୍ୟରୁ ୭ ଭାଗ ବହୁ ଭାବରେ ନଷ୍ଟ ହୋଇପଡିଥିଲେହେଁ, ପ୍ରାରମ୍ଭରେ ଉତ୍‌କୀର୍ଣ୍ଣ ହୋଇଥିବା ଗୋଟିଏ ଦୁଇ ମହଲା ଗୃହ ଓ ତାନିକଟ ଏକ ଆମ୍ରବୃକ୍ଷର ଚିତ୍ର ସ୍ପଷ୍ଟ ରହିଛି । ଗୃହଟିର ଛାତ ଦୁଇ ପାର୍ଶ୍ୱକୁ ଗଡ଼ାଣିଆଁ ହୋଇଥିବାବେଳେ ଦୁଇ ମହଲାର ଚତୁଃପାର୍ଶ୍ୱରେ ବାରେଣୀବାଡ ବା ରେଲିଙ୍ଗ ଥିବା ସୂଚନା ମିଳେ । ଏହା ବ୍ୟତୀତ ଗୃହ ମଧ୍ୟରେ ବସବାସ କରୁଥିବା ତିନିଜଣ ନାରୀଙ୍କ ମଧ୍ୟରୁ  ଦୁଇଜଣ ତଳ ଗୃହର ଓ ଜଣେ ଉପର ମହଲାର ବାଡ଼ ନିକଟରେ ଦଣ୍ଡାୟମାନ ହୋଇ ବାହାରର ଦୃଶ୍ୟ ଦେଖୁଛନ୍ତି । ବୋଧହୁଏ ସେମାନେ ଏହାର ପରବର୍ତ୍ତୀ ପର୍ଯ୍ୟାୟରେ ବର୍ଣ୍ଣିତ ଖାରବେଳଙ୍କ ଦିଗ୍‌ବିଜୟର ଗୌରବମୟ ଗାଥା ଦର୍ଶନ କରୁଛନ୍ତି । ଏହାର ପରବର୍ତ୍ତୀ ଭଗ୍ନ ମୂର୍ତ୍ତିକଳାର ପ୍ରତ୍ୟେକ ଭାଗରେ କେତେଜଣ ବ୍ୟକ୍ତିଙ୍କ ମଧ୍ୟରେ ଜଣକ ମସ୍ତକ ଉପରେ ଛତ୍ର ଧାରଣ କରାଯାଇଥିବା ସୂଚନା ମିଳେ । କିଞ୍ଚିତ୍ ସ୍ପଷ୍ଟ ଥିବା ୭ମ ଭାଗର ଦୃଶ୍ୟରେ ମସ୍ତକ ଉପରେ ଛତ୍ରଥିବା ବ୍ୟକ୍ତିଙ୍କୁ କେତେକ ଅନ୍ୟ ବ୍ୟକ୍ତି ନମସ୍କାର କରୁଥିବା ଦେଖାଯାଏ । କେବଳ ରାଜା ଓ ସମ୍ରାଟଙ୍କ ମସ୍ତକ ଉପରେ ଛତ୍ର ଧାରଣ କରିବା ପରମ୍ପରା ଥିବାରୁ ଏହି ଦୃଶ୍ୟଗୁଡ଼ିକ ଖାରବେଳଙ୍କ ରାଜ୍ୟ ବିସ୍ତାର ଓ ରାଜ୍ୟ ଶାସନ ସମ୍ପର୍କୀୟ ବିଷୟ ହୋଇଥିବା ସମ୍ଭବ । ମୂର୍ତ୍ତିକଳାର ୮ମ ଭାଗଟି ବାରଣ୍ଡାର ବାମ କୋଣରେ ଅବସ୍ଥିତ । ଏହା ବହୁ ଭାବରେ ସୁରକ୍ଷିତ ଓ ସ୍ପଷ୍ଟ । ଏଠାରେ ମସ୍ତକ ଉପରେ ଛତ୍ର ଥିବା, ସମ୍ରାଟ ଖାରବେଳଙ୍କ ସମ୍ମୁଖରେ ତାଙ୍କର ଜଣେ ସେନାଧକ୍ଷ ପରାଜିତ ଜଣେ ନରପତିଙ୍କୁ ନତମସ୍ତକ କରାଉଥିବାବେଳେ ନିକଟରେ ଖାରବେଳଙ୍କ ସୁସଜ୍ଜିତ ଅଶ୍ୱ ସମେତ ତିନିଜଣ ସୈନ୍ୟ ଓ ଦୁଇ ପାର୍ଶ୍ୱରେ କେତେକ ନରନାରୀ ଉପସ୍ଥିତ ଅଛନ୍ତି । ଧାରାବାହିକ ମୂର୍ତ୍ତିକଳାର ୯ମ ବା ଅନ୍ତିମ ଭାଗଟି ସ୍ପଷ୍ଟ ହେଲେ ହେଁ ସଂକ୍ଷିପ୍ତ । ଏଥିରେ ଦିଗ୍‌ବିଜୟୀ ଖାରବେଳ ତାଙ୍କ ରାଜଧାନୀକୁ ଫେରିବା ପରେ କେତେକ ପୁରୁଷ ଓ ନାରୀ ହସ୍ତରେ ପୁଷ୍ପ ଚାଙ୍ଗୁଡ଼ା ଓ ମସ୍ତକରେ ପୂର୍ଣ୍ଣଘଟ ଧାରଣ କରି ତାଙ୍କୁ ବନ୍ଦାପନା ବା ଅଭ୍ୟର୍ଥନା କରିବାରେ ତତ୍‌ପର ଥିବା ଦେଖିବାକୁ ମିଳେ । ଅର୍ଥାତ୍, ଏହା ବର୍ଣ୍ଣିତ ଦିଗ୍‌ବିଜୟ ବିଷୟର ଅନ୍ତିମ ଭାଗ ।



ଖାରବେଳଙ୍କ ରାଜ୍ୟଜୟର ଏକ ଦୃଶ୍ୟ, ରାଣୀଗୁମ୍ଫା

ସମ୍ମୁଖ ଭାଗର ବାମ ପାର୍ଶ୍ୱରେ ଥିବା ଅଣ୍ଡ କୋଠୋଟି ଗୁମ୍ଫାର ବାରଣ୍ଡା ବାଡ ଉପର ଅଂଶରେ ଚାରିଭାଗରେ ବର୍ଣ୍ଣନାତ୍ମକ ମୂର୍ତ୍ତିକଳା ରହିଛି । ଏଗୁଡ଼ିକ ଦିଗ୍‌ବିଜୟୀ ସମ୍ରାଟ ଖାରବେଳ ରାଜପ୍ରାସାଦକୁ ଫେରିବା ପରେ ଆମୋଦ ପ୍ରମୋଦ କାର୍ଯ୍ୟକ୍ରମର ଦୃଶ୍ୟ । ଏହାର ପ୍ରଥମ ଭାଗରେ ଖାରବେଳ ତାଙ୍କ ଦୁଇ ରାଣୀଙ୍କ ସହିତ ଆସନ ଗ୍ରହଣ କରିଥିବାବେଳେ ଦୁଇ ପରିଚାରିକା ହସ୍ତରେ ଖାଦ୍ୟପେୟ ଧରି ଉପସ୍ଥିତ



ଅଛନ୍ତି । ଦ୍ୱିତୀୟ ଭାଗରେ ଖାରବେଳ ତାଙ୍କ ଦୁଇ ରାଣୀଙ୍କ ତୃତୀୟ ଭାଗରେ ବର୍ଣ୍ଣିତ ନୃତ୍ୟ, ସଙ୍ଗୀତ କାର୍ଯ୍ୟକ୍ରମ ଉପଭୋଗ କରିଛନ୍ତି । ଏଠାରେ ମଧ ଦୁଇ ପାର୍ଶ୍ୱରେ ପରିଚାରିକାମାନେ ଉପସ୍ଥିତ ଥିବା ଦେଖାଯାଏ । ନର୍ତ୍ତକୀ ଜଣକ ଭାବପୂର୍ଣ୍ଣ ଭଙ୍ଗୀରେ ଏକ ସୁନ୍ଦର କାଷ୍ଠ ମଞ୍ଚ ଉପରେ ନୃତ୍ୟ ପରିବେଷଣ କରୁଥିବାବେଳେ ବୋଧହୁଏ ବାଦ୍ୟଗୀତ ପରିବେଷଣ କରୁଥିବା ସମସ୍ତେ ନାରୀ ଅଟନ୍ତି । ଅନ୍ତିମ ଭାଗ ଦୃଶ୍ୟରେ ଏକ ବୃକ୍ଷ ନିକଟରେ କେତେକ ପରିଚାରିକା ଉପସ୍ଥିତ ଅଛନ୍ତି । ବୋଧହୁଏ ଏହା ଏକ ଉପବନର ଦୃଶ୍ୟ । ଏହି ମୂର୍ତ୍ତିଗୁଡ଼ିକ ହାତୀଗୁମ୍ଫା ଅଭିଲେଖରେ ବର୍ଣ୍ଣିତ ବିଷୟ ସହିତ ବହୁଭାବରେ ସମ୍ପର୍କିତ ।

ରାଣୀଗୁମ୍ଫାର ଉପର ମହଲା, ସମ୍ମୁଖ ଧାଡ଼ି ଗୁମ୍ଫାକାନ୍ଥରେ ନଅ ଭାଗରେ ବର୍ଣ୍ଣିତ ମୂର୍ତ୍ତିକଳା ରହିଛି । ଏହାର ସମ୍ମୁଖରେ ଛାତ ଓ ବାରଣ୍ଡା ଥିବାରୁ କୃତି ଗୁଡ଼ିକ ଅନେକାଂଶରେ ସୁରକ୍ଷିତ । ଏହାର ପ୍ରାରମ୍ଭରେ ଓ ଶେଷରେ ଉଡ୍‌ଡ୍ଡୀୟମାନ ବିଦ୍ୟାଧରଙ୍କ ମୂର୍ତ୍ତି ସ୍ଥାନିତ ହୋଇଥିବାରୁ ଏଗୁଡ଼ିକ ଏକ ଭିନ୍ନ ସମୟର ସ୍ୱତନ୍ତ୍ର ଘଟଣା ବୋଲି ପ୍ରତୀୟମାନ ହୁଏ । ପ୍ରଥମ ବିଦ୍ୟାଧର ପ୍ରତିମା ପରେ, ପ୍ରଥମ ଦୃଶ୍ୟଟି ହେଉଛି ଖାରବେଳ ତାଙ୍କ ପରିବାର ଓ ପାରିଷଦଙ୍କ ସହ ବନାଞ୍ଚଳ ଦେଇ ଯାତ୍ରା କରୁଥିବାବେଳେ ଏକ ପଦ୍ମ ପୁଷ୍କରିଣୀରେ ଜଳପାନ କରୁଥିବା ବଣ୍ୟ ହସ୍ତୀମାନଙ୍କ ସମ୍ମୁଖୀନ ହୋଇଛନ୍ତି । ସେହି ହସ୍ତୀମାନଙ୍କ ଆକ୍ରମଣରେ କେତେଜଣ ଆଘାତ ପ୍ରାପ୍ତ ହୋଇଥିବାବେଳେ ଖାରବେଳ ଓ ଅନ୍ୟମାନେ ହସ୍ତୀଙ୍କୁ ପ୍ରତିଆକ୍ରମଣ କରୁଛନ୍ତି । ଏହି ରୋମାଞ୍ଚକାରୀ ଘଟଣାଟି ନିଶ୍ଚିତ ଭାବେ ଏକ ସ୍ମରଣୀୟ ବିଷୟ ।

ଦ୍ୱିତୀୟ ଦୃଶ୍ୟରେ, କୌଣସି ଏକ ପ୍ରାସାଦ ଆକ୍ରମଣକରି ଜଣେ ନାରୀଙ୍କୁ ଅପହରଣ କରି ନେଉଥିବାବେଳେ ଉଭୟ ପକ୍ଷର ନାରୀ ଓ ପୁରୁଷଙ୍କ ମଧ୍ୟରେ ଯୁଦ୍ଧ ହେଉଛି । ଏହା ବ୍ୟତୀତ ପ୍ରାସାଦର ଜଣେ ବୃଦ୍ଧଙ୍କ ଠାରୁ ଏହି ଦୁଃଖଦ ଘଟଣା ଖାରବେଳଙ୍କ ପରିବାରର ଲୋକ ଶ୍ରବଣ କରୁଥିବା ମଧ ଦେଖାଯାଏ ।



ତୃତୀୟ ଦୃଶ୍ୟରେ ଖାରବେଳ ତାଙ୍କ ଅଶ୍ୱ ଓ ସୈନ୍ୟ ସାମନ୍ତଙ୍କ ସହ ବନରେ ପାରିଧି କରୁଥିବାବେଳେ ବୃକ୍ଷ ଉପରେ ଆଶ୍ରୟ ନେଇଥିବା ଜଣେ ନାରୀଙ୍କ ଦୁଃଖ ଶୁଣି ତାଙ୍କୁ ଅଭୟ ପ୍ରଦାନ କରୁଛନ୍ତି । ବୋଧହୁଏ ନାରୀ ଜଣକ ପୂର୍ବର ଅପହୃତା ଯେକି, ଶତ୍ରୁଠାରୁ ନିଜକୁ ମୁକ୍ତ କରି ବନମଧ୍ୟରେ ଆତ୍ମଗୋପନ କରିଥିଲେ ।

ଚତୁର୍ଥ ଦୃଶ୍ୟରେ, ନାରୀ ଜଣକୁ ରାଜପ୍ରସାଦକୁ ଅଣାଯିବା ପରେ ପରିଚାରିକାମାନେ ତାଙ୍କ ରୂପଚର୍ଯ୍ୟା କରୁଥିବାବେଳେ ସେଠାରେ ନୃତ୍ୟ, ସଙ୍ଗୀତ ସହ ଆନନ୍ଦ ଉତ୍ସବ ପାଳନ କରାଯାଉଛି । କୃତିଟି କେତେକାଂଶରେ ଭଗ୍ନ ହେଲେ ହେଁ ଏଠାରେ ଖାରବେଳଙ୍କ ଉପସ୍ଥିତିର ମଧ୍ୟ ସୂଚନା ମିଳେ ।

ବର୍ଣ୍ଣନାତ୍ମକ ମୂର୍ତ୍ତି କଳାର ପଞ୍ଚମ ଭାଗଟି ବହୁଭାବରେ ନଷ୍ଟ ହୋଇପଡ଼ିଥିବାରୁ ଏହାର ବିଷୟ ବସ୍ତୁ ଅନୁମାନ କରିବା ମଧ୍ୟ କଷ୍ଟସାଧ୍ୟ । ତେବେ ଷଷ୍ଠଭାଗ ଅନେକାଂଶରେ ନଷ୍ଟ ହୋଇପଡ଼ିଥିବା ସତ୍ତ୍ୱେ ଏଥିରେ ସ୍ତ୍ରୀ ପୁରୁଷଙ୍କ ତିନି ଯୁଗଳ ପ୍ରତିମାର ଆଭାସ ମିଳେ । ଏଗୁଡ଼ିକ ଖାରବେଳଙ୍କ ଅନ୍ତଃପୁର ଜୀବନ ଅର୍ଥାତ୍, କାମକ୍ରୀଡ଼ା ସମ୍ପର୍କିତ ମୂର୍ତ୍ତିଭଳି ମନେହୁଏ ।

ଅନ୍ତିମ ଦୃଶ୍ୟଟି ବହୁଭାବରେ ନଷ୍ଟ ହୋଇ ପଡ଼ିଥିବାବେଳେ ଏଥିରେ କେତେକ ବ୍ୟକ୍ତିଙ୍କ ସହିତ ଏକାଧିକ ହସ୍ତୀ, ମୟୂର ଇତ୍ୟାଦି ପଶୁ ପକ୍ଷୀଙ୍କ ମୂର୍ତ୍ତିର ଆଭାସ ମିଳେ । ବୋଧହୁଏ ଏହା ଖାରବେଳଙ୍କ ରାଜଧାନୀ ନିକଟସ୍ଥ ଏକ ଉପବନର ଦୃଶ୍ୟ । ଏହି ଭାଗ ପରେ ଏକ ଉଡ୍‌ଡ୍ଡୀୟମାନ ବିଦ୍ୟାଧରଙ୍କ ମୂର୍ତ୍ତି ସହିତ ଧାରାବାହିକ କୃତିଟିର ସମାପ୍ତି ଘଟିଛି ।

ରାଣୀଗୁମ୍ଫାର ଅନ୍ୟ ଭିନ୍ନ ପ୍ରକାର ବର୍ଣ୍ଣନାତ୍ମକ ମୂର୍ତ୍ତିକଳା ହେଉଛି ଦୁଇଟି ଉପବନ ବା ଉଦ୍ୟାନର ଦୃଶ୍ୟ । ଏହା ଗୁମ୍ଫା ତଳମହଲାରେ ଥିବା ଦୁଇ ପାର୍ଶ୍ୱ ପ୍ରହରୀ କୋଠରୀର କାନ୍ଥରେ ଉତ୍‌କୀର୍ଣ୍ଣ ହୋଇଛି । ଉଦ୍ୟାନର ଏହି ଦୃଶ୍ୟ ସହିତ ପ୍ରହରିମାନଙ୍କ ଏକକ ମୂର୍ତ୍ତି ମଧ୍ୟ ସ୍ଥାନିତ ହୋଇଛି । ତେବେ କୃତି ଦ୍ୱୟରେ ମୁଖ୍ୟତଃ ଉଦ୍ୟାନରେ ଥିବା ବିଭିନ୍ନ ବୃକ୍ଷ, ଲତା, ଫଳ, ପୁଷ୍ପ, ପଶୁ, ପକ୍ଷୀ, ପୁଷ୍କରିଣୀ ସମେତ ନାରୀ, ପୁରୁଷଙ୍କ ପ୍ରେମଭାବପୂର୍ଣ୍ଣ ବିଭିନ୍ନ ଭଙ୍ଗୀର ମୂର୍ତ୍ତି ଦେଖିବାକୁ ମିଳେ । ବୋଧହୁଏ ଏହା ଉଦ୍ୟାନରେ ଖାରବେଳଙ୍କ ଆମୋଦ ପ୍ରମୋଦର ଦୃଶ୍ୟ । ରଚନା ଦ୍ୱୟ ବର୍ଣ୍ଣନାତ୍ମକ ହୋଇଥିବାବେଳେ ମଣ୍ଡନଧର୍ମୀ ମଧ୍ୟ ।

ଉଦୟଗିରି ପାହାଡ଼ର କିଞ୍ଚିତ୍ ଉପରେ ଥିବା ଗଣେଶ ଗୁମ୍ଫାରେ ଅନ୍ୟ ଏକ ଅପହରଣ ଓ ଯୁଦ୍ଧର ଚିତ୍ର ରହିଛି ମିଳେ । ଏହା ଦୁଇ ଭାଗରେ ବିଭକ୍ତ । ପ୍ରଥମ ଦୃଶ୍ୟରେ କୌଣସି ଏକ ଗୃହ କିମ୍ବା ପ୍ରାସାଦକୁ ଆକ୍ରମଣ କରି, ତାହା ମଧ୍ୟରେ ଶୟନରତ ସ୍ୱାମୀଙ୍କ ସେବା କରୁଥିବା ଜଣେ ନାରୀକୁ ଅପହରଣ କରି ନେଉଥିବାବେଳେ ଦୁଇ ପକ୍ଷଙ୍କ ମଧ୍ୟରେ ଯୁଦ୍ଧ ହେଉଛି । ଏଥିରେ କେତେକ ନାରୀମଧ୍ୟ ଅସ୍ତ୍ର ଧାରଣ କରିଛନ୍ତି । ଦ୍ୱିତୀୟ ଭାଗରେ ଏହି ଅପହୃତାଙ୍କୁ ଅପହରଣକାରୀମାନେ ହସ୍ତୀ ଉପରେ ଘେନିଯାଉଥିବାବେଳେ ବିଦେଶୀ ପୋଷାକ ପିନ୍ଧିଥିବା କେତେକ ବ୍ୟକ୍ତି ସେମାନଙ୍କୁ ପଛରୁ ଅନୁଧାବନ ଓ ଆକ୍ରମଣ କରୁଛନ୍ତି । ଏତିକିବେଳେ ସୈନ୍ୟମାନଙ୍କ ଗତିରୋଧ କରିବା ନିମନ୍ତେ ହସ୍ତୀଉପରୁ ଧନ ଥଳିରୁ ମୁଦ୍ରା ଫିଙ୍ଗା ଯାଉଛି । ଏହାର ପରବର୍ତ୍ତୀ ପର୍ଯ୍ୟାୟରେ ନାରୀ ଜଣକୁ ହସ୍ତୀରୁ ଅବତରଣ କରାଯାଇଛି ଓ ସେ ଚିନ୍ତିତ ଅବସ୍ଥାରେ ଏକ ସ୍ଥାନରେ ବସିଛନ୍ତି ଓ କେତେକ ନାରୀ ଓ ପୁରୁଷ ତାଙ୍କୁ ଆଶ୍ୱାସନା ଦେଉଛନ୍ତି । ଏଠାରେ ଖାରବେଳଙ୍କ ଉପସ୍ଥିତିର ମଧ୍ୟ ସୂଚନା ମିଳେ । ବୋଧହୁଏ ଏହା ଖାରବେଳଙ୍କ ଜୀବନର ଅନ୍ୟ ଏକ ସ୍ମରଣୀୟ ଘଟଣା । ରାଣୀଗୁମ୍ଫାର ମୂର୍ତ୍ତିକଳା ଠାରୁ ଗଣେଶ ଗୁମ୍ଫାର ଏହି ମୂର୍ତ୍ତିକଳା କ୍ଷୁଦ୍ର ଓ କଳାଶୈଳୀ ଦୁର୍ବଳ । ଏହା ବ୍ୟତୀତ ପ୍ରଥମ ଭାଗ ମୂର୍ତ୍ତିଗୁଡ଼ିକର ଉପସ୍ଥାପନା ସରଳ ଓ ଦ୍ୱିତୀୟ ଭାଗ ବହୁମୂର୍ତ୍ତି ଦ୍ୱାରା ଗହଳ । ଏଣୁ, ଏଗୁଡ଼ିକ କିଞ୍ଚିତ୍ ପରବର୍ତ୍ତୀ ସମୟରେ ଭିନ୍ନ ଭିନ୍ନ ଶିଳ୍ପୀ ଗୋଷ୍ଠୀ ଦ୍ୱାରା ଉତ୍କୀର୍ଣ୍ଣ କରାଯାଇଥିବା ସମ୍ଭବ ।

ରାଣୀଗୁମ୍ଫା ଭଳି ବିଶାଳ ନହେଲେହେଁ, ମଞ୍ଚପୁରୀ ଗୁମ୍ଫାଟି ମଧ୍ୟ ଦୁଇମହଲା ବିଶିଷ୍ଟ । ଏଥିରେ ଥିବା ଏକ ମାତ୍ର ବର୍ଣ୍ଣନାତ୍ମକ ଦୃଶ୍ୟରେ ଖାରବେଳ ତାଙ୍କ ପରିବାର ସହିତ ଜିନାସନ ପୂଜାର୍ଚ୍ଚନା କରିବା ନିମନ୍ତେ ହସ୍ତୀ ଉପରେ ଆସି ଉଭା ହୋଇଛନ୍ତି । ଏଠାରେ ହସ୍ତୀଟି ଦଣ୍ଡାୟମାନ ହୋଇଥିବାବେଳେ ଏହି ଅବସରର ପବିତ୍ରତା ଦର୍ଶାଇବା ନିମନ୍ତେ ଆକାଶରେ ସତ୍ୟ ଓ ଧର୍ମର ପ୍ରତୀକ ସୂର୍ଯ୍ୟଙ୍କ ଚିତ୍ର ସହିତ ଦୁଇଜଣ ଗଣ ଏକ ବିଶାଳ ଘଣ୍ଟା ସହିତ ଓ ଜଣେ ବିଦ୍ୟାଧର ପୁଷ୍ପମାଳା ସହିତ ଉଡ୍ଡୀୟମାନ ଅବସ୍ଥାରେ ରହିଛନ୍ତି । କୃତିଟି ଅନେକାଂଶରେ ଭଗ୍ନ ଯୋଗୁଁ ଅସ୍ପଷ୍ଟ । ସେହିପରି, ଗୁମ୍ଫାର ସମ୍ମୁଖ ଭାଗରେ ଥିବା ବହୁ ମୂର୍ତ୍ତିକଳା ସମ୍ପୂର୍ଣ୍ଣ ନଷ୍ଟ ହୋଇପଡ଼ିଥିବାବେଳେ ଏହାର ସାମାନ୍ୟ ଆଭାସ ମାତ୍ର ରହିଛି ।

ଜୟ ବିଜୟ ନାମକ ଛୋଟ ଗୁମ୍ଫାଟିରେ ଖାରବେଳ ତାଙ୍କ ରାଣୀଙ୍କ ସହିତ କଳ୍ପବୃକ୍ଷ ପୂଜା କରୁଥିବା ଦୃଶ୍ୟ ଦେଖିବାକୁ ମିଳେ । ଏଠାରେ ତାଙ୍କ ଦୁଇ ପାର୍ଶ୍ୱରେ ପରିଚାରିକାମାନେ ପୂଜାସାମଗ୍ରୀ ଧାରଣ କରି ଉଭା ହୋଇଛନ୍ତି । ଏହି ମୁଖ୍ୟ ଦୃଶ୍ୟର ଦୁଇ ପାର୍ଶ୍ୱରେ ପୂଜାପୁଷ୍ପ ଧାରଣ କରି ଦୁଇଜଣ ଗଣ ଦ୍ରୁତ ବେଗରେ ଆସୁଥିବା ଦେଖାଯାଏ ।

ଏକକ ମୂର୍ତ୍ତି ମଧ୍ୟରେ କେତେକ ଗୁମ୍ଫାର ପ୍ରବେଶ ଦ୍ୱାର ଦୁଇ ପାର୍ଶ୍ୱ ଖମ୍ବରେ ଥିବା ଦ୍ୱାରପାଳ, ଓ କେତେକ ରାଜକର୍ମଚାରୀଙ୍କ ମନୁଷ୍ୟ ଉଚ୍ଚତାର ମୂର୍ତ୍ତିଗୁଡ଼ିକ ପ୍ରମୁଖ । ବିଭିନ୍ନ ବେଶଭୂଷାରେ ଥିବା ଏହି କୃତିମଧ୍ୟରେ ବିଦେଶୀ ପୋଷାକ ପରିଧାନ କରିଥିବା କେତେକ ମୂର୍ତ୍ତିମଧ୍ୟ ରହିଛି । ଏଥିରୁ ପ୍ରତୀୟମାନ ହୁଏ ଯେ ଖାରବେଳଙ୍କ ନିକଟରେ କେତେକ ବିଦେଶୀ କର୍ମଚାରୀ ମଧ୍ୟ ରହିଥିଲେ । ଛୋଟ ଛୋଟ ଏକକ ମୂର୍ତ୍ତିଗୁଡ଼ିକ ସାଧାରଣତଃ ଖମ୍ବର ଉପର ଭାଗ ଓ ବନ୍ଧ ନିବା ବ୍ରାକେଟ୍ ମାନଙ୍କରେ ଦେଖିବାକୁ ମିଳେ । ଏଗୁଡ଼ିକ ସାଧାରଣତଃ ପରିଚାରିକା, ପରିଚାରକ, ନର୍ତ୍ତକୀ ଓ ଅନ୍ୟ କେତେକ କୃତି ।

ରାଣୀ ଗୁମ୍ଫାର ତଳ ଓ ଉପର ମହଲାରେ ଏକାଧିକ ଦ୍ୱାରପାଳଙ୍କ ମୂର୍ତ୍ତି ଉତ୍କୀର୍ଣ୍ଣ ହୋଇଛି । ଏହା ମଧ୍ୟରୁ ତଳ ମହଲାର ଏକ ଦ୍ୱାରପାଳ ହସ୍ତରେ ଦଣ୍ଡ ଓ ରଜ୍ଜୁ ଧାରଣ କରିଥିବା ଦେଖାଯାଏ । ଉପର ଦୁଇ ପାର୍ଶ୍ୱରେ ଥିବା ଦୁଇ ଦ୍ୱାର ପାଳ ଏକ, ଏକ ବିଶାଳ ପଶୁ ସହିତ ଉଭା ହୋଇଛନ୍ତି । ଭଗ୍ନ ଓ ଅବକ୍ଷୟରୁ ପଶୁମାନଙ୍କ ସ୍ୱରୂପ ଜାଣିବା କଷ୍ଟସାଧ ହେଲେହେଁ ଏଗୁଡ଼ିକ ବୃଷଭ କିମ୍ବା ସିଂହ ହୋଇଥିବା ସମ୍ଭବ । ଉପର ମହଲାର ଏକ ରଚନାରେ ସଂଭ୍ରାନ୍ତ ପୋଷାକ ପରିଧାନ କରି, ଗାମ୍ଭୀର୍ଯ୍ୟପୂର୍ଣ୍ଣ ଭଙ୍ଗୀରେ ଦଣ୍ଡାୟମାନ ହୋଇଥିବା ମୂର୍ତ୍ତିଟି ଜଣେ ବିଦେଶୀ ରାଜଦୂତଙ୍କର ହୋଇଥିବା ସମ୍ଭବ । ମଞ୍ଚପୁରୀ ଗୁମ୍ଫାରେ ମଧ ଅବକ୍ଷୟ ଅବସ୍ଥାରେ କେତୋଟି ଦ୍ୱାରପାଳ ମୂର୍ତ୍ତି ରହିଛି । ଜୟବିଜୟ ଗୁମ୍ଫାର ଗୋଟିଏ ପାର୍ଶ୍ୱରେ କମନୀୟ ଭଙ୍ଗୀରେ ଏକ ନାରୀ ମୂର୍ତ୍ତି ଦେଖିବାକୁ ମିଳେ । କୌଣସି ଜନଜାତିର ନାରୀ ଜଣକ ଦକ୍ଷିଣ ହସ୍ତରେ ଧାରଣ କରିଥିବା ଶୁକ ଶାବକଟିକୁ କାନ୍ଧ ନିକଟରେ ରଖିଥିବାବେଳେ ବାମ ହସ୍ତରେ ଧାରଣ କରିଥିବା ନିଜ କୌପୁନି ଖଣ୍ଡକ ଦକ୍ଷିଣ କଟି ଉପରେ ରଖିଛି । ଉଲଗ୍ନ ପ୍ରତିମାଟିର ଊର୍ଦ୍ଧ୍ୱମୁଦ୍ରାରେ ଏକ ଛୋଟ ପତ୍ରପୁଷ୍ପଯୁକ୍ତ ଡାଳ, ବାହୁ, ହସ୍ତ ଓ କଟିରେ ସ୍ୱଳ୍ପ ଅଳଙ୍କାର ଥିବା ଦେଖାଯାଏ । ମୂର୍ତ୍ତି ପ୍ରଚ୍ଛଦର ଉପର ଦକ୍ଷିଣ କୋଣରେ ନାରୀ ଜଣଙ୍କ ବୃକ୍ଷରେ ଚଢ଼ି ଶୁକ ଶାବକଟିକୁ ଧରୁଥିବା ଦୃଶ୍ୟ ସଂକ୍ଷେପରେ ଦର୍ଶାଯାଇଛି । ରଚନାଟିର ପରିକଳ୍ପନା ଓ ଉପସ୍ଥାପନା ଅତ୍ୟନ୍ତ କଳାତ୍ମକ ।





ଉଦୟଗିରି, ଗଣେଶ ଗୁମ୍ଫାର
ଦ୍ୱାରପାଳିକା ଓ ଏକ ପରିଚାରକଙ୍କ ମୂର୍ତ୍ତି

ଛୋଟ, ଛୋଟ ଏକକ ପ୍ରତିମା ମଧ୍ୟରେ ବିଭିନ୍ନ ଭାବ ଭଙ୍ଗୀର ପରିଚାରକ, ପରିଚାରିକା, ମଞ୍ଚପୁରୀ ଗୁମ୍ଫା ଓ ଗଣେଶ ଗୁମ୍ଫାରେ ଅଧିକ ସଂଖ୍ୟାରେ ଦେଖିବାକୁମିଳେ । ତତ୍ୱା ଗୁମ୍ଫାରେ ନର୍ତ୍ତକୀ, ନର୍ତ୍ତକଙ୍କ ଏକ ଯୁଗଳ ପ୍ରତିମା ରହିଥିବାବେଳେ ଅନନ୍ତଗୁମ୍ଫାରେ ବିଦେଶୀ ପୋଷାକରେ ସୁସଜ୍ଜିତା ଜଣେ ବିଦେଶୀ ନର୍ତ୍ତକୀଙ୍କ ପିତୁଳା ରହିଛି । ସ୍ୱଦେଶୀ ପୋଷାକରେ ଜଣେ ବିଦ୍ୟାଧରଙ୍କ ମୂର୍ତ୍ତି ଅନନ୍ତ ଗୁମ୍ଫାରେ ରହିଥିବାବେଳେ ବିଦେଶୀ ପୋଷାକ ପରିଧାନ କରିଥିବା ପକ୍ଷଯୁକ୍ତ ଏକ ବିଦ୍ୟାଧରଙ୍କ ମୂର୍ତ୍ତି ପାତାଳପୁରୀ ଗୁମ୍ଫାରେ ରହିଛି । ତତ୍ୱାଗୁମ୍ଫାରେ ଜଣେ ବିଦେଶୀ ଅଶ୍ୱାରୋହୀ ଓ ମଞ୍ଚପୁରୀ ଗୁମ୍ଫାରେ ଜଣେ ସ୍ୱଦେଶୀ ଅଶ୍ୱାରୋହୀ ମୂର୍ତ୍ତି ଉତ୍କୀର୍ଣ୍ଣ ହୋଇଛି । ଏହିପରି କେତେକ ଗୁମ୍ଫାରେ ବିଭିନ୍ନ ପ୍ରକାର ପଶୁ , ପକ୍ଷୀ ଓ ପୌରାଣିକ ପ୍ରାଣୀଙ୍କ ମୂର୍ତ୍ତି ଦେଖିବାକୁ ମିଳେ । ଏହା ବ୍ୟତୀତ ମଣ୍ଡନକୃତି ସହିତ ବହୁତ ମୂର୍ତ୍ତି ରହିଛି । ତେବେ ଏହା ମଧ୍ୟରେ ଭାରତୀୟ ଧର୍ମଧାରଣାରେ ମହତ୍ତ୍ୱ ସ୍ଥାନ ଅଧିକାର କରିଥିବା ସୂର୍ଯ୍ୟ ଓ ଲକ୍ଷ୍ମୀଙ୍କ ପ୍ରତିମା ସମେତ ବୃକ୍ଷ ପୂଜାର ଦୃଶ୍ୟ ଅନନ୍ତ ଗୁମ୍ଫାରେ



ସମ୍ରାଟ ଖାରବେଳ ( ? )
ଖଣ୍ଡଗିରି, ଉଦୟଗିରିରୁ ସଂଗୃହୀତ ମୂର୍ତ୍ତି
ଫିଲାଡ୍ଲେଲ୍‌ଫିଆ ସଂଗ୍ରହାଳୟ



ଖଣ୍ଡଗିରି ଉଦୟଗିରିରୁ ସଂଗୃହୀତ
ଜଣେ ରାଜକୁମାରୀଙ୍କ ମୂର୍ତ୍ତି ( ? )
କେନ୍ଦ୍ର ପତ୍ନତତ୍ତ୍ୱ ବିଭାଗ

ଖଣ୍ଡଗିରି, ଉଦୟଗିରି ଗୁମ୍ଫାର ଜୈନ ଦେବଦେବୀ ମୂର୍ତ୍ତି ବ୍ୟତୀତ ଏଠାର ଅନ୍ୟ କୃତିଗୁଡ଼ିକ ଖାରବେଳଙ୍କ ସମୟର ଅଟେ। ତେବେ, ଅଳ୍ପ କେତେକ ଗୁମ୍ଫାର ମଣ୍ଡନକୃତି କିଞ୍ଚିତ୍ ପରବର୍ତ୍ତୀ ସମୟରେ ଉତ୍କୀର୍ଣ୍ଣ ହୋଇଥିବା ଜଣାଯାଏ। ପ୍ରଥମ ପର୍ଯ୍ୟାୟ, ଏହି ମୂର୍ତ୍ତିଗୁଡ଼ିକର ରଚନା ଓ ଉପସ୍ଥାପନା ବଳିଷ୍ଠ ଅର୍ଥାତ୍, ଉଚ୍ଚକୋଟୀର କଳାଶୈଳୀର ଅଟେ। ପ୍ରତ୍ୟେକ ମୂର୍ତ୍ତିର ଭାବଭଙ୍ଗୀ କ୍ରିୟାଶୀଳ। ଅନ୍ୟ ଭାବରେ କହିବାକୁଗଲେ ଜୀବନ୍ତ ସଦୃଶ। ମୂର୍ତ୍ତିଗୁଡ଼ିକର କେଶବିନ୍ୟାସ ଓ ବେଶପୋଷାକ ବିଚିତ୍ର ଓ ବହୁବିଧ। ଏହି ପ୍ରକାର ବେଶ ପୋଷାକ ଓ କ୍ରିୟାଶୀଳ ପ୍ରତିମା ଓଡ଼ିଶାର ପ୍ରାଚୀନ ମନ୍ଦିର ଗାତ୍ରରେ ମଧ୍ୟ ଦେଖିବାକୁ ମିଳେନାହିଁ। ଅର୍ଥାତ୍, ଖାରବେଳଙ୍କ ସମୟରେ ଏହି ପ୍ରକାର ମୂର୍ତ୍ତିକଳାର ପୂର୍ବାପର ଧାରା ଓଡ଼ିଶାର କୌଣସି ସ୍ଥାନରେ ଦେଖାଯାଏ ନାହିଁ। ଏହି ବଳିଷ୍ଠ କଳାଶୈଳୀର ହଠାତ୍ ଆର୍ବିଭାବ ଓ ବିଲୟ କୌଣସି ସମୟରେ ସମ୍ଭବ ନୁହେଁ। ତେବେ, ଆନ୍ଧ୍ରପ୍ରଦେଶର ନାଗାର୍ଜ୍ଜୁନ କୋଣ୍ଡା, ଅମରାବତୀ ଓ ଜାଗେୟାପେଟାର ମୂର୍ତ୍ତିକଳା ଖଣ୍ଡଗିରି, ଉଦୟଗିରି ଗୁମ୍ଫାର ମୂର୍ତ୍ତିକଳା ସହିତ ବହୁଭାବରେ ସମତା ରକ୍ଷାକରେ। ଏଥିରୁ ଅନୁମେୟ ଯେ, ଏହି ଗୁମ୍ଫାଗୁଡ଼ିକର ମୂର୍ତ୍ତିକଳା ଉତ୍କୀର୍ଣ୍ଣ ନିମନ୍ତେ ମୁଖ୍ୟତଃ ଦକ୍ଷିଣଭାରତୀୟ ଶିଳ୍ପୀମାନଙ୍କୁ ନିଯୋଜିତ କରାଯାଇଥିଲା, ତେବେ, ଗୁମ୍ଫା ସ୍ଥାପତ୍ୟ ଖୋଦନ ସ୍ଥାନୀୟ ଶିଳ୍ପୀମାନଙ୍କ କାର୍ଯ୍ୟ।



# ଓଡ଼ିଶାରେ ବ୍ରାହ୍ମଣ୍ୟ ମୂର୍ତ୍ତିକଳାର ପ୍ରାରମ୍ଭ

**ଖା**ରବେଳଙ୍କ ଅନ୍ତେ ପ୍ରାୟ ପାଞ୍ଚଶହ ବର୍ଷ କଳିଙ୍ଗ ବା ଓଡ଼ିଶାର ସାଂସ୍କୃତିକ ଇତିହାସ ଅସ୍ପଷ୍ଟ। ଏହି ସମୟରେ କେତେକ ଛୋଟ ଛୋଟ ଶାସକ ଦେବାୟତନମାନ ନିର୍ମାଣ କରିଥିବା ସେମାନଙ୍କ ତାମ୍ରପତ୍ର ଦାନମାନଙ୍କରୁ ଜାଣିବାକୁ ମିଳେ। ତେବେ, ଏହି ସମୟର ମନ୍ଦିର ଓ ଦେବଦେବୀ ପ୍ରତିମାଗୁଡ଼ିକ ଦୃଷ୍ଟି ଆର୍କଷଣୀୟ ହୋଇନଥିବାରୁ ଗୌଣ ହୋଇପଡ଼ିଛି କହିଲେ ଭୁଲ୍ ହେବନାହିଁ। ଓଡ଼ିଶାର ପ୍ରାଚୀନ ତୀର୍ଥସ୍ଥାନ ଯଥା: ଭୁବନେଶ୍ୱର, ବଙ୍କାଡ, ଯାଜପୁର, ମହେନ୍ଦ୍ରଗିରି ଭଳି କେତେକ ସ୍ଥାନରେ ଅବହେଳିତ ଅବସ୍ଥାରେ ପଡ଼ିରହିଥିବା କଳାକୃତି ଓ ରାଜ୍ୟ ସଂଗ୍ରହାଳୟ ଦ୍ୱାରା ସଂଗୃହୀତ କେତେକ ମୂର୍ତ୍ତିର ଅପରିପକ୍ୱ କଳା ଶୈଳୀକୁ ଅନୁଶୀଳନକରି କୁହାଯାଇପାରେ ଯେ, ଏଗୁଡ଼ିକ ଅତି ପ୍ରାଚୀନ ଅର୍ଥାତ୍, ଖାରବେଳଙ୍କ ପରବର୍ତ୍ତୀ ସମୟର କୃତି। ଏହା ମଧ୍ୟରେ ବିଭିନ୍ନ ଆକାର ପ୍ରକାରର ଶିବଲିଙ୍ଗ, ପୂର୍ବର ଲୋକଦେବତା, ଯକ୍ଷ ଓ ନାଗନାଗୀଙ୍କ କିଞ୍ଚିତ୍ ବିକଶିତ ମୂର୍ତ୍ତି ଏବଂ ଅଳ୍ପ କେତେକ ବ୍ରାହ୍ମଣ୍ୟ ଦେବଦେବୀ ମୂର୍ତ୍ତି ଅନ୍ତର୍ଭୁକ୍ତ। ପୂର୍ବେ ଏହି ପ୍ରତିମାଗୁଡ଼ିକ ସାଧାରଣତଃ ବୃକ୍ଷମୂଳେ କିମ୍ବା ଅପରିପକ୍ୱ ଶୈଳୀରେ ନିର୍ମିତ ମନ୍ଦିରମାନଙ୍କରେ ସ୍ଥାପିତ ହୋଇଥିଲା। ଏଣୁ ଏଗୁଡ଼ିକର କଳାଶୈଳୀ ଓ ଅବକ୍ଷୟ ମଧ୍ୟ ପରୀକ୍ଷଣୀୟ। ଏହା ବ୍ୟତୀତ ସେସମୟର କେତେକ ମନ୍ଦିରର ଭଗ୍ନାଂଶ ଓ ମୂର୍ତ୍ତି ପରବର୍ତ୍ତୀ ସମୟର ମନ୍ଦିରମାନଙ୍କରେ ବ୍ୟବହୃତ ହୋଇଥିବା ଦେଖାଯାଏ।

ପୂର୍ବର ଲୋକଦେବତା ଯକ୍ଷ ଓ ନାଗପୂଜା ଏହି ସମୟରେ ମଧ୍ୟ ପ୍ରଚଳନ ଥିଲା। କିନ୍ତୁ, ମୂର୍ତ୍ତିଗୁଡ଼ିକର କଳାଶୈଳୀରେ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଘଟିଥିଲା। ପ୍ରଥମ ପ୍ରର୍ଯ୍ୟାୟ ମୂର୍ତ୍ତିଗୁଡ଼ିକର ନିର୍ମାଣ ଧାରାରେ ଲୌକିକତା ରହିଥିବାବେଳେ ଏହି ସମୟର କୃତିଗୁଡ଼ିକ ଶାସ୍ତ୍ରୀୟ ବର୍ଣ୍ଣନା ଦ୍ୱାରା ପ୍ରଭାବିତ। ଭୁବନେଶ୍ୱର, ବଙ୍କାଡ଼ ଓ ଯାଜପୁର ଭଳି କେତେକ ସ୍ଥାନରୁ ପ୍ରାପ୍ତ ଏହି ପ୍ରକାର ମନୁଷ୍ୟାକୃତି ନାଗ ପ୍ରତିମାଗୁଡ଼ିକର କେବଳ କଟିଠାରୁ ଉର୍ଦ୍ଧ୍ୱକୁ ନିର୍ମିତ ହୋଇଥିବା ଦେଖାଯାଏ। ଚତୁଃପାର୍ଶ୍ୱ ଦୃଶ୍ୟ ସମ୍ବଳିତ କୃତିଗୁଡ଼ିକର ପରୀକ୍ଷା ନିରୀକ୍ଷା ଦ୍ୱାରା ଜଣାଯାଏ ଯେ, ଏଗୁଡ଼ିକ କୌଣସି ମନ୍ଦିର କିମ୍ବା

ବୌଦ୍ଧ ସ୍ଥାପତ୍ୟର ଅଂଶ ନୁହେଁ; ବରଂ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ପୂଜିତ ପ୍ରତିମା । କାରଣ, ଓଡ଼ିଶାର କେତେକ ପୂର୍ବତନ ଐତିହାସିକ, ଏଗୁଡ଼ିକ କୌଣସି ବୌଦ୍ଧସ୍ଥାପତ୍ୟର ଅଙ୍ଗବୋଲି ଅନୁମାନ କରିଛନ୍ତି । ମୂର୍ତ୍ତିଗୁଡ଼ିକର କଟି ନିକଟ, ସମାପ୍ତି ଅଂଶ ନିକଟରେ ଏକ ଖ୍ୱଲାଣ ରହିଥିବାରୁ ଏଗୁଡ଼ିକ ଖୋପଥିବା ପଥର ଚଟାଣ ବା ଏକ ପୀଠ ଉପରେ ସ୍ଥାନିତ ହୋଇଥିବା ସୂଚନାମିଳେ । କେତେକ ମୂର୍ତ୍ତିରେ ଖ୍ୱଲାଣ ପରିବର୍ତ୍ତେ ଏକ ମୂଳପୀଠ ମଧ୍ୟ ଦେଖାଯାଏ । ଭୁବନେଶ୍ୱରର ସୁବର୍ଣ୍ଣଜଳେଶ୍ୱର ମନ୍ଦିର ନିକଟରେ ଥିବା ନାଗରାଜଙ୍କ ଏକ ଆବକ୍ଷ ପ୍ରତିମାର ଉଚ୍ଚତା ପ୍ରାୟ ୧.୧୦ମିଟର ଅଟେ । ମୁକ୍ତେଶ୍ୱର ମନ୍ଦିର ପରିସରରେ ଥିବା ସମାନ୍ୟ ଭିନ୍ନ ଶୈଳୀର ଅନ୍ୟଏକ ପ୍ରତିମାର ଉଚ୍ଚତା ଏହାଠାରୁ ସମାନ୍ୟ ଅଧିକ । ଏହି ମୂର୍ତ୍ତି ଦ୍ୱୟର ମସ୍ତକ ଉପରେ ନାଗର ପ୍ରସାରିତ ସପ୍ତଫଣା ରହିଥିବାବେଳେ ସେମାନେ ନିଜନିଜ ବକ୍ଷ ନିକଟରେ ଦୁଇ ହସ୍ତରେ ଗୋଟିଏ ଗୋଟିଏ ଅମୃତକଳସ ଧାରଣ କରିଛନ୍ତି । ଏମାନେ ମସ୍ତକରେ ଜଟାମୁକୁଟ, ଅଳକା ଏବଂ ଦେହରେ ସୁନ୍ଦର ବସ୍ତ୍ରାଳଙ୍କାର ଓ ଯଜ୍ଞୋପବୀତ ପରିଧାନ କରିଥିବା ଦେଖାଯାଏ ।



ଭୁବନେଶ୍ୱର, ସୁବର୍ଣ୍ଣେଜଳେଶ୍ୱର ମନ୍ଦିର ପରିସରରେ ଥିବା ନାଗରାଜ ମୂର୍ତ୍ତି



ବାଣପୁର ନିକଟ ବଙ୍କାଦ୍ରର ଯକ୍ଷ ମୂର୍ତ୍ତି

ବାଣପୁର ନିକଟ ବଙ୍କାଡର ଶିବମନ୍ଦିର ପରିସରରେ ଥିବା ଉପରୋକ୍ତ ପ୍ରକାରର ଦୁଇ ମୂର୍ତ୍ତି ମଧ୍ୟରୁ ଗୋଟିଏ ପ୍ରତିମାର ମସ୍ତକ ଉପରେ ସର୍ପଫଣା ନଥିବାରୁ ଏହା ତତ୍‌କାଳୀନ ଏକ ଯକ୍ଷ ଦେବତାଙ୍କ ମୂର୍ତ୍ତିବୋଲି ବିଶ୍ୱାସ କରାଯାଏ । ଅତି ପ୍ରାଚୀନ ଯକ୍ଷ ମୂର୍ତ୍ତିର ମସ୍ତକ ଉପରେ ନିଧିପାତ୍ର ଦେଖାଯାଉଥିବାବେଳେ ଏଠାରେ ନିଧିପାତ୍ରଟି ସେ ଦୁଇ ହସ୍ତରେ, ବକ୍ଷ ନିକଟରେ ଧାରଣ କରିଛନ୍ତି । ଅନ୍ୟ ଆବକ୍ଷ ନାଗରାଜ ପ୍ରତିମାଟି ଅବକ୍ଷୟ ଦ୍ୱାରା ଅସ୍ପଷ୍ଟ ହୋଇପଡ଼ିଛି । ଏହାର କିଞ୍ଚିତ ପରିବର୍ତ୍ତୀ ସମୟର ଏକ ନାଗମାତା-ମନସା ମୂର୍ତ୍ତି ରାଜ୍ୟ ସଂଗ୍ରହାଳୟରେ ରହିଛି । ଏଥିରେ ଦେବୀଙ୍କ ସମ୍ପୂର୍ଣ୍ଣ ଅବୟବ ଦେଖିବାକୁ ମିଳେ । ଯୋଗାସନରେ ବସିଥିବାବେଳେ ଦେବୀ ଅମୃତକଳସଟି ଦୁଇ ହସ୍ତରେ ବକ୍ଷ ନିକଟରେ ଧାରଣ କରିଛନ୍ତି । ଏବଂ ତାଙ୍କ ମସ୍ତକ ଉପରେ ନାଗର ପ୍ରସାରିତ ସପ୍ତଫଣା ରହିଛି ।



ପ୍ରାଚୀନ ନାଗମାତା-ମନସା ମୂର୍ତ୍ତି

ଏହି ମୂର୍ତ୍ତିଟି କଳାମୁଗୁନି ପଥରରେ ନିର୍ମିତ। ଏହି ସମୟର ବ୍ରାହ୍ମଣ୍ୟ ଦେବତା ମୂର୍ତ୍ତି ମଧ୍ୟରେ ବିଭିନ୍ନ ଆକାର ପ୍ରକାରର ଶିବଲିଙ୍ଗ ଓ ଶିବଙ୍କ ମୁଖଯୁକ୍ତ ଲିଙ୍ଗମୂର୍ତ୍ତିଗୁଡ଼ିକ ଉଲ୍ଲେଖଯୋଗ୍ୟ। ଏହା ବ୍ୟତୀତ 'ଶତଏକଲିଙ୍ଗ' ଓ 'ସହସ୍ରଲିଙ୍ଗ' ପ୍ରତୀକଗୁଡ଼ିକ ମଧ୍ୟ ପ୍ରଚଳନ ଥିଲା। ଏହି ପ୍ରକାର ପ୍ରାଚୀନ କୃତିର ପ୍ରତ୍ନାବଶେଷ କେଦାରଗୌରୀ ମନ୍ଦିର ପରିସର, ଭବନୀଶଙ୍କର ମନ୍ଦିରପାଖ, ଲିଙ୍ଗରାଜ ମନ୍ଦିର ବେଢ଼ାସମେତ ଅନ୍ୟକେତକ ସ୍ଥାନରେ ଦେଖିବାକୁମିଳେ। ବାଣପୁର ନିକଟସ୍ଥ ବଙ୍କାଡ଼ ଯାଜପୁର ଓ ଖିଚିଂ ଅଞ୍ଚଳରୁ ମଧ୍ୟ ଏହି ପ୍ରକାର ପ୍ରାଚୀନ କୃତି ପ୍ରାପ୍ତ ହୋଇଛି।

ଉପରୋକ୍ତ କୃତି ବ୍ୟତୀତ ପ୍ରଥମ ପର୍ଯ୍ୟାୟରେ ଶୈବଦେବଦେବୀଙ୍କ ପ୍ରତିମାହିଁ ନିର୍ମିତ ହୋଇଥିବା ଜଣାଯାଏ। ଏହି ସମୟର କେତେକ ଗଣେଶ, କାର୍ତ୍ତିକେୟ ଓ ପାର୍ବତୀ ପ୍ରତିମା ଭୁବନେଶ୍ୱରର ବିନ୍ଦୁସାଗର ପଶ୍ଚିମ ପାର୍ଶ୍ୱରେ, ଲିଙ୍ଗରାଜ ମନ୍ଦିର, ଭବାନୀଶଙ୍କର ମନ୍ଦିର, କେଦାରଗୌରୀ ଓ ପାପନାଶିନୀ ମନ୍ଦିର ବେଢ଼ାରେ ଦେଖିବାକୁ ମିଳେ। କେନ୍ଦୁଝର ଜିଲ୍ଲା, ଅସନପାଟଠାରୁ ପ୍ରାପ୍ତ ଅଭିଲେଖଯୁକ୍ତ ଏକ ନଟରାଜ ମୂର୍ତ୍ତି ଖ୍ରୀ:୪ର୍ଥ ଶତାବ୍ଦୀର ବୋଲି ଜଣାଯାଏ। ଏହା ବର୍ତ୍ତମାନ ରାଜ୍ୟ ସଂଗ୍ରହାଳୟରେ ରହିଛି। ରାଜ୍ୟ ସଂଗ୍ରହାଳୟରେ ଥିବା ଏହି ସମୟର ଶିବ ଓ ଭୈରବଙ୍କ ତିନି ଆବକ୍ଷ ପ୍ରତିମା, ଏକ ବ୍ରହ୍ମାମୂର୍ତ୍ତି, କାର୍ତ୍ତିକେୟ,ଗଣେଶ ଓ ଦୁର୍ଗା ପ୍ରତିମା ମଧ୍ୟ ଉଲ୍ଲେଖ୍ୟଯୋଗ୍ୟ। ଏହା ବ୍ୟତୀତ ଭୁବନେଶ୍ୱରର ବିନ୍ଦୁସାଗର କୂଳରୁ ଶିବ ଓ ବିଷ୍ଣୁଙ୍କ ପ୍ରତୀକଥିବା ପୂଜିତ ସ୍ତମ୍ଭ ଓ ଏକ ପ୍ରାଚୀନ ବାସୁଦେବ ପ୍ରତିମା ପ୍ରାପ୍ତ ହୋଇଥିଲା। ଏହି ପୁସ୍ତକରେ ବିଭିନ୍ନ ଦେବଦେବୀଙ୍କ ପର୍ଯ୍ୟାୟକ୍ରମ ବିବରଣୀରେ ଏଗୁଡ଼ିକର ସୂଚନା ଦିଆଯାଇଛି।



ଭୁବନେଶ୍ୱରରୁ ପ୍ରାପ୍ତ କେତୋଟି ପ୍ରାଚୀନ 'ଶିବ-ଭୈରବ' ପ୍ରତିମା
(ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର)

# ମନ୍ଦିରଗାତ୍ରରେ ମୂର୍ତ୍ତିକଳାର ବିକାଶ

ମୂର୍ତ୍ତିକଳାର ବିକାଶରେ ମନ୍ଦିରର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ। ଶିବମନ୍ଦିରମାନଙ୍କରେ ମୁଖ୍ୟ ଦେଉଳର ଗର୍ଭଗୃହରେ ଶକ୍ତିଚକ୍ର ବା ଅର୍ଘପଟ୍ଟଯୁକ୍ତ ଶିବଲିଙ୍ଗ ସ୍ଥାପିତ ହୋଇଥିବାବେଳେ ଦେଉଳ ବାହାର ବାଡ଼ର ତିନି ରାହାପାଗରେ ଶିବଙ୍କ ପରିବାରର ଅନ୍ୟ ଦେବଦେବୀଙ୍କ ପ୍ରତିମା ପାର୍ଶ୍ୱଦେବତା ଭାବେ ସ୍ଥାନିତ ହୋଇଥାଏ। ଏଥିରେ ସାଧାରଣତଃ ଦେଉଳର ଦକ୍ଷିଣପାର୍ଶ୍ୱରେ ଗଣେଶ, ପଶ୍ଚାତ୍‌ଭାଗ ବା ପଶ୍ଚିମରେ କାର୍ତ୍ତିକେୟ ଓ ବାମଭାଗରେ ଶିବଙ୍କ ବାମା ପାର୍ବତୀଙ୍କ ମୂର୍ତ୍ତି ଦେଖିବାକୁମିଳେ। କେତେକ ମନ୍ଦିରରେ ପାର୍ବତୀଙ୍କ ସ୍ଥାନରେ ଦୁର୍ଗାଙ୍କ ମୂର୍ତ୍ତି ମଧ୍ୟ ରହିଥାଏ। ବିଷ୍ଣୁମନ୍ଦିରମାନଙ୍କ ଗର୍ଭଗୃହରେ ବିଷ୍ଣୁଙ୍କ ପ୍ରତିମା ରହୁଥିବାବେଳେ ପାର୍ଶ୍ୱଦେବତା ଭାବେ ତାଙ୍କର ତିନି ମୁଖ୍ୟ ଅବତାର ପ୍ରତିମା ସ୍ଥାନିତ ହୋଇଥାଏ। ଏହି ଅବତାର ମୂର୍ତ୍ତି ଓ ମନ୍ଦିର ବାଡ଼ରେ ଏମାନଙ୍କ ସ୍ଥାନ ସାଧାରଣତଃ ଦକ୍ଷିଣପାର୍ଶ୍ୱରେ ବରାହ, ପଶ୍ଚିମ ବା ପଶ୍ଚାତ୍ ଭାଗରେ ନୃସିଂହ ଏବଂ ବାମ ପାର୍ଶ୍ୱରେ ତ୍ରିବିକ୍ରମ ବା ବାମନାବତାର ମୂର୍ତ୍ତି ଥାଏ। ଶ୍ରୀଜଗନ୍ନାଥଙ୍କ ମନ୍ଦିରର ପାର୍ଶ୍ୱଦେବତା ନିମନ୍ତେ ମଧ୍ୟ ଏହି ଧାରା ପ୍ରଯୁଜ୍ୟ। ଶକ୍ତି ମନ୍ଦିରଗୁଡ଼ିକର ପାର୍ଶ୍ୱଦେବତାରେ କୌଣସି ଏକ ନିର୍ଦ୍ଦିଷ୍ଟ ଧାରା ଦେଖିବାକୁ ମିଳେନାହିଁ। ତେବେ, ସାଧାରଣତଃ ସୂର୍ଯ୍ୟ, ଶିବ, ଗଣେଶ, ଉମାମହେଶ୍ୱର କିମ୍ବା ଦେବୀଙ୍କ ଅନ୍ୟ କୌଣସି ରୂପ ପାର୍ଶ୍ୱଦେବତା ଭାବେ ସ୍ଥାନିତ ହୋଇଥାଏ।

ଗୌଣ ହେଲେହେଁ ମନ୍ଦିର ଦେହର ଅନ୍ୟ ଅନିବାର୍ଯ୍ୟ ମୂର୍ତ୍ତିଗୁଡ଼ିକ ହେଉଛି; ପ୍ରବେଶ ଦ୍ୱାରର ଦୁଇ ପାର୍ଶ୍ୱରେ ଦ୍ୱାରପାଳ, ନାଗନାଗୀ କିମ୍ବା ଗଙ୍ଗା ଯମୁନା। ପ୍ରବେଶ ଦ୍ୱାରର ଉପରବନ୍ଧ ମଧ୍ୟଭାଗରେ ସାଧାରଣତଃ ଗଜଲକ୍ଷ୍ମୀଙ୍କ ପ୍ରତିମା ସ୍ଥାନିତ ହେଉଥିବାବେଳେ ଅଳ୍ପ କେତେକ ମନ୍ଦିରର ପ୍ରବେଶଦ୍ୱାର ଏହି ସ୍ଥାନରେ ଅନ୍ୟ ଦେବଦେବୀଙ୍କ ପ୍ରତିମା ମଧ୍ୟ ଦେଖାଯାଏ। ଏହା 'ଦ୍ୱାର-ଲଲାଟବିମ୍ବ' ମୂର୍ତ୍ତିଭାବେ ପରିଚିତ। ଏହା ବ୍ୟତୀତ ପ୍ରବେଶ ଦ୍ୱାରର ଉପରେ ଅଷ୍ଟଗ୍ରହ କିମ୍ବା ନବଗ୍ରହ ମୂର୍ତ୍ତି ପାଟପଥରରେ ଉତ୍କୀର୍ଣ୍ଣ ହୋଇଥାଏ।



ଭୁବନେଶ୍ୱର, ପରଶୁରାମେଶ୍ୱର ମନ୍ଦିର ଆବରଣ ଦେବତାରେ ଶିବପାର୍ବତୀ ଓ କାମଦେବ ମୂର୍ତ୍ତି

ତୃତୀୟ ପର୍ଯ୍ୟାୟରେ ମନ୍ଦିର ଦେହରେ ଆବରଣଦେବତା ଉତ୍‌କୀର୍ଣ୍ଣ କରିବା ବିଷୟ ଚିନ୍ତା କରାଯାଏ। ଜଣେ ସକ୍ଷମ,କଳାପ୍ରେମୀ ମନ୍ଦିର ନିର୍ମାତାଙ୍କ ପକ୍ଷରେହିଁ ଏହା ସମ୍ଭବ ହୋଇଥାଏ। ଏହି କ୍ଷେତ୍ରରେ ମନ୍ଦିରର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗରେ ଭିନ୍ନ ଭିନ୍ନ ଦେବଦେବୀ, ଉପଦେବତା, ଗଣ ଓ ବହୁବିଧ ମଣ୍ଡନକୃତି ଓ ମୂର୍ତ୍ତି କରାଯାଇ ନିର୍ମାଣଟିକୁ ସର୍ବାଙ୍ଗସୁନ୍ଦର କରାଯାଏ। ଏହି ଆବରଣଦେବତାଗୁଡ଼ିକ ସାଧାରଣତଃ ବିଭିନ୍ନ ଗ୍ରହ, ଦିକ୍‌ପାଳ, ମାତୃକାଗଣ, ଦଶାବତାର ଓ ଶିବଶକ୍ତିଙ୍କ ବିଭିନ୍ନ ରୂପ ହୋଇଥାଏ। ମନ୍ଦିର ଗାତ୍ରରେ କେତେକ ଦେବଦେବୀଙ୍କ ନିମନ୍ତେ ସ୍ୱତନ୍ତ୍ର ସ୍ଥାନ ବା ନିର୍ଦ୍ଦିଷ୍ଟ ଦିଗ ରହିଥିବାବେଳେ ଛୋଟ ଦେବଦେବୀ ପ୍ରତିମାଗୁଡ଼ିକ ଅନିର୍ଦ୍ଦିଷ୍ଟ ଭାବେ ବିଭିନ୍ନ ସ୍ଥାନରେ ଖୋଦିତ ହୋଇଥାଏ। ଏହା ବ୍ୟତୀତ ମନ୍ଦିର ଗାତ୍ରରେ ପୌରାଣିକ, ରାଜନୈତିକ ଓ ସାମାଜିକ ଦୃଶ୍ୟ ମଧ୍ୟ ମୂର୍ତ୍ତିକଳାରେ ଦେଖିବାକୁମିଳେ।

କଳିଙ୍ଗରେ ମନ୍ଦିର ନିର୍ମାଣ ପ୍ରକ୍ରିୟା ଯଥେଷ୍ଟ ପୂର୍ବରୁ ଆରମ୍ଭ ହୋଇଥିଲେହେଁ, ଖ୍ରୀ: ୬ଷ୍ଠ-୭ମ ଶତାବ୍ଦୀରୁ ନିର୍ମିତ କେତେକ ମନ୍ଦିରରେ ମୂର୍ତ୍ତିକଳା ତଥା ମଣ୍ଡନକୃତିର ବହୁଳତା ଦୃଷ୍ଟିଗୋଚର ହୁଏ। ଏହାର ପୂର୍ବବର୍ତ୍ତୀ ସମୟର ଅପରିପକ୍ୱ ନିର୍ମାଣ କୌଶଳରେ ନିର୍ମିତ ଅନେକ ମନ୍ଦିର ଭାଙ୍ଗିପଡ଼ିଥିବାବେଳେ ସେଗୁଡ଼ିକର ପ୍ରତ୍ନାବଶେଷରୁ ସୂଚନା ମିଳେଯେ, ସେଥିରେ ନିତାନ୍ତ ଆବଶ୍ୟକ ପ୍ରବେଶଦ୍ୱାରର ଦ୍ୱାରପାଳ ଓ ପାର୍ଶ୍ୱଦେବତା ମୂର୍ତ୍ତିହିଁ ଉତ୍‌କୀର୍ଣ୍ଣ ହୋଇଥିଲା। ତେବେ, ପରବର୍ତ୍ତୀ ସମୟରେ ମନ୍ଦିରଗୁଡ଼ିକ ମୂର୍ତ୍ତିକଳା ଓ ମଣ୍ଡନକୃତି ବହୁଳ ହୋଇପଡ଼ିଥିବା ଲକ୍ଷ୍ୟ କରାଯାଏ। ଏଥି ନିମନ୍ତେ ମୂର୍ତ୍ତିକାରମାନେ ପ୍ରଥମେ ପଥର ଉପରେ ଏକ ମୁନିଆଁ ଲୁହାଦ୍ୱାରା ମୂର୍ତ୍ତିର ଏକ ବାହ୍ୟ ଆକାର ଅଙ୍କନକରି ପର୍ଯ୍ୟାୟକ୍ରମେ ଖୋଦନ କାର୍ଯ୍ୟ ସମ୍ପୂର୍ଣ୍ଣ କରୁଥିଲେ। ତେବେ,ଅନ୍ତିମ ପର୍ଯ୍ୟାୟରେ ମୂର୍ତ୍ତିର ଭାବ, ଅଳଙ୍କରଣ ଓ ମସୃଣତାକୁ ଗୁରୁତ୍ୱ ଦିଆଯାଉଥିଲା। ମନ୍ଦିରମାନଙ୍କରେ ପ୍ରାଚୀନ ସମୟର ମୂର୍ତ୍ତିଗୁଡ଼ିକ ଅଗଭୀରଭାବେ ଖୋଦିତ ହୋଇଥିବାବେଳେ ଏଗୁଡ଼ିକର ଶରୀର ଗଠନ କିଞ୍ଚିତ୍ ପୃଥୁଳ ଓ ଖର୍ବ। ସମୟାନୁକ୍ରମେ ମୂର୍ତ୍ତିଗୁଡ଼ିକର ଶରୀର ସୁଠାମ, ସୁନ୍ଦର ହୋଇଥିବାବେଳେ ଅନେକ ସ୍ଥଳେ କ୍ଷୀଣ ଓ କମନୀୟ ମଧ୍ୟ। ଏହି ବିକଶିତ ମୂର୍ତ୍ତିଗୁଡ଼ିକର ଖୋଦନ ଶୈଳୀ ଗଭୀର ଅର୍ଥାତ୍ ତ୍ରିପାର୍ଶ୍ୱ କିମ୍ବା ଚତୁଃପାର୍ଶ୍ୱ ଦୃଶ୍ୟ ସମ୍ବଳିତ।

ମନ୍ଦିର ଦେହରେ ମୂର୍ତ୍ତି ନିର୍ମାଣର ଅନ୍ୟ ଏକ ଦିଗ ଅନୁଧ୍ୟାନ କଲାବେଳେ ଜଣାଯାଏ ଯେ, କେତେକ ପ୍ରାଚୀନ ମନ୍ଦିରରେ ପାର୍ଶ୍ୱଦେବତା ମୂର୍ତ୍ତି ଉତ୍‌କୀର୍ଣ୍ଣ ନିମନ୍ତେ ଦେଉଳର ବାଡ଼ ନିର୍ମାଣ ସମୟରେ ସେହି ସ୍ଥାନରେ ଉପଯୁକ୍ତ ଆକାରର ଖଣ୍ଡିଏ ବଡ଼ ପଥର ସଂଯୋଗ କରାଯାଉଥିଲା। ଏହାଦ୍ୱାରା ଦେବତାଙ୍କ ମୂର୍ତ୍ତିରେ କୌଣସି ସଂଯୋଗ ଦାଗ ନରହି ଗୋଟିଏ ପଥରରେ ନିର୍ମାଣ କାର୍ଯ୍ୟ ସୂକ୍ଷ୍ମରୂପେ ସମ୍ପନ୍ନ ହେଉଥିଲା। ଅନ୍ୟ କେତେକ ସ୍ଥଳେ ଦେଉଳର ବାଡ଼ ଯଥାରୀତି ନିର୍ମିତ ହେବାପରେ ବାଡ଼ର ଏକାଧିକ ପଥରକୁ ନେଇ ମୂର୍ତ୍ତିଟି ଖୋଦିତ ହେଉଥିଲା। ଏହାଦ୍ୱାରା ମୂର୍ତ୍ତିଦେହରେ ଏକାଧିକ ପଥରର ଯୋଡ଼େଇ ଦାଗଗୁଡ଼ିକ ରହି ଅସୁନ୍ଦର ଦିଶୁଥିଲା। ଏହାର ଉଦାହାରଣ ଖ୍ରୀ:୬ଷ୍ଠ-୯ମ ଶତାବ୍ଦୀ ମଧ୍ୟରେ ନିର୍ମିତ ଅନେକ ମନ୍ଦିରରେ ଦେଖିବାକୁମିଳେ। ଭୁବନେଶ୍ୱରର ମୋହିନୀ ମନ୍ଦିରର ପାର୍ଶ୍ୱଦେବତାଗୁଡ଼ିକ ଯୋଡ଼ାପଥରରେ ଉତ୍‌କୀର୍ଣ୍ଣ ହୋଇଥିବାବେଳେ ପର୍ଶୁରାମେଶ୍ୱର ମନ୍ଦିରର ପାର୍ଶ୍ୱଦେବତା ମନ୍ଦିର ବାଡ଼ରେ ସ୍ଥାନିତ ହୋଇଥିବା ଗୋଟିଏ,ଗୋଟିଏ ପଥରରେ ଉତ୍‌କୀର୍ଣ୍ଣ ହୋଇଛି।

କିନ୍ତୁ, ଏହାର ବାଡ଼ ଓ ଗଣ୍ଡିରେ ଥିବା ଅଧିକାଂଶ ମୂର୍ତ୍ତି ଏକାଧିକ ପଥର ଉପରେ ଖୋଦିତ ହୋଇଥିବା ଦେଖାଯାଏ। ଏହାର କିଞ୍ଚିତ୍ ପରବର୍ତ୍ତୀ ସମୟ ଅର୍ଥାତ୍, ଖ୍ରୀ: ୯ମ ଶତାବ୍ଦୀରେ ନିର୍ମିତ ବୈତାଳଦେଉଳ, ଶିଶିରେଶ୍ୱର ଓ ମାର୍କଣ୍ଡେଶ୍ୱର ମନ୍ଦିର ଦେହର କେତେକ ମୁଖ୍ୟ ପ୍ରତିମା ଗୋଟିଏ ଗୋଟିଏ ପଥରରେ ଉତ୍କୀର୍ଣ୍ଣ ହୋଇଥିବାବେଳେ ଅନ୍ୟ ବହୁ ମୂର୍ତ୍ତି ଯୋଡ଼ାପଥର ଉପରେ ଖୋଦିତ ହୋଇଛି। ପ୍ରାଚୀନ ମନ୍ଦିରମାନଙ୍କରେ, ମନ୍ଦିର ଯେଉଁ ପଥରରେ ନିର୍ମିତ ପାର୍ଶ୍ୱଦେବତା ମୂର୍ତ୍ତିଗୁଡ଼ିକ ମଧ ସେହି ପଥରରେ ନିର୍ମିତ ହେଉଥିଲା। ତେବେ, ମଧ୍ୟଯୁଗ ଓ ପରବର୍ତ୍ତୀ କାଳୀନ ଏହି ପ୍ରକାର କମନୀୟ ମୂର୍ତ୍ତିଗୁଡ଼ିକ ଉନ୍ନତ ଧରଣର ମୁଗୁନିପଥରରେ ନିର୍ମାଣ କରାଯାଇ କନ୍ଦାପଥରରେ ନିର୍ମିତ ମନ୍ଦିର ଦେହର ଖୋପରେ ସ୍ଥାନିତ କରାଯାଇଛି। ପ୍ରାଚୀନ ମନ୍ଦିରମାନଙ୍କରେ ପାର୍ଶ୍ୱଦେବତାଙ୍କ ସ୍ଥାନ ଦେଉଳର ପାଭାଗରେ ରହୁଥିବାବେଳେ ପରବର୍ତ୍ତୀ ସମୟର ବିକଶିତ କଳାଶୈଳୀର ପାର୍ଶ୍ୱଦେବତା ମୂର୍ତ୍ତିଗୁଡ଼ିକୁ ପାଭାଗର ଉର୍ଦ୍ଧ୍ୱରେ ଅର୍ଥାତ୍, ଜଂଘ ଉପରେ ସ୍ଥାନିତ କରାଯାଉଥିବା ଦେଖାଯାଏ। ଏହାର ଉଦାହାରଣ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର, ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ଓ କୋଣାର୍କର ସୂର୍ଯ୍ୟମନ୍ଦିର ସମେତ ଖ୍ରୀଷ୍ଟୀୟ ୧୦ମ ଶତାବ୍ଦୀ ଏବଂ ତା'ର ପରବର୍ତ୍ତୀ ସମୟରେ ନିର୍ମିତ ଅନ୍ୟ ମନ୍ଦିରମାନଙ୍କରେ ମଧ ଦେଖିବାକୁ ମିଳେ। ଏଣୁ ମନ୍ଦିରହିଁ ମୂର୍ତ୍ତିକଳା ବିକାଶର ମୁଖ୍ୟ ମାଧ୍ୟମ କହିଲେ ଅତ୍ୟୁକ୍ତି ହେବନାହିଁ।

# ଶିବଲିଙ୍ଗ

ଲିଙ୍ଗ ପୂଜାର ପରମ୍ପରାରେ ପ୍ରାଗୈତିହାସିକ ଓ ଅନାର୍ଯ୍ୟ ପରିକଳ୍ପନା ନିହିତ ଥିବା ସତ୍ତ୍ୱେ ବୈଦିକ ଆର୍ଯ୍ୟମାନେ ଏହାକୁ ଏକ ଉଚ୍ଚତର ଓ ମାର୍ଜିତ ଚିନ୍ତାଧାରାରେ ଗ୍ରହଣ କରିଛନ୍ତି। ଏହି ପରିପ୍ରେକ୍ଷୀରେ ପୁରାଣମାନଙ୍କରେ ଏକାଧିକ ଆଖ୍ୟାନ ବର୍ଣ୍ଣିତ ହୋଇଛି। ତାହା ମଧ୍ୟରୁ ଏକ ସୁବିଦିତ ଆଖ୍ୟାନ ହେଉଛି: କ୍ଷୀରସାଗରରେ ଅନନ୍ତନାଗର ବଳୟ ଉପରେ ଶୟନ କରିଥିଲେ ବିଷ୍ଣୁ। ତାଙ୍କ ନାଭିରୁ ଜାତ କମଳ ଉପରେ ଧ୍ୟାନରତ ଥିଲେ ବ୍ରହ୍ମା। ବ୍ରହ୍ମାଙ୍କ ଧ୍ୟାନଭଙ୍ଗ ହୁଅନ୍ତେ, ସେ ନିଜର ସୃଷ୍ଟି ଓ ସ୍ଥିତି ସମ୍ପର୍କରେ ଜିଜ୍ଞାସୁ ହୋଇ ଉଠିଲେ। ନିମ୍ନରେ ଥିବା ବିଷ୍ଣୁଙ୍କୁ ସେ ଦେଖିନପାରି ମନେକଲେ 'ମୁଁହିଁ ସଂସାରରେ ପ୍ରଥମ ଓ ଶ୍ରେଷ୍ଠ।' ଏହି ସମୟରେ ବିଷ୍ଣୁ କହିଉଠିଲେ "ମୋ ନାଭିକମଳ ଉପରେ ଆପଣ ଆସ୍ଥାନ ଗ୍ରହଣ କରିଛନ୍ତି, ଏଣୁ ମୋର ଶ୍ରେଷ୍ଠତ୍ୱ ଉପଲବ୍ଧି କରନ୍ତୁ।" ଏହି ଶ୍ରେଷ୍ଠତ୍ୱକୁ ନେଇ ବ୍ରହ୍ମା ଓ ବିଷ୍ଣୁଙ୍କ ମଧ୍ୟରେ ଘୋର କଳହ ସୃଷ୍ଟି ହେଲା। ଏହି ସମୟରେ ସେମାନଙ୍କ ସମ୍ମୁଖରେ ଦୃଶ୍ୟମାନ ହେଲା ଏକ ବିଶାଳ ଜ୍ୟୋର୍ତିମୟ ସ୍ତମ୍ଭ। ଏଥିରେ ଦୁଇ ଦେବତା ଆଶ୍ଚର୍ଯ୍ୟାନ୍ୱିତ ହେବାସହିତ ସ୍ତମ୍ଭର ଆଦିଅନ୍ତ ଜାଣିବା ନିମନ୍ତେ ବ୍ରହ୍ମା ହଂସ ରୂପରେ ତାହାର ଉର୍ଦ୍ଧ୍ୱକୁ ଓ ବିଷ୍ଣୁ ଶୂକର ରୂପରେ ନିମ୍ନକୁ ଗମନ କଲେ। ବହୁକାଳ ପର୍ଯ୍ୟନ୍ତ ଯାତ୍ରା ସତ୍ତ୍ୱେ ସେମାନେ ସ୍ତମ୍ଭର ଆଦିଅନ୍ତ ନପାଇ, ପୁନଶ୍ଚ ପୂର୍ବସ୍ଥାନକୁ ଫେରିଆସି ସ୍ତମ୍ଭର ଶରଣାପନ୍ନ ହେଲେ। ଏହି ସମୟରେ ଶିବଙ୍କ ଶୂନ୍ୟବାଣୀ ଶୁଣାଗଲା "ମୁଁ ହେଉଛି ଶିବ - ଜ୍ୟୋର୍ତିମୟ ଲିଙ୍ଗ, ସୃଷ୍ଟିର ମୂଳାଧାର। ଆମେ ସମସ୍ତେ ସମାନ, ଶ୍ରେଷ୍ଠତ୍ୱକୁ ନେଇ ତୁମେ କଳହ ନକରି ସଂସାର ପ୍ରତି ନିଜନିଜର କର୍ତ୍ତବ୍ୟ ପାଳନକର।"

ସେହି ସମୟରୁ ବ୍ରହ୍ମା, ବିଷ୍ଣୁ ଓ ଅନ୍ୟ ଦେବତାଙ୍କ ସମେତ ସଂସାରବାସୀ 'ଶିବଲିଙ୍ଗ' ପୂଜା କଲେ। ତେବେ, ଜ୍ଞାନୀମାନଙ୍କ ମତରେ ଶିବଲିଙ୍ଗ ଓ ଶକ୍ତିଚକ୍ରର କଳ୍ପନା ମୂଳରେ ରହିଛି ବୈଦିକ ଉକ୍ତି 'ପୃଥିବୀ ମାତା ଓ ଆକାଶ ପିତା'ର ବିଶ୍ୱାସ। ଏହି ଧାରଣା ପରବର୍ତ୍ତୀ ସମୟର ଅନେକ ପୁରାଣରେ ପ୍ରତିଫଳିତ ହୋଇଛି। ଅନ୍ୟ ଭାବରେ ଏହା ଅଦୃଶ୍ୟ ସୃଷ୍ଟି ପ୍ରକ୍ରିୟାର ଦୃଶ୍ୟମାନ ସଂକେତ।

ବ୍ରାହ୍ମଣ୍ୟ ଧର୍ମରେ ଶିବଲିଙ୍ଗ ପୂଜା ଅତ୍ୟନ୍ତ ଲୋକପ୍ରିୟ। ଏପରିକି, କେତେକ ପ୍ରାଚୀନ ଶିବଲିଙ୍ଗ ମଧ୍ୟଏସିଆ ଓ ପଶ୍ଚିମ ଦେଶମାନଙ୍କରେ ମଧ ଦେଖିବାକୁମିଳେ। ଏହି ଧାରାରେ କଳିଙ୍ଗର ବ୍ରାହ୍ମଣ୍ୟଗୋଷ୍ଠୀ ମଧ ପ୍ରଥମେ ଶିବଙ୍କ ପ୍ରତୀକ, ଲିଙ୍ଗପୂଜା କରିଥିଲେ। ଏଣୁ, ଓଡ଼ିଶାର ପ୍ରାଚୀନ ତୀର୍ଥକ୍ଷେତ୍ରମାନଙ୍କରେ ବହୁ ପ୍ରାଚୀନ ଶିବଲିଙ୍ଗ ଓ ଶିବମନ୍ଦିରର ପ୍ରତ୍ନାବଶେଷ ଦେଖିବାକୁମିଳେ। ଧର୍ମଶାସ୍ତ୍ର, ପୁରାଣ ଓ ତନ୍ତ୍ର ଶାସ୍ତ୍ରରେ ବିଭିନ୍ନ ପ୍ରକାର ଅଦୃଶ୍ୟ ବା ମାନସଲିଙ୍ଗର ବର୍ଣ୍ଣନା ରହିଥିବାବେଳେ ଦୃଶ୍ୟମାନ ଶିବଲିଙ୍ଗଗୁଡ଼ିକୁ ସାଧାରଣତଃ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇଛି। ଶିଳା କିମ୍ବା ବରଫରେ ପ୍ରାକୃତିକ ପ୍ରକ୍ରିୟାରେ ଲିଙ୍ଗଆକାର ଧାରଣ କରିଥିବା ଅର୍ଚ୍ଚା ବା ପୂଜିତ ବସ୍ତୁଗୁଡ଼ିକୁ 'ସ୍ୱୟଂଭୂଲିଙ୍ଗ' କୁହାଯାଉଥିବାବେଳେ ଶିଳ୍ପୀଦ୍ୱାରା ନିର୍ମିତ ବିଭିନ୍ନ ଆକାର ପ୍ରକାରର ଶିବଲିଙ୍ଗକୁ 'ମନୁଷ୍ୟକୃତଲିଙ୍ଗ' ଭାବେ ଗ୍ରହଣ କରାଯାଏ। ଅତି ପ୍ରାଚୀନ ଅଧିକାଂଶ ଶିବଲିଙ୍ଗ ସହିତ ଶକ୍ତିପୀଠ ଦେଖାଯାଏ ନାହିଁ। କିନ୍ତୁ, ପରବର୍ତ୍ତୀ ସମୟରେ ଶିବଙ୍କ ସହିତ ଶକ୍ତି ଅର୍ଥାତ୍, ପୁରୁଷ ସହିତ ପ୍ରକୃତିକୁ ଗୁରୁତ୍ୱ ଦିଆଯାଇଥିବାରୁ ଶିବଲିଙ୍ଗ ସହିତ ଶକ୍ତିପୀଠର ସଂଯୋଗ ହୋଇଛି। ଏହି ପୀଠକୁ 'ଅର୍ଘପଟ୍ଟ' ମଧ କୁହାଯାଏ। ମନୁଷ୍ୟକୃତ ଏକ ଶିବଲିଙ୍ଗକୁ ସାଧାରଣତଃ ଶାସ୍ତ୍ରାନୁସାରେ ତିନିଭାଗରେ ନିର୍ମାଣ କରାଯାଇଥାଏ। ଏହାର ଚତୁଷ୍କୋଣ ମୂଳଭାଗ, ଯାହାକି ଭୂମି ମଧ୍ୟରେ ରହେ ତାହାକୁ 'ବ୍ରହ୍ମଭାଗ' କୁହାଯାଏ। ଏହାଉପର ଶକ୍ତିପୀଠ ମଧ୍ୟରେ ରହୁଥିବା ମଧ୍ୟଅଂଶ ଅଷ୍ଟକୋଣ ହୋଇଥିବାବେଳେ ଏହା 'ବିଷ୍ଣୁଭାଗ' ଓ ଉର୍ଦ୍ଧ୍ୱଭାଗର ଦୃଶ୍ୟମାନ,ଗୋଲ ସ୍ତମ୍ଭାକାର, ବର୍ତ୍ତୁଳଅଂଶ, 'ରୁଦ୍ରଭାଗ'ଭାବେ ପରିଚିତ। ଏହାକୁ 'ପୂଜାଭାଗ' ମଧ କହନ୍ତି। ଲିଙ୍ଗର ନିମ୍ନରେ ସଂଯୋଗ ହୋଇଥିବା ଶକ୍ତିପୀଠ ସାଧାରଣତଃ ଚକ୍ରାକାର ହୋଇଥିବାବେଳେ କେତେକ ବର୍ଗାକାର, ଆୟତାକାର, ନକ୍ଷତ୍ରାକାର ଓ ଅଷ୍ଟକୋଣୀ ନିର୍ମାଣ ମଧ ଦେଖିବାକୁମିଳେ।

ଓଡ଼ିଶାର ପ୍ରାଚୀନ ଶୈବକ୍ଷେତ୍ର ଭୁବନେଶ୍ୱର ତଥା ତା'ର ନିକଟବର୍ତ୍ତୀ ସ୍ଥାନମାନଙ୍କରେ ଅର୍ଘପଟ୍ଟ ବିହୀନ ପ୍ରଥମ ପର୍ଯ୍ୟାୟର କେତୋଟି ଛୋଟ ଖମ୍ବ ସଦୃଶ ଶିବଲିଙ୍ଗ ରହିଛି। ପ୍ରାଚୀନ ଯୋଗୁଁ ଏହି କୃତିଗୁଡ଼ିକର ନିର୍ମାଣଶୈଳୀ ରୁକ୍ଷ। ଏଥି ମଧ୍ୟରୁ ଗୋଟିଏ ଲିଙ୍ଗ ଧଉଳିପାହାଡ଼ ଉପରେ ଧବଳେଶ୍ୱର ନାମରେ ମୂଳ[illegible]ଉଥିବାବେଳେ ଅନ୍ୟ ଗୋଟିଏ ଶିଶୁପାଳଗଡ଼ର ଉତ୍ତର-ପଶ୍ଚିମ, ଭୁବନେଶ୍ୱର ପୁରୀ ରାସ୍ତାର ଅନତି ଦୂରରେ, ନବନିର୍ମିତ ଏକ ମନ୍ଦିର ମଧ୍ୟରେ ସ୍ଥାନିତ ହୋଇଛି। ଅନ୍ୟ ଦୁଇପ୍ରକାର ଶିବଲିଙ୍ଗ ସହିତ ମଧ ଅର୍ଘପଟ୍ଟ ଦେଖାଯାଏ ନାହିଁ। ଏହି କୃତିଗୁଡ଼ିକ 'ଶତଏକଲିଙ୍ଗ' ଓ 'ସହସ୍ରଲିଙ୍ଗ' ନାମରେ ପରିଚିତ। ପ୍ରଥମ ପ୍ରକାର କୃତିରେ ଗୋଟିଏ ଶିବଲିଙ୍ଗରେ ପୂଜାଭାଗ ନିମ୍ନରୁ ପ୍ରତ୍ୟେକ ଧାଡ଼ି ବା ଘେରରେ କୋଡ଼ିଏଗୋଟିକରି, ପାଞ୍ଚ ଧାଡ଼ିରେ, ଏକଶତ ଛୋଟ ଛୋଟ ଲିଙ୍ଗ ଉତ୍କୀର୍ଣ୍ଣ ହୋଇଥାଏ। ମୁଖ୍ୟ ଲିଙ୍ଗକୁ ମିଶାଇ ଏହା ଏକଶତଏକ ହୁଏ। ସେହିପରି ଏକ ବଡ଼ ଲିଙ୍ଗର ପୂଜାଭାଗ, ମୂଳରୁ ପ୍ରତ୍ୟେକ ଘେରରେ ପଚାଶକରି, କୋଡ଼ିଏ ଧାଡ଼ିରେ ଏକ ହଜାର ଛୋଟ ଲିଙ୍ଗ

**ଉତ୍କୀର୍ଣ୍ଣ** ହେବାଦ୍ୱାରା ମୁଖ୍ୟଲିଙ୍ଗ **ସହିତ ଏହା** 'ଏକହଜାରଏକ' ଲିଙ୍ଗ ହୁଏ **ଏବଂ** 'ସହସ୍ରଲିଙ୍ଗ' **ଭାବେ** ଗ୍ରହଣ କରାଯାଏ। ଏହି ପ୍ରକାର କେତେକ କୃତି ଭୁବନେଶ୍ୱରର ବିନ୍ଦୁସାଗର ପଙ୍କୋଦ୍ଧାରବେଳେ ସଂଗ୍ରହ କରାଯାଇ ନିକଟସ୍ଥ ଭବାନୀଶଙ୍କର ମନ୍ଦିର ପରିସରରେ ରଖାଯାଇଛି। କେଦାରଗୌରୀ ଓ ଲିଙ୍ଗରାଜ ମନ୍ଦିର ପରିସରରେ ମଧ୍ୟ ଏହି ପ୍ରକାର କୃତିମାନ ଦେଖିବାକୁ ମିଳେ। ପରଶୁରାମେଶ୍ୱର ମନ୍ଦିର ପରିସରରେ ଥିବା ସହସ୍ରଲିଙ୍ଗଟି ସୁଠାମ **ଓ** ସୁନ୍ଦର ଅଟେ। ଏହା ବ୍ୟତୀତ ଶୈଳୋଦ୍ଭବକାଳୀନ **ପ୍ରଖ୍ୟାତ ଶୈବକ୍ଷେତ୍ର ବାଣପୁର ନିକଟ** ବଙ୍କାଡ଼ରେ **ଓ ଯାଜପୁରରେ ମଧ୍ୟ ଏହି ପ୍ରକାର ବହୁ କୃତି ଦେଖିବାକୁ ମିଳେ।**



**ଭୁବନେଶ୍ୱର, ପରଶୁରାମେଶ୍ୱର ମନ୍ଦିର ପରିସରରେ ସହସ୍ରଲିଙ୍ଗ**



**ଭୁବନେଶ୍ୱର, ଭବାନୀଶଙ୍କର ମନ୍ଦିର ପରିସରରେ ଚର୍ତୁମୁଖଲିଙ୍ଗ**

ଶିବଲିଙ୍ଗ ସହିତ ରହୁଥିବା ଶକ୍ତିପୀଠ ସର୍ବତ୍ର ଏକ ପ୍ରଣାଳଯୁକ୍ତ **ଏବଂ ଅଧିକାଂଶ ସ୍ଥଳେ ଏହା ଉତ୍ତରମୁଖୀ। ବିଭିନ୍ନ ଆକାର ପ୍ରକାରର ଶକ୍ତିପୀଠ ରହିଥିବାବେଳେ ଚକ୍ରାକାର ପୀଠର ସଂଖ୍ୟା** ସର୍ବାଧିକ। ଭୁବନେଶ୍ୱରର ଶ୍ରୀଲିଙ୍ଗରାଜଙ୍କ ଶକ୍ତିପୀଠଟି ଏହି ପ୍ରକାର ହୋଇଥିଲେହେଁ ଏହା ମଧ୍ୟର ଲିଙ୍ଗଟି କୌଣସି ଏକ ଦୁର୍ଦ୍ଦିନରେ ଭାଙ୍ଗି ନଷ୍ଟ ହୋଇପଡ଼ିଛି। କେଦାରେଶ୍ୱରଙ୍କ ଶିବଲିଙ୍ଗଟିର ମଧ୍ୟ ଏହି ଅବସ୍ଥା। **ତେବେ,** ବିଭିଷଣେଶ୍ୱର, ଲକ୍ଷ୍ମଣେଶ୍ୱର, ଖରାଖିଆ-ବୈଦ୍ୟନାଥ ଓ ଲିଙ୍ଗରାଜମନ୍ଦିର **ପରିସରରେ କେତୋଟି ସୁଠାମ,** ସୁନ୍ଦର ଶିବଲିଙ୍ଗ ରହିଛି। ଏହା ବ୍ୟତୀତ ବଙ୍କାଡ଼,ଯାଜପୁର, ପଶ୍ଚିମ **ଓଡ଼ିଶାର ମାରାଗୁଡ଼ାରେ ମଧ୍ୟ** ବୃହଦାକାର ଶକ୍ତିଚକ୍ର ଥିବା କେତେକ ଶିବଲିଙ୍ଗ ଦେଖାଯାଏ। ଭୁବନେଶ୍ୱରର ପ୍ରାଚୀନ ଗୋଷ୍ଠୀ ମନ୍ଦିର ମଧ୍ୟରେ ସୁବର୍ଣ୍ଣଜଳେଶ୍ୱରଙ୍କ ଲିଙ୍ଗ ସହିତ ଥିବା ଶକ୍ତିପୀଠଟି ବର୍ଗାକାର ବା ଚତୁଷ୍କୋଣ ଅଟେ। ବ୍ରହ୍ମେଶ୍ୱର ଓ ଅନ୍ୟ କେତେକ ମନ୍ଦିର ବେଢ଼ାରେ ମଧ୍ୟ ଏହି ପ୍ରକାର ଛୋଟ ଛୋଟ ଲିଙ୍ଗମାନ ଦେଖିବାକୁ ମିଳେ। ଏହା ବ୍ୟତୀତ ଚତୁଷ୍କୋଣ ପୀଠଯୁକ୍ତ ଶିବଲିଙ୍ଗ ବଙ୍କାଡ଼, ଯାଜପୁର, **ନୂଆପଡ଼ା** ନିକଟ ମାରାଗୁଡ଼ା **ଓ ଝୁଟିଂ** ଅଞ୍ଚଳରେ ରହିଛି। ମାରାଗୁଡ଼ାର ପ୍ରତ୍ନତାତ୍ତ୍ୱିକ

ଖନନରୁ କେତୋଟି ଆୟତାକାର ଶକ୍ତିପୀଠ ଆବିଷ୍କୃତ ହୋଇଥିଲା। ପ୍ରାଚୀନ କାଳରେ ମଧ୍ୟଭାରତରେ ତନ୍ତ୍ର ପୂଜାର ବଳିଷ୍ଠ ପରମ୍ପରା ରହିଥିଲା। ଏଣୁ, ସେହି ଅଞ୍ଚଳର ଅନେକ ଶିବଲିଙ୍ଗ ସହିତ ଶକ୍ତିଯନ୍ତ୍ରର ଅନୁସରଣରେ ନିର୍ମିତ ନକ୍ଷତ୍ରାକାର ଓ ଅଷ୍ଟକୋଣୀ ଶକ୍ତିପୀଠ ସଂଯୋଗ ହୋଇଥିବା ଦେଖାଯାଏ। ଓଡ଼ିଶାର ଯାଜପୁର ଓ ବୌଦର ରାମେଶ୍ୱରମନ୍ଦିରରେ ଏହି ପ୍ରକାର କୃତିମାନ ରହିଛି।



ବୌଦର ରାମେଶ୍ୱର ମନ୍ଦିର ମଧ୍ୟର
ନକ୍ଷତ୍ରାକାର ଅର୍ଘପଟ୍ଟ ଥିବା ଶିବଲିଙ୍ଗ

ଶୈବ ପଞ୍ଚତତ୍ତ୍ୱ ବା ପଞ୍ଚମହାଭୂତ ଉପରେ ଆଧାରିତ ଶିବଙ୍କ ମୁଖଲିଙ୍ଗର ପରିକଳ୍ପନା ଅତି ପ୍ରାଚୀନ ହେଲେହେଁ ଗୁପ୍ତଯୁଗରେ ଏହାର ବିଶେଷ ବିକାଶ ଘଟିଥିଲା। ଏହି ପ୍ରକାର ରଚନାରେ ଶିବଲିଙ୍ଗ ସହିତ ଶିବଙ୍କ ଗୋଟିଏ ମୁଖ କିମ୍ବା ଚାରିମୁଖ ଉତ୍କୀର୍ଣ୍ଣ ହୋଇଥାଏ। ତେବେ, ଏହା ଶାସ୍ତ୍ରମତରେ ପଞ୍ଚମୁଖଭାବେ ପରିଗଣିତ ହୁଏ। ଏହି ପ୍ରକାର ଏକ କୃତିରେ ଚାରିମୁଖ ଯଥାକ୍ରମେ: ସଦ୍ୟୋଜାତ (ପୃଥିବୀତତ୍ତ୍ୱ), ବାମଦେବ,(ଜଳତତ୍ତ୍ୱ), ଅଘୋର (ଅଗ୍ନିତତ୍ତ୍ୱ), ଓ ତତ୍‌ପୁରୁଷ (ବାୟୁତତ୍ତ୍ୱ)କୁ ବୁଝାଉଥିବାବେଳେ ମୁଖ୍ୟଲିଙ୍ଗର ଊର୍ଦ୍ଧ୍ୱଭାଗ 'ଇଶାନ' ବା ଆକାଶତତ୍ତ୍ୱର ସୂଚନା ଦିଏ। ସେହିପରି ଏକମୁଖ-ଲିଙ୍ଗରେ ମୁଖର ପଞ୍ଚଇନ୍ଦ୍ରିୟ, ପଞ୍ଚବ୍ରହ୍ମକୁ ସଂକେତ କରେ।

ଓଡ଼ିଶାରେ ଦେଖାଯାଉଥିବା କେତୋଟି ମୁଖଲିଙ୍ଗ ଗୁପ୍ତଯୁଗ କିମ୍ବା ତା'ର କିଞ୍ଚିତ୍ ପରବର୍ତ୍ତୀ ସମୟର ହୋଇଥିବା ସମ୍ଭବ। ଭୁବନେଶ୍ୱରର ବିନ୍ଦୁସାଗର ମଧ୍ୟରୁ ଉଦ୍ଧାର କରାଯାଇ ନିକଟସ୍ଥ ଭବାନୀଶଙ୍କର ମନ୍ଦିର ପରିସରରେ ରଖାଯାଇଥିବା, ଏହି ପ୍ରକାର କେତେକ କୃତି ଉଲ୍ଲେଖଯୋଗ୍ୟ। ଅନ୍ୟ କେତୋଟି ଏହି ପ୍ରକାର ଚର୍ତୁମୁଖଲିଙ୍ଗ କେଦାରଗୌରୀ ମନ୍ଦିର ପରିସରରେ ଦେଖିବାକୁ ମିଳେ। ଯାଜପୁରରେ ଥିବା କେତୋଟି ଚର୍ତୁମୁଖଲିଙ୍ଗ ମଧ ପ୍ରାଚୀନ ଅଟେ। ଭଞ୍ଜରାଜତ୍ୱ ସମୟ ଖ୍ରୀ: ୯ମ-୧୦ମ ଶତାବ୍ଦୀର ଅନ୍ୟ କେତୋଟି ଚର୍ତୁମୁଖଲିଙ୍ଗ କେନ୍ଦୁଝର ଜିଲ୍ଲାର ସୀତାବିଞ୍ଜିଠାରେ ରହିଛି। ଓଡ଼ିଶାରେ ଏକମୁଖଲିଙ୍ଗର ସଂଖ୍ୟା ଯଥେଷ୍ଟ କମ୍। ତେବେ, ମୁଖଲିଙ୍ଗମ୍‌ର ମଧୁକେଶ୍ୱର ମନ୍ଦିର, ଯାଜପୁରର ତ୍ରିଲୋଚନେଶ୍ୱର ମନ୍ଦିର ଓ ଗଞ୍ଜାମ ଜିଲ୍ଲା, ଗୋବିନ୍ଦପୁର, ପାଣ୍ଡିଆର ଶିବମନ୍ଦିରରେ ଏହି ପ୍ରକାର କୃତି ଦେଖାଯାଏ।

ଶାସ୍ତ୍ରୀୟମତରେ ନିର୍ମିତ ସାଧାରଣ ଶିବଲିଙ୍ଗ ବ୍ୟତୀତ କେତେକ ଅସ୍ୱାଭାବିକ ରଚନା ମଧ୍ୟ ଦେଖାଯାଏ । ଅଶୋକଙ୍କ ଅଭିଲେଖ ଥିବା ଗଞ୍ଜାମ ଜିଲ୍ଲା, ଜଉଗଡ଼ର ଅନତିଦୂରରେ କାଳେଶ୍ୱର ମହାଦେବଙ୍କ ମନ୍ଦିର ଅବସ୍ଥିତ । ଏହା ମଧ୍ୟରେ ଥିବା ଶିବଲିଙ୍ଗର ଅର୍ଘପଟ୍ଟ ମଧ୍ୟରେ ଗୋଟିଏ ଛୋଟ ଓ ଅନ୍ୟ ଗୋଟିଏ ସାମାନ୍ୟ ବଡ଼ ଲିଙ୍ଗର ପ୍ରତୀକ ରହିଛି । ବାଲେଶ୍ୱର ଜିଲ୍ଲାର ସୋରଠାରେଥିବା ଏକ ଶିବଲିଙ୍ଗର ଚତୁଃପାର୍ଶ୍ୱରେ ଚରିଗୋଟି ବୌଦ୍ଧଧାରଣୀ ଉତ୍‌କୀର୍ଣ୍ଣ ହୋଇଥିବା ଦେଖାଯାଏ । ଓଡ଼ିଶାର ଦୁଇଟି ବିଶାଳ ଶିବଲିଙ୍ଗ ମଧ୍ୟରୁ ଭୁବନେଶ୍ୱରର ଭାସ୍କରେଶ୍ୱର ମନ୍ଦିର ମଧ୍ୟରେ ଥିବା ସ୍ତମ୍ଭାକାର ଶିବଲିଙ୍ଗଟି ପ୍ରଥମେ ଅଶୋକଙ୍କ ଦ୍ୱାରା ସ୍ଥାପିତ ଏକ ସ୍ତମ୍ଭ ଥିଲା । ମୌର୍ଯ୍ୟଶାସନର ଅବସାନ ପରେ ପ୍ରତିଶୋଧ ପରାୟଣ ତୋସାଳିବାସୀ ସ୍ତମ୍ଭଉପରର ସିଂହମୂର୍ତ୍ତି ଓ ଶୀର୍ଷମୁକୁଟକୁ ଭାଙ୍ଗିପକାଇ ଏହାକୁ ଏକ ଶିବଲିଙ୍ଗଭାବେ ପୂଜାର୍ଚ୍ଚନା କଲେ । ସେହି ସମୟରେ ସ୍ତମ୍ଭର ମୂଳଭାଗରେ ଚରିଖଣ୍ଡ ପଥର ଯୋଡ଼ି ଅର୍ଘପଟ୍ଟଟି ନିର୍ମାଣ କରାଯାଇଛି । ଏହି ଲିଙ୍ଗଭାଗର ଉଚ୍ଚତା ପ୍ରାୟ ୯ଫୁଟ ଓ ବ୍ୟାସ ୧୨ଫୁଟ ୫ଇଞ୍ଚ ହୋଇଥିବାବେଳେ ଅର୍ଘପଟ୍ଟଟି ପ୍ରାୟ ୨୦ଫୁଟ ପରିଧି ବିଶିଷ୍ଟ ଅଟେ । ଅନ୍ୟ ଏକ ସୁଉଚ୍ଚ ଶିବଲିଙ୍ଗ ବାଲେଶ୍ୱର ଜିଲ୍ଲା, ସୁବର୍ଣ୍ଣରେଖା ନଦୀର ଦକ୍ଷିଣତଟ, କୁମ୍ଭାରଗଡ଼ ମୌଜା, ମହାଦେବପାଳ ଗ୍ରାମ ନିକଟରେ ଥିବା ଜଣାଯାଏ । ଭୂଷଣ୍ଡେଶ୍ୱର ନାମରେ ପୂଜା ପାଉଥିବା ଏହି ଲିଙ୍ଗଟିର ଉଚ୍ଚତା ପ୍ରାୟ ୧୨ଫୁଟ ଓ ବ୍ୟାସ ପ୍ରାୟ ୪ଫୁଟ, ଶକ୍ତି ଚକ୍ରର ପରିଧି ପ୍ରାୟ ୩୭ଫୁଟ ଅଟେ । ଏହା ବ୍ୟତୀତ ମୟୂରଭଞ୍ଜ ଜିଲ୍ଲାର ଉଦଲା ନିକଟ ସମୀବୃକ୍ଷ ନାମକ ସ୍ଥାନରେ ମଧ୍ୟ ଏକ ବିଶାଳ ଶିବଲିଙ୍ଗ ଥିବାର ଜଣାଯାଏ । ଏହିପରି ଓଡ଼ିଶାର କେତେକ ଦୂରଦୂରାନ୍ତ ଅଞ୍ଚଳର ବିଭିନ୍ନ ପ୍ରକାର ଶିବଲିଙ୍ଗ ରହିଛି ।



# ଗଣେଶ

ଅଲୌକିକ ବିଦ୍ୟାବୁଦ୍ଧିର ଅଧିପତି, ଗିରିଜାନନ୍ଦନ ପ୍ରଭୁ ଗଣେଶ, ପାର୍ବତୀଙ୍କ ମାନସପୁତ୍ର ଭାବେ ଖ୍ୟାତ । ଶିବଙ୍କ ସହିତ ଯୁଦ୍ଧରେ ନିଜ ମସ୍ତକ ହରାଇବାପରେ ତା'ଙ୍କ ଶରୀରରେ ଗଜମସ୍ତକ ସଂଯୋଗ ହୋଇଥିବାରୁ ସେ ଗଜାନନରୂପେ ପରିଚିତ । ଏହା ବ୍ୟତୀତ ତା'ଙ୍କର ଗଣପତି, ନିଧିପତି,ଏକଦନ୍ତ, ବିନାୟକ, ବିଘ୍ନରାଜଭଳି ଅନ୍ୟ କେତେକ ନାମ ମଧ ରହିଛି । ବହୁ ଶାସ୍ତ୍ରରେ ଗଣେଶଙ୍କୁ ବିଘ୍ନକର୍ତ୍ତା ତଥା ଦ୍ରାବିଡ଼ ଦେବତାଭାବେ ସୂଚୀତ କରାଯାଇଥିବା ସ୍ଥଳେ ସମୟାନୁକ୍ରମେ ସେ ବୈଦିକ ଦେବତାଙ୍କ ମଧ୍ୟରେ ଅଗ୍ରପୂଜ୍ୟ ହୋଇପଡ଼ିଛନ୍ତି । ଶାସ୍ତ୍ରୀୟ ବର୍ଣ୍ଣନା ଅନୁଯାୟୀ ସେ ଗଜମୁଖ, ସ୍ଥୂଳତନୁ, ଲମ୍ବୋଦର, ଖର୍ବକାୟ ଓ ଏକଦନ୍ତ ବିଶିଷ୍ଟ ଅଟନ୍ତି । ଗଣେଶଙ୍କ ମୁଖ୍ୟ ଆୟୁଧ ଲଡ୍ଡୁକପାତ୍ର ଓ ଦନ୍ତଖଣ୍ଡ ହୋଇଥିବାବେଳେ ସେ ଜପମାଳା, ପରଶୁ, ପାଶ, ଅଙ୍କୁଶ ଓ ଅନ୍ୟକେତେକ ଆୟୁଧ ମଧ ଧାରଣ କରିଥିବା ଦେଖାଯାଏ । ବେଦ, ବୈଦିକ ସାହିତ୍ୟରେ ଗଣପତିଙ୍କ ବାହାନ ସମ୍ପର୍କରେ କୌଣସି ସୂଚନା ନଥିବାସ୍ଥଳେ ପୌରାଣିକ ଯୁଗରେ ମୂଷିକକୁ ତା'ଙ୍କ ବାହନ ଭାବେ ଗ୍ରହଣ କରାଯାଇଛି ।

ଓଡ଼ିଶାରେ ଗଣେଶଙ୍କ ସ୍ୱତନ୍ତ୍ର ମନ୍ଦିର ସଂଖ୍ୟା ଯଥେଷ୍ଟ କମ୍ ହେଲେହେଁ ପ୍ରତ୍ୟେକ ଶିବମନ୍ଦିରର ପାର୍ଶ୍ୱଦେବତା ଭାବେ ତାଂଙ୍କ ମୂର୍ତ୍ତି ସ୍ଥାନିତ ହୋଇଥାଏ। ଏଣୁ ଏଠାରେ ବିଭିନ୍ନ ସମୟ ଓ ଶୈଳୀର ଗଣେଶମୂର୍ତ୍ତି ପର୍ଯ୍ୟାପ୍ତ ପରିମାଣରେ ଦେଖିବାକୁମିଳେ। ଭାରତର ସର୍ବତ୍ର ଅତିପ୍ରାଚୀନ ଗଣେଶ ପ୍ରତିମା ଦ୍ୱିଭୁଜ ଅଟନ୍ତି। ଭୁବନେଶ୍ୱରର ଲିଙ୍ଗରାଜମନ୍ଦିର ପରିସରରେ ଥିବା ଗଣେଶମନ୍ଦିର ମଧ୍ୟର ଅର୍ଚ୍ଚାବିଗ୍ରହ ଏବଂ ମନ୍ଦିର ଦେହର ଏକ ପାର୍ଶ୍ୱଦେବତା ଗଣେଶ ଦ୍ୱିଭୁଜ ଅଟନ୍ତି। ଏହି ଦୁଇ ମୂର୍ତ୍ତିରେ କଳାଶୈଳୀ ଅତ୍ୟନ୍ତ ସରଳ ତଥା ଅପରିପକ୍ୱ ହୋଇଥିବାରୁ ଏହା ଅତି ପ୍ରାଚୀନବୋଲି ବିଶ୍ୱାସ କରାଯାଏ। ଏହାର ପରବର୍ତ୍ତୀ ପର୍ଯ୍ୟାୟ ଅର୍ଥାତ୍, ଖ୍ରୀ:୬ଷ-୭ମ ଶତାବ୍ଦୀଠାରୁ ନିର୍ମିତ ମନ୍ଦିର ମୂର୍ତ୍ତିକଳାରେ ଗଣେଶ ସାଧାରଣତଃ ଚର୍ତୁର୍ଭୁଜ। ତେବେ, ଅଧିକାଂଶ ନୃତ୍ୟ ଗଣେଶ ଓ କେତେକ ସ୍ୱତନ୍ତ୍ର ଗଣେଶ ପ୍ରତିମା ବହୁଭୁଜ ବିଶିଷ୍ଟ ଅଟନ୍ତି। ଓଡ଼ିଶାର ଗଣେଶ ପ୍ରତିମାଗୁଡ଼ିକ ସ୍ଥୂଳତଃ ତିନିଶ୍ରେଣୀରେ ବିଭକ୍ତ କରାଯାଇପାରେ। ଯଥା: ଆସନମୂର୍ତ୍ତି (ଏହା ଦୁଇପ୍ରକାର, ଅର୍ଦ୍ଧପରାୟଣିକ ଓ ଲଳିତାସନ), ସ୍ଥାନକ ବା ଦଣ୍ଡାୟମାନ ମୂର୍ତ୍ତି ଏବଂ ନୃତ୍ୟମୂର୍ତ୍ତି।

## ଗଣେଶ: ଆସନମୂର୍ତ୍ତି

ପ୍ରଥମ ପର୍ଯ୍ୟାୟ ଅର୍ଥାତ୍ ଖ୍ରୀ:୬ଷ-୮ମ ଶତାବ୍ଦୀ ମଧ୍ୟରେ ଓଡ଼ିଶାରେ ଗଣେଶଙ୍କ ଅର୍ଦ୍ଧପରାୟଣିକ ଭଙ୍ଗୀରେ ଆସନ ଗ୍ରହଣ କରିଥିବା ମୂର୍ତ୍ତିଗୁଡ଼ିକ ଲୋକପ୍ରିୟ ହୋଇଥିଲା। ଏହି ପ୍ରକାର ଭଙ୍ଗୀରେ ସେ ଦକ୍ଷିଣଜାନୁ ଭୂମି ଉପରେରଖି, ବାମଜାନୁ ଟେକି, ସାଧାରଣତଃ ଖୁରା କିମ୍ବା ସିଂହମୂର୍ତ୍ତି ଯୁକ୍ତ କାଷ୍ଠଆସନ ଉପରେ ବସିଥାଆନ୍ତି। ଅଳ୍ପ କେତେକ ସ୍ଥଳେ ଏହାର ବିପରୀତ ଭଙ୍ଗୀରେ ବସିଥିବା ମଧ ଦେଖାଯାଏ। ଭୁବନେଶ୍ୱର ସମେତ ଉପକୂଳ ଅଞ୍ଚଳର ଅଧିକାଂଶ ଏହି ପ୍ରକାର ଗଣେଶଙ୍କ ଚର୍ତୁର୍ଭୁଜରେ ଜପମାଳା, ଚମ୍ପକପୁଷ୍ପ, କୁଠାର କିମ୍ବା ପରଶୁ ଏବଂ ଲଡୁକପାତ୍ର ଦେଖିବାକୁ ମିଳେ। ପରଶୁ ଓ ଲଡୁକପାତ୍ର ବାମହସ୍ତ ଦ୍ୱୟରେ ରହୁଥିବାବେଳେ କେତେକସ୍ଥଳେ ଦକ୍ଷିଣହସ୍ତ ଦ୍ୱୟର ଜପମାଳା ଓ ଚମ୍ପକପୁଷ୍ପର ସ୍ଥାନ ପରିବର୍ତ୍ତନ ହୋଇଥାଏ। କେତେକ ଏହି ପୁଷ୍ପକୁ 'କେତକୀ'ବୋଲି କହିଥାଆନ୍ତି। ତେବେ, କେତକୀଫୁଲର ଆକାର ପ୍ରକାର ପରିବର୍ତ୍ତେ ଏଗୁଡ଼ିକରେ ଚମ୍ପକର ଆକାର ସ୍ପଷ୍ଟହୁଏ। ଗଣେଶଙ୍କ ମୁଖ୍ୟ ଦୁଇହସ୍ତ ତଳକୁ ରହୁଥିବାବେଳେ ଅନ୍ୟ ଦୁଇହସ୍ତ ଉପରକୁ ଥାଏ। ଉପର ଦକ୍ଷିଣହସ୍ତରେ ଜପମାଳା, ତଳହସ୍ତରେ ଚମ୍ପକପୁଷ୍ପ, ଦକ୍ଷିଣ ଉପର ହସ୍ତରେ ପରଶୁ ଓ ବାମହସ୍ତରେ ଲଡୁକପାତ୍ର ଧାରଣ କରିଥିବା ପ୍ରତିମା ଭୁବନେଶ୍ୱରର ପର୍ଶୁରାମେଶ୍ୱର ମନ୍ଦିର, ପଣ୍ଡିମେଶ୍ୱର, ମାର୍କଣ୍ଡେଶ୍ୱର, ମେଘେଶ୍ୱରମନ୍ଦିର ପରିସର ସମେତ ଗଞ୍ଜାମର ବଡ଼ଗାଁ, ମହାନଦୀ ଟାପୁର ସିଂହନାଥ ଓ ବଲ୍କକୋଟର ଶିବମନ୍ଦିର ଗାତ୍ରରେ ରହିଛି। ଏହି ପ୍ରକାର ଦୁଇଟି ପ୍ରତିମା ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ମଧ ଦେଖିବାକୁମିଳେ। ଏହି ଶୈଳୀର କେତୋଟି ମଧ୍ୟଯୁଗୀୟ ମୂର୍ତ୍ତି ଉତ୍ତରଓଡ଼ିଶାର ବେଣୁସାଗର, ସେରଗଡ ଓ ଦକ୍ଷିଣ ଉପାନ୍ତଅଞ୍ଚଳ,ମୁଖଲିଙ୍ଗମ୍‌ରେ ରହିଛି। ଆୟୁଧର ସ୍ଥାନ ସାମାନ୍ୟ ପରିବର୍ତ୍ତନ ଘଟି ଅର୍ଥାତ୍, ଉପର ଦକ୍ଷିଣହସ୍ତରେ ଚମ୍ପକପୁଷ୍ପ ଓ ତଳହସ୍ତରେ ଜପମାଳା ଧାରଣ କରିଥିବା ମୂର୍ତ୍ତି ଭୁବନେଶ୍ୱରର ବରୁଣେଶ୍ୱର, ଶିଶିରେଶ୍ୱର, ଉତ୍ତରେଶ୍ୱର ମନ୍ଦିରରେ ଏବଂ ଉତ୍ତରଓଡ଼ିଶାର ସେରଗଡ଼ ଓ କଳାହାଣ୍ଡି ଜିଲ୍ଲାର ବେଲଖଣ୍ଡିଠାରେ ଦେଖାଯାଏ। ଭଗ୍ନଦନ୍ତ ବା ଦନ୍ତଖଣ୍ଡ ଗଣେଶଙ୍କର ଏକ ମୁଖ୍ୟ ଆୟୁଧ ହେଲେହେଁ, ଉପରୋକ୍ତ ମୂର୍ତ୍ତିଗୁଡ଼ିକରେ ତା' ପରିବର୍ତ୍ତେ

ଚମ୍ପକପୁଷ୍ପ ଧାରଣ କରିଥିବା ଦେଖାଯାଏ। ଏହା ଓଡ଼ିଶାର ଆଞ୍ଚଳିକ ବୈଶିଷ୍ଟ୍ୟ କହିବା ସମୀଚୀନ ହେବ। ତେବେ, ଅର୍ଦ୍ଧପରାୟଣିକ ଭଙ୍ଗୀରେ ବସିଥିବା ଦକ୍ଷିଣଓଡ଼ିଶାର ଅନେକ ପ୍ରାଚୀନ ଗଣେଶ ପ୍ରତିମା ହସ୍ତରେ ଦନ୍ତଖଣ୍ଡ ଧାରଣ କରିଥିବା ଦେଖାଯାଏ। ଏହି ପ୍ରକାର କୃତି ବାଣପୁର ନିକଟ ବଙ୍କାଡ଼ର ଭଗ୍ନ ଶିବମନ୍ଦିର ପରିସର, ରାୟଗଡ଼ା ନିକଟ ପାଇକପଡ଼ାର ପାତାଳେଶ୍ୱର ମନ୍ଦିର, ପଦ୍ମପୁରର ଶିବମନ୍ଦିରରେ ରହିଛି। ଉପର ବର୍ଣ୍ଣିତ ଭୁବନେଶ୍ୱର,ବଙ୍କାଡ଼,ବଡ଼ଗାଁ ଓ ବଜ୍ରକୋଟର ମୂର୍ତ୍ତିଗୁଡ଼ିକ ପ୍ରାଚୀନ କାଳର। ଏହା ବ୍ୟତୀତ ଭୁବନେଶ୍ୱରର ଭାରତୀମଠ ମଧ୍ୟରେ ଅର୍ଦ୍ଧପରାୟଣିକ ଭଙ୍ଗୀରେ ବସିଥିବା ଏକ ବିଶାଳ ଗଣେଶ ପ୍ରତମା ରହିଛି। ଏହା ଅନୁଚ ଶୈଳୀରେ ଖୋଦିତ ହୋଇଥିବା ଏକ ପ୍ରାଚୀନ ମୂର୍ତ୍ତି। ଏହିସବୁ ମୂର୍ତ୍ତିରେ ଗଣେଶଙ୍କ ସହିତ ତା'ଙ୍କ ବାହନ ମୂଷିକ ଦେଖିବାକୁ ମିଳେନାହିଁ। ଭଦ୍ରକ ନିକଟ କାଭପୁର, ବାଲେଶ୍ୱର ନିକଟ ସେରଗଡ଼ ଓ ପାଇକପଡ଼ାରେ ଥିବା ପରବର୍ତ୍ତୀ ସମୟର କେତେକ ରଚନାରେ ମୂଷିକ ବାହନ ଦେଖିବାକୁମିଳେ।



ଗଣେଶ, ସ୍ଥାନକ ମୂର୍ତ୍ତି
ଖ୍ରୀ:୭ମ ଶତାବ୍ଦୀ, ରାଜ୍ୟସଂଗ୍ରହାଳୟ



ଗଣେଶ, (ବାମାବର୍ତ୍ତ)
ଖ୍ରୀ:୬ଷ-୭ମ ଶତାବ୍ଦୀ, ବଙ୍କାଡ଼

ପ୍ରାଚୀନ ଗଣେଶ ପ୍ରତିମାଗୁଡ଼ିକ ଉତ୍‌କୀର୍ଣ୍ଣଶୈଳୀ ସଂକୀର୍ଣ୍ଣ ଏବଂ ଅପରିପକ୍ୱ ହୋଇଥିବାବେଳେ ଖର୍ବକାୟ ମୂର୍ତ୍ତିର ମସ୍ତକରେ ସାଧାରଣତଃ କୁଞ୍ଚିତ କେଶର ପିଣ୍ଡାକାର ଊର୍ଦ୍ଧ୍ୱଶୋଭା, କପାଳଉପରକୁ ଅଳକାମୁକୁଟ, କର୍ଣ୍ଣରେ ଝରାଯୁକ୍ତ ଲୋଳୀ, ଗଳାରେ ରତ୍ନହାର, ବାହୁରେ ବାଜୁବନ୍ଧ, ହସ୍ତରେ କଙ୍କଣ ଓ ପାଦରେ ନୂପୁର ପରିଧାନ କରିଥିବା ଦେଖାଯାଏ। ଲମ୍ବୋଦର ଯୋଗୁଁ କଟିର ସ୍ୱଳ୍ପବସ୍ତ୍ର ଦୃଷ୍ଟିଗୋଚର ହୁଏନାହିଁ। ଏହା ବ୍ୟତୀତ ତା'ଙ୍କ ସ୍କନ୍ଧରେ ଯଜ୍ଞୋପବୀତ ଓ କେତେକ ସ୍ଥଳେ ଜାନୁ ଓ ଉଦରକୁ ବାନ୍ଧିରଖିଥିବା 'ନାଗ-ଯୋଗପଟ୍ଟ' ଦେଖିବାକୁମିଳେ। ଅଧିକାଂଶ ମୂର୍ତ୍ତିରେ ଗଣେଶଙ୍କ ଶୁଣ୍ଢ ଦକ୍ଷିଣାବର୍ତ୍ତ ହୋଇଥିବାବେଳେ କେତେକ ରଚନାରେ ବାମାବର୍ତ୍ତ ଶୁଣ୍ଢ ଦେଖାଯାଏ। ଏହି ପ୍ରକାର ମୂର୍ତ୍ତି ରାଜ୍ୟ ସଂଗ୍ରହାଳୟ, ବଙ୍କାଡ଼, ବେଲଖଣ୍ଡି, ପେଡ଼ାଗଡ଼ି, ଖିଚିଂ ଓ ପଶ୍ଚିମଓଡ଼ିଶାର

ବୈଦ୍ୟନାଥଠାରେ ରହିଛି। ମୂର୍ତ୍ତି ସହିତ ଥିବା ଅନ୍ୟାନ୍ୟ କୃତି ମଧ୍ୟରେ ଗଣେଶ ସାଧାରଣତଃ ଚୌକିଉଚ୍ଚର ଏକ ଆସନ ଉପରେ ବସିଥାଆନ୍ତି। କେତେକ ସ୍ଥଳେ ଏଥିରେ ଖୁରା ପରିବର୍ତ୍ତେ ସିଂହମୂର୍ତ୍ତି ସଂଯୋଗ ହୋଇଥାଏ। ଏହି ପ୍ରକାର ଆସନ ତଳେ ବଇଠି ଉପରେଥିବା ଏକ ପାତ୍ରରେ ବିଭିନ୍ନ ପ୍ରକାର ଫଳ ଏବଂ ଅନ୍ୟ ଏକ ବଇଠି ଉପରେ ଗଣେଶଙ୍କ ପ୍ରିୟଭୋଗ ଏକ ପଣସ ସ୍ଥାନିତ ହୋଇଥାଏ। କ୍ୱଚିତ୍ ରଚନାରେ ସେ ଭୂମିଉପରେ ବସିଥିବାବେଳେ କିଞ୍ଚିତ୍ ପରବର୍ତ୍ତୀ ସମୟର ରଚନାଗୁଡ଼ିକରେ ପଦ୍ମଉପରେ ଅର୍ଦ୍ଧପରାୟଣିକ ଭଙ୍ଗୀରେ ବସିଥାଆନ୍ତି। ପ୍ରାଚୀନ ମୂର୍ତ୍ତିଗୁଡ଼ିକର ପ୍ରଚ୍ଛଦରେ ସରଳ ପ୍ରଭାମଣ୍ଡଳର, ଦୁଇପାର୍ଶ୍ୱରେ କେତେକ ସ୍ଥଳେ ପଦ୍ମ ଓ ଅନ୍ୟ କେତେକ ସ୍ଥଳେ ଉଡ୍ଡୀୟମାନ ଗନ୍ଧର୍ବ ଓ ବିଦ୍ୟାଧରଙ୍କ ପିତୁଳା ଉତ୍କୀର୍ଣ୍ଣ ହୋଇଥିବା ଦେଖାଯାଏ।



ଗଣେଶ, (ଲଳିତାସନ ମୂର୍ତ୍ତି)
ଖ୍ରୀ: ୯ମ ଶତାବ୍ଦୀ, ମୁଖଲିଙ୍ଗମ୍, ଆନ୍ଧ୍ର



ଗଣେଶ, (ଲଳିତାସନ ମୂର୍ତ୍ତି)
ଦଶାଶ୍ୱମେଧ ଘାଟ, ଯାଜପୁର

ଖ୍ରୀଷ୍ଟୀୟ ୯ମ-୧୦ମ ଶତାବ୍ଦୀବେଳକୁ ଓଡ଼ିଶାରେ ଗଣେଶଙ୍କ ଲଳିତାସନ ମୂର୍ତ୍ତିଗୁଡ଼ିକ ଲୋକପ୍ରିୟ ହୋଇଥିଲା। ଏହି ଭଙ୍ଗୀରେ ସେ ଦକ୍ଷିଣପାଦ ତଳକୁ ଝୁଲାଇ, ବାମଜାନୁ ଓ ପାଦ ଆସନ ଉପରେ ରଖି ବସିଥିବା ଦେଖାଯାଏ। କେତେକ ସ୍ଥଳେ ବିଶ୍ୱପଦ୍ମ ଉପରେ ଓ ଅନ୍ୟ କେତେକ ସ୍ଥଳେ କୁଶନଆସନ ଉପରେ ସ୍ଥାନଗ୍ରହଣ କରିଥାଆନ୍ତି। ଏହିସବୁ ମଧ୍ୟଯୁଗୀୟ ମୂର୍ତ୍ତିଗୁଡ଼ିକର କଳାଶୈଳୀ ବିକଶିତ। ଗଣେଶଙ୍କ ଶରୀର ସୁଠାମ ଓ ଅଳଙ୍କରଣ ଉନ୍ନତ। ଏହି କୃତିଗୁଡ଼ିକରେ ପୂର୍ବର ଚମ୍ପକପୁଷ୍ପ ପରିବର୍ତ୍ତେ ତାଙ୍କ ହସ୍ତରେ ଦନ୍ତଖଣ୍ଡ ଦେଖିବାକୁମିଳେ। ଅର୍ଥାତ୍, ସେ ଦକ୍ଷିଣହସ୍ତ ଦ୍ୱୟରେ ଦନ୍ତଖଣ୍ଡ ଓ ଜପମାଳା ସହିତ ବରଦମୁଦ୍ରା ପ୍ରଦର୍ଶନ କରୁଥିବାବେଳେ ବାମହସ୍ତ ଦ୍ୱୟରେ ପରଶୁ ଓ ଲଡୁକପାତ୍ର ଧାରଣ କରିଥାଆନ୍ତି। ଏହି ପ୍ରକାର ମୂର୍ତ୍ତି ଯାଜପୁର, ପୁରୀର ମାର୍କଣ୍ଡେଶ୍ୱର ପୋଖରୀ ନିକଟ ତଥା ଭୁବନେଶ୍ୱରର ଲିଙ୍ଗରାଜମନ୍ଦିର ପରିସରରେ ଦେଖିବାକୁମିଳେ। ଜଗତସିଂହପୁର, ଅଲଣାହାଟ ନିକଟ ସଠଳପୁର, ପ୍ରାଚୀ ଅବବାହିକାର ଭିଲିଦେଉଳୀ ଓ ଭୁବନେଶ୍ୱର

ନିକଟ ଗାରଡ଼ିପାଞ୍ଚଣର ବୃଦ୍ଧନାଥ ମନ୍ଦିରର ଗଣେଶଙ୍କ ହସ୍ତରେ ପରଶୁଟି ଉପରକୁ ରହିବାପରିବର୍ତ୍ତେ ତାହା ନିମ୍ନ ମୁଖହୋଇ ରହିଛି । ସେ ତାଙ୍କ ମୁଖ୍ୟ ବାମହସ୍ତଟିକୁ ତା'ଉପରେ ଭରାଦେଇଛନ୍ତି । ଏହି ପ୍ରକାର କୃତିଗୁଡ଼ିକ ଖ୍ରୀ: ୧୧ଶ-୧୨ଶ ଶତାବ୍ଦୀର ଅଟେ । ଏହିସବୁ ଗଣେଶ ପ୍ରତିମାର ମସ୍ତକରେ ଜଟାମୁକୁଟ, ସ୍କନ୍ଧରେ ନାଗ-ଯଜ୍ଞୋପବୀତ ସମେତ ପୂର୍ବର ବସ୍ତାଳଙ୍କର ବିକଶିତ ଶୈଳୀରେ ଦେଖିବାକୁମିଳେ । ଏହି ସମସ୍ତ ମୂର୍ତ୍ତି ସହିତ ତା'ଙ୍କ ବାହନ ମୂଷିକ ରହିଛି । ପୂର୍ବବର୍ଣ୍ଣିତ ଯାଜପୁର, ଭୁବନେଶ୍ୱର, ଗାରଡ଼ିପାଞ୍ଚଣ ତଥା କିଷନପୁରର ବିକଶିତ ମୂର୍ତ୍ତିଗୁଡ଼ିକ ପ୍ରଚ୍ଛଦରେ ଦ୍ୱିଭଙ୍ଗ କିମ୍ୱା ତ୍ରିଭଙ୍ଗ ମକରତୋରଣ ରହିଥିବା ଦେଖାଯାଏ ।

ଓଡ଼ିଶାରେ ଗଣେଶଙ୍କ ସାଧାରଣ ଲଳିତାସନମୂର୍ତ୍ତି ବ୍ୟତୀତ କେତେକ ସ୍ୱତନ୍ତ୍ର ମୂର୍ତ୍ତି ମଧ୍ୟ ଦେଖାଯାଏ । ଏହା ମଧ୍ୟରେ ପୁରୀର ସିଦ୍ଧମହାବୀର ମନ୍ଦିରରେ ଥିବା ପଞ୍ଚମୁଖ, ଦଶଭୁଜ, ଶକ୍ତିଗଣପତି, କୋଣାର୍କର ସୂର୍ଯ୍ୟମନ୍ଦିରରୁ ଅପସାରିତ ହୋଇ ବ୍ରିଟିଶ୍ ସଂଗ୍ରହାଳୟରେ ଥିବା ଲକ୍ଷ୍ମୀଗଣପତି ମୂର୍ତ୍ତି ଉଲ୍ଲେଖଯୋଗ୍ୟ । ଏହି କୃତିଗୁଡ଼ିକ ମଧ୍ୟରୁ ସିଦ୍ଧମହାବୀର ମନ୍ଦିରର ପ୍ରତିମାଟି ପ୍ରାଚୀନବୋଲି ଜଣାଯାଏ । ଏଥିରେ ଗଣେଶ ଏକ କମନୀୟ ସିଂହାସନ ଉପରେ ଲଳିତାସନରେ ବସିଥିବାବେଳେ ଆସନ ତଳେ ଏକ ପୂର୍ଣ୍ଣଘଟ ଏବଂ ତା'ଙ୍କ ମସ୍ତକର ପ୍ରଚ୍ଛଦରେ ଏକ ବୃକ୍ଷର ଆଭାସ ରହିଛି । ତା'ଙ୍କ ଦଶଭୁଜରୁ ଦକ୍ଷିଣମୁଖ୍ୟ ହସ୍ତରେ ଲଡ଼ୁକ କିମ୍ୱା ବେଲ ଏବଂ ଅନ୍ୟ ହସ୍ତଗୁଡ଼ିକରେ ଯଥାକ୍ରମେ: ଚକ୍ର,ଶର,ତ୍ରିଶୂଳ ଓ ଦନ୍ତଖଣ୍ଡ ଧାରଣ କରିଥିବାବେଳେ ବାମପାର୍ଶ୍ୱର ମୁଖ୍ୟହସ୍ତରେ ଘଣ୍ଟା ଏବଂ ଅନ୍ୟ ହସ୍ତଗୁଡ଼ିକରେ ଗଦା, ଅଙ୍କୁଶ, ପୁଷ୍ପ ଓ ଚକ୍ର ଧାରଣ କରିଛନ୍ତି । ଏହି ଦେବତାଙ୍କ ବାମଜାନୁରେ ତା'ଙ୍କ ଶକ୍ତି ସିଦ୍ଧୀ ଆସନ ଗ୍ରହଣ କରିଛନ୍ତି । ଗଣେଶଙ୍କ ପଞ୍ଚମସ୍ତକରେ ମୁକୁଟ ଓ ଶରୀରରେ ବିଭିନ୍ନ ବସ୍ତାଳଙ୍କାର ସହିତ ନାଗ-ଯଜ୍ଞୋପବୀତ ଶୋଭାପାଉଛି । ମୂର୍ତ୍ତିର ଉତ୍କୀର୍ଣ୍ଣ ଶୈଳୀ ରୁକ୍ଷ ହେଲେହେଁ ବଳିଷ୍ଠ । କଳାଶୈଳୀରୁ ଏହା ମଧ୍ୟଯୁଗୀୟ କୃତି ହୋଇଥିବା ସମ୍ଭବ । ଏହି ଅର୍ଚ୍ଚାବିଗ୍ରହଟିର ଉଚ୍ଚତା ପ୍ରାୟ ୦.୯୦ ମିଟର ଅଟେ ।



ଶକ୍ତି ଗଣପତି, (ଲଳିତାସନ ମୂର୍ତ୍ତି)
ସିଦ୍ଧମହାବୀର ମନ୍ଦିର, ପୁରୀ

ବ୍ରିଟିଶ୍ ସଂଗ୍ରହାଳୟରେ ଥିବା ସୂର୍ଯ୍ୟମନ୍ଦିରର ଲକ୍ଷ୍ମୀଗଣପତି ପ୍ରତିମାର କଳାଶୈଳୀ ଉଚ୍ଚକୋଟୀର। ଏହି କମନୀୟ ପ୍ରତିମାଟି ପଞ୍ଚମୁଖ ଓ ଦଶଭୁଜ ବିଶିଷ୍ଟ ହେଲେହେଁ ଏହାର ମୂର୍ତ୍ତିତତ୍ତ୍ୱ ଭିନ୍ନ। ଏଠାରେ ଗଣେଶ ମୁଖ୍ୟ ଦକ୍ଷିଣହସ୍ତରେ ଏକ ବେଲ ଧାରଣ ସହିତ ବରଦମୁଦ୍ରା ପ୍ରଦର୍ଶନ କରୁଥିବାବେଳେ ସେହିପାର୍ଶ୍ୱର ଅନ୍ୟ ହସ୍ତଗୁଡ଼ିକରେ ରହିଛି; ଚକ୍ର,ତ୍ରିଶୂଳ, ଶର ଓ ଅଙ୍କୁଶ। ସେହିପରି ବାମପାର୍ଶ୍ୱର ମୁଖ୍ୟହସ୍ତରେ ଦନ୍ତଖଣ୍ଡ ଧାରଣ କରିଥିବାବେଳେ ଅନ୍ୟ ହସ୍ତଗୁଡ଼ିକରେ ରହିଛି ପଦ୍ମ, ଧାନକେଣ୍ଡା, ନାଗପାଶ ଓ ଆଖୁ ଏବଂ ଶୁଣ୍ଢରେ ଧାରଣ କରିଛନ୍ତି ଏକ ଲଡୁକ। ଏଠାରେ ଲକ୍ଷ୍ମୀ ଏକ ଲମ୍ବ ବୃନ୍ତଯୁକ୍ତ ପଦ୍ମଧାରଣକରି ଗଣେଶଙ୍କ ବାମଜାନୁ ଉପରେ ଆସନ ଗ୍ରହଣ କରିଛନ୍ତି। ଗଣେଶଙ୍କ ପଞ୍ଚମସ୍ତକରେ ଜଟାମୁକୁଟ, ଉଦର ଉପରେ ନାଗ-ଯଜ୍ଞୋପବୀତ ସହ ଶରୀରରେ ବିଭିନ୍ନ ସୁନ୍ଦର ବସ୍ତ୍ରାଳଙ୍କାର ଶୋଭାପାଉଛି। ଗଣେଶ ବସିଥିବା ସିଂହ ଓ ଗଣଯୁକ୍ତ ସିଂହାସନ ତଳେ, ମଧ୍ୟଭାଗରେ ଥିବା ଏକ ପତ୍ର, ପୁଷ୍ପଗୁଚ୍ଛର ଦୁଇପାର୍ଶ୍ୱରେ ତା'ଙ୍କ ବାହନ ମୂଷିକ ଓ ଲକ୍ଷ୍ମୀଙ୍କ ବାହନ ହସ୍ତୀର ପିତୁଳା ସ୍ଥାନିତ ହୋଇଛି। ମୂର୍ତ୍ତିର ପ୍ରଚ୍ଛଦ, ଉର୍ଦ୍ଧ୍ୱଭାଗର ତ୍ରିଭଙ୍ଗ ତୋରଣ ଉପରେ ଏକ କମନୀୟ ପଲ୍ଲବିତ ବୃକ୍ଷ ଉତ୍‌କୀର୍ଣ୍ଣ ହୋଇଥିବାବେଳେ ଏହାର ଦୁଇ ପାର୍ଶ୍ୱରେ ଉଡ୍ଡୀୟମାନ ବିଦ୍ୟାଧରଙ୍କ ପିତୁଳା ଦେଖିବାକୁମିଳେ। ଧୂସରିଆ, ନୀଳମୁଗୁନୀ ପଥରରେ ନିର୍ମିତ ଏହି କୃତିଟିର ଉଚ୍ଚତା ପ୍ରାୟ ୧.୩୦ ମିଟର। ଏହା କୋଣାର୍କ ସୂର୍ଯ୍ୟମନ୍ଦିର ସମୟର ଅର୍ଥାତ୍, ଖ୍ରୀ: ୧୩ଶ ଶତାବ୍ଦୀର କୃତି ଅଟେ। ମୂର୍ତ୍ତିଟି ଓଡ଼ିଶା କାହିଁକି ଭାରତୀୟ ମୂର୍ତ୍ତିକଳାର ଏକ ଉତ୍‌କୃଷ୍ଟ ନମୁନା।

## ଗଣେଶ: ସ୍ଥାନକମୂର୍ତ୍ତି

ଗଣେଶଙ୍କ ଦଣ୍ଡାୟମାନ ଭଙ୍ଗୀର ପ୍ରାଚୀନ ମୂର୍ତ୍ତି କ୍ୱଚିତ୍ ରହିଥିବାବେଳେ ମଧ୍ୟଯୁଗ ଓ ପରବର୍ତ୍ତୀ ସମୟରେ ଏହି ପ୍ରକାର ରଚନାର ସଂଖ୍ୟା ବୃଦ୍ଧିପାଇଛି। ପୂର୍ବଭଳି ଏହି ସମସ୍ତ ମୂର୍ତ୍ତିରେ ଚର୍ତୁଭୁଜ ଗଣେଶ ସାଧାରଣତଃ ବିଶ୍ୱପଦ୍ମ ଆସନ ଉପରେ ସାମନ୍ୟ ତ୍ରିଭଙ୍ଗ କିମ୍ବା ସାବଲୀଳଭଙ୍ଗରେ ଦଣ୍ଡାୟମାନ ହୋଇଥାଆନ୍ତି। ଏଥିରେ ଦକ୍ଷିଣ ଉପର ହସ୍ତରେ ଦନ୍ତଖଣ୍ଡ ଓ ତଳହସ୍ତରେ ଜପମାଳା ସହିତ ବରଦମୁଦ୍ରା ପ୍ରଦର୍ଶନ କରିଥିବାବେଳେ ବାମମୁଖ୍ୟ ହସ୍ତରେ ଲଡୁକପାତ୍ର ଓ ଅନ୍ୟ ହସ୍ତଟି ନିମ୍ନମୁଖୀ କୁଠାର ବା ପରଶୁ ଉପରେ ରହିଥାଏ। ବିକଶିତ କଳାଶୈଳୀର ଏହି ପ୍ରକାର ମୂର୍ତ୍ତିର ଶରୀରରେ ପାରମ୍ପରିକ ବସ୍ତ୍ରାଳଙ୍କାର, ପ୍ରଚ୍ଛଦରେ ମକରତୋରଣ, ଗନ୍ଧର୍ବ, ଅପସ୍ୱରା ଏବଂ ନିମ୍ନରେ ମୂଷିକବାହନ ଦେଖିବାକୁମିଳେ। ଏହି ପ୍ରକାର ରଚନା ଭୁବନେଶ୍ୱରର ବୈତାଳଦେଉଳ, ଲିଙ୍ଗରାଜମନ୍ଦିର ପରିସର ଓ ମନ୍ଦିରର ପାର୍ଶ୍ୱଦେବତା, କେଦାରେଶ୍ୱର, ସିଦ୍ଧେଶ୍ୱର, ଯମେଶ୍ୱର ତଥା ରାମେଶ୍ୱରମନ୍ଦିରରେ ରହିଛି। ଭୁବନେଶ୍ୱର ବାହାର ପ୍ରାଚୀନଦୀ ଅବବାହିକାର ଚଉରାଶି, ପ୍ରତାପରୁଦ୍ରପୁର, ସୋମେଶ୍ୱର ସମେତ ଧର୍ମଶାଳା ଚଣ୍ଡଦ୍ୱାରର ଉତ୍ତରେଶ୍ୱର, ବୁଢ଼ାଲିଙ୍ଗ, ଖୋର୍ଦ୍ଧା ଜିଲ୍ଲାର ଟାଙ୍ଗି, ଗାରେଡ଼ିପାଞ୍ଚଣ, ବୀରପ୍ରତାପରୁଦ୍ରପୁର, ବୟାଳିଶିବାଟୀ, ଖେଲାର, ସାଲେପୁର ନିକଟ ବଟେଶ୍ୱର, ନରସିଂହପୁର ନିକଟ ଚମ୍ପେଶ୍ୱର ଓ ଖିଂଚିରେ ଦେଖିବାକୁମିଳେ। ରାଜରାଣୀମନ୍ଦିର ନିକଟ ମାଟିତଳୁ ଉଦ୍ଧାର କରାଯାଇଥିବା ଖ୍ରୀ: ୧୨ଶ ଶତାବ୍ଦୀର ଏକ ସୁନ୍ଦର ଗଣେଶ ପ୍ରତିମା ରାଜ୍ୟ ସଂଗ୍ରହାଳୟରେ ରହିଛି। ଏହା ମଧ୍ୟରେ ଲିଙ୍ଗରାଜଙ୍କ ପାର୍ଶ୍ୱଦେବତା ଗଣେଶ ପ୍ରତିମାଟି ଉଚ୍ଚକୋଟୀର କଳାଶୈଳୀର ଅଟେ। ଏଥିରେ ଉତ୍କଳୀୟ ମୂର୍ତ୍ତିକଳାର ସମସ୍ତ ବୈଶିଷ୍ଟ୍ୟ ବିଦ୍ୟମାନ। କଳା ମୁଗୁନିପଥରରେ ନିର୍ମିତ ମସୃଣ କୃତିଟିର ଉଚ୍ଚତା ପ୍ରାୟ ୨.୯୦ମିଟର ଓ ପ୍ରସ୍ଥ ପ୍ରାୟ ୧.୪୦ମିଟର ଅଟେ।



ପ୍ରାଚୀନ ଗଣେଶମୂର୍ତ୍ତି (ସ୍ଥାନକ ଭଙ୍ଗୀ)
ଲିଙ୍ଗରାଜ ମନ୍ଦିର ପରିସର, ଭୁବନେଶ୍ୱର



ଗଣେଶ, ମଧ୍ୟଯୁଗୀୟ ମୂର୍ତ୍ତି
ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର

ଲିଙ୍ଗରାଜମନ୍ଦିର ପରିସରରେ ଥିବା ସ୍ଥାନକ ଭଙ୍ଗୀର ଏକ ପ୍ରାଚୀନ ଗଣେଶ ମୂର୍ତ୍ତି ଉଲ୍ଲେଖଯୋଗ୍ୟ। ବୋଧହୁଏ କୃତିଟି କୌଣସି ଏକ ପ୍ରାଚୀନ ମନ୍ଦିରର ପାର୍ଶ୍ୱଦେବତା ଭାବେ ସ୍ଥାନିତ ହୋଇଥିଲା। ଏହି ରଚନାରେ ଗଣେଶ ଏକ ସାବଲୀଳ ଭଙ୍ଗୀରେ ବାମମୁଖହୋଇ ଦଣ୍ଡାୟମାନ ହୋଇଛନ୍ତି। ସେ ଚର୍ତୁଭୁଜରୁ ମୁଖ୍ୟ ଦକ୍ଷିଣହସ୍ତରେ ଜପମାଳା ଧାରଣକରି ଅଭୟମୁଦ୍ରା ପ୍ରଦର୍ଶନ କରୁଥିବାବେଳେ ବାମହସ୍ତରେ ଲଡୁକପାତ୍ର ରହିଛି। ଅନ୍ୟ ଦୁଇ ହସ୍ତରେ ଯଥାକ୍ରମେ ପରଶୁ ଓ ଚମ୍ପକପୁଷ୍ପ ଦେଖିବାକୁମିଳେ। ପ୍ରାଚୀନ ଶୈଳୀର ବସ୍ତ୍ରାଳଙ୍କାର ମଧ୍ୟରେ, ତା'ଙ୍କ ଲଣ୍ଡିତ ମସ୍ତକରେ ପଦକଯୁକ୍ତ ଅଳକା, କର୍ଣ୍ଣରେ ଲୋଟୀ, ସ୍କନ୍ଧରେ ଯଜ୍ଞୋପବୀତ, ଉଦରରେ ଉଦରବନ୍ଧ, କଟିର ସ୍ୱଚ୍ଛ ବସ୍ତ୍ର ଉପରେ ମେଖଳା, ବାହୁରେ ବାଜୁବନ୍ଧ, ହସ୍ତରେ କଙ୍କଣ ଓ ପାଦରେ ନୂପୁର ରହିଛି। ସେ ଏକ ଆସନ ଉପରେ ଦଣ୍ଡାୟମାନ ହୋଇଥିବାବେଳେ ମସ୍ତକର ପ୍ରଚ୍ଛଦରେ ବୁଟିଯୁକ୍ତ ଚକ୍ରାକାର ପ୍ରଭାବଳୀ ଉତ୍କୀର୍ଣ୍ଣ ହୋଇଛି। ଏହା ବ୍ୟତୀତ ଦୁଇ ପାର୍ଶ୍ୱରେ ଦୁଇଗଣ ଯଥାକ୍ରମେ: ଲଡୁକପାତ୍ର ଓ ପଣସ ଧାରଣକରି ବସିଛନ୍ତି। ପ୍ରାଚୀନ ହେଲେହେଁ ଭାବପୂର୍ଣ୍ଣ କୃତିଟିର କଳାଶୈଳୀ ବଳିଷ୍ଠ। ଭୁବନେଶ୍ୱର ନିକଟ ବରିମୁଣ୍ଡ ଗ୍ରାମର ଲକ୍ଷେଶ୍ୱରମନ୍ଦିର ପରିସରରେ ଓ ମୁଖଲିଙ୍ଗମ୍‌ର ସୋମେଶ୍ୱରମନ୍ଦିରରେ ମଧ୍ୟ ଅନୁରୂପ କଳାଶୈଳୀର ଗଣେଶମୂର୍ତ୍ତି ଦେଖାଯାଏ। ଗତ କିଛିଦିନ ପୂର୍ବେ ବିନ୍ଦୁସାଗର କୂଳରୁ ପ୍ରାପ୍ତହୋଇଥିବା ଗୋଟିଏ ପ୍ରତିମାରେ ଗଣେଶ ଏକ ସାବଲୀଳ ଗମନ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି। ଏହା ଏକ ସ୍ୱତନ୍ତ୍ର ଶୈଳୀର କୃତି କହିଲେ ଅତ୍ୟୁକ୍ତି ହେବନାହିଁ। ମୂର୍ତ୍ତିଟି ବର୍ତ୍ତମାନ ଅନନ୍ତବାସୁଦେବ ମନ୍ଦିରର ପ୍ରସାଦମଣ୍ଡପ ପରିସରରେ ରଖାଯାଇଛି।

ସ୍ଥାନକ ବା ଦଣ୍ଡାୟମାନ ଭଙ୍ଗୀର ଏହିସବୁ ସାଧାରଣ ମୂର୍ତ୍ତି ବ୍ୟତୀତ ସାମାନ୍ୟ ବ୍ୟତିକ୍ରମଥିବା କେତେକ ରଚନା ମଧ୍ୟ ଦେଖିବାକୁମିଳେ। ଭୁବନେଶ୍ୱର ଉତ୍ତରେଶ୍ୱର ମନ୍ଦିର, ପାର୍ଶ୍ୱଦେବତା ଗଣେଶ

ଏକ ଭିନ୍ନ ଭଙ୍ଗୀରେ ଦଣ୍ଡାୟମାନ ହୋଇଥିବାବେଳେ ଦକ୍ଷିଣହସ୍ତ ଦ୍ୱୟରେ ଜପମାଳା ଓ ପରଶୁ ଏବଂ ବାମହସ୍ତ ଦ୍ୱୟରେ ଚମ୍ପକ ଓ ଲଡୁକପାତ୍ର ଧାରଣକରିଥିବା ଦେଖାଯାଏ। ତା'ଙ୍କ ଦକ୍ଷିଣପାର୍ଶ୍ୱରେ ଜଣେ ସେବକ ଭୋଗଧରି ଦଣ୍ଡାୟମାନ ହୋଇଛନ୍ତି। ଏହାଏକ ପ୍ରାଚୀନ କୃତି। ପୁରୀଜିଲ୍ଲା ବରାଳ-ବାଲୁଙ୍କେଶ୍ୱର ମନ୍ଦିରର ଗଣେଶ ମୂଷିକବାହନ ଉପରେ ଉଭାହୋଇଥିବା ଦେଖାଯାଏ। ଏହାଏକ ମଧ୍ୟଯୁଗୀୟ କୃତି। କିଶନପୁର, ଚାଟେଶ୍ୱରମନ୍ଦିରର ପାର୍ଶ୍ୱଦେବତା ଗଣେଶଙ୍କ ଦକ୍ଷିଣ ଦୁଇହସ୍ତରେ ଯଥାକ୍ରମେ: ଲଡୁକପାତ୍ର ଓ ଜପମାଳା ଏବଂ ବାମଦୁଇ ହସ୍ତରେ ଦନ୍ତଖଣ୍ଡ ଓ ନିମ୍ନମୁଖୀ ପରଶୁ ରହିଛି। ପୂର୍ବୋକ୍ତ ଭଉରେଶ୍ୱର ମନ୍ଦିରର ଗଣେଶଙ୍କ ଅନୁରୂପ ଏଠାରେ ମଧ ଦକ୍ଷିଣପାର୍ଶ୍ୱରେ ଭୋଗ ଧାରଣକରି ଜଣେ ସେବକ ଉଭା ହୋଇଛନ୍ତି। ଏହା ଏକ ପରବର୍ତ୍ତୀ ସମୟର କୃତି।

## ଗଣେଶ: ନୃତ୍ୟମୂର୍ତ୍ତି

ଗଣେଶଙ୍କ ନୃତ୍ୟଭଙ୍ଗୀର ମୂର୍ତ୍ତିଗୁଡ଼ିକ ମଧ୍ୟଯୁଗ ତଥା ପରବର୍ତ୍ତୀ ସମୟରେ ଲୋକପ୍ରିୟ ହୋଇଥିଲା। ତେବେ, ଅଳ୍ପକେତେକ ପ୍ରାଚୀନ ନୃତ୍ୟମୂର୍ତ୍ତି ମଧ ଦେଖିବାକୁମିଳେ। ଏହି ପ୍ରାଚୀନ କୃତିଗୁଡ଼ିକ ସାଧାରଣତଃ ଚର୍ତୁଭୁଜ ଏବଂ ଏଥିରେ ନୃତ୍ୟର ଆଭାସ ମାତ୍ର ରହିଥାଏ। କିନ୍ତୁ, ମଧ୍ୟଯୁଗ ଓ ପରବର୍ତ୍ତୀକାଳୀନ ରଚନାଗୁଡ଼ିକରେ ନୃତ୍ୟର ଭଙ୍ଗୀ ସ୍ପଷ୍ଟ, ଛନ୍ଦମୟ ଓ ସୁନ୍ଦର। ସାଧାରଣତଃ ଏହି ପ୍ରକାର ଷଡ଼ଭୁଜ କିମ୍ୱା ଅଷ୍ଟଭୁଜ ମୂର୍ତ୍ତିଗୁଡ଼ିକରେ ସେ ମସ୍ତକ ଉପରେ ଉତ୍ତୋଳିତ ଧନୁ ଆକାରରେ ସର୍ପ ଧାରଣକରି ଅନ୍ୟ ହସ୍ତଗୁଡ଼ିକରେ ନିଜର ସାଧାରଣ ଆୟୁଧ ଧାରଣ ସହ ନୃତ୍ୟମୁଦ୍ରା ପ୍ରଦର୍ଶନ କରିଥାଆନ୍ତି। ଏହି ସମୟରେ ତା'ଙ୍କ ଦୁଇପାଦ ମଧ ନୃତ୍ୟ ଭଙ୍ଗୀରେ ଥାଏ। ଅଧିକାଂଶ ସ୍ଥଳେ ଗଣେଶ ବିଶ୍ୱପଦ୍ମ ଉପରେ କିମ୍ବା ମୂଷିକ ବାହନ ଉପରେ ନୃତ୍ୟ କରୁଥିବାବେଳେ ଅଳ୍ପକେତେକ ସ୍ଥାନରେ ପୀଠ କିମ୍ବା ଭୂମିଉପରେ ନୃତ୍ୟରତଥିବା ଦେଖାଯାଏ। ଗଣେଶଙ୍କ ଏହି ନୃତ୍ୟଭଙ୍ଗୀ ଶିବଙ୍କ ତାଣ୍ଡବ ସହିତ ବହୁଭାବରେ ସମତା ରକ୍ଷାକରେ।



ନୃତ୍ୟ ଗଣେଶ, ଖିଚିଂ, ମୟୂରଭଞ୍ଜ
ମଧ୍ୟଯୁଗୀୟ ମୂର୍ତ୍ତି



ନୃତ୍ୟ ଗଣେଶ, କୋଶଳେଶ୍ୱର ମନ୍ଦିର,
କେନ୍ଦୁଝର ଜିଲ୍ଲା

ଦଣ୍ଡାୟମାନ ଅବସ୍ଥାରେ ସାମାନ୍ୟ ନୃତ୍ୟଭଙ୍ଗୀ ପ୍ରଦର୍ଶନ କରୁଥିବା ପ୍ରାଚୀନ ଚର୍ତୁଭୁଜ ଗଣେଶମୂର୍ତ୍ତି ମୁଖଲିଙ୍ଗମ୍‌ର ମଧୁକେଶ୍ୱର ମନ୍ଦିର ଓ ବଲାଙ୍ଗୀର ନିକଟ ବୈଦ୍ୟନାଥର କୋଶଳେଶ୍ୱର ମନ୍ଦିରରେ ରହିଛି । ସାକ୍ଷୀଗୋପାଳ ନିକଟ ଅଳଗୁମ୍‌ର ଏକ କୃତିରେ ନୃତ୍ୟଭଙ୍ଗୀ ସ୍ପଷ୍ଟ ହୋଇଥିବା ଏକ ଚର୍ତୁଭୁଜ ଗଣେଶ ପ୍ରତିମା ଦେଖିବାକୁମିଳେ । ଏଥିରେ ଗଣେଶ ମସ୍ତକ ଉପରେ ନାଗଧାରଣ କରିଥିବା ଦେଖାଯାଏ ନାହିଁ ।

ନୃତ୍ୟବିତ୍‌ମାନଙ୍କ ମତରେ ଓଡ଼ିଶାର ନୃତ୍ୟଗଣେଶଙ୍କ ମୁଖ୍ୟ ଦୁଇହସ୍ତ 'ଗଜହସ୍ତ'ମୁଦ୍ରା ପ୍ରଦର୍ଶନ କରୁଥିବାବେଳେ ପାଦଦ୍ୱୟ ଲଳିତଭଙ୍ଗୀରେ ଥାଏ । ଏହି ଭାବରେ ପୀଠଉପରେ ନୃତ୍ୟକରୁଥିବା ଷଡ଼ଭୁଜ ନୃତ୍ୟଗଣେଶ ପ୍ରତିମା ଭୁବନେଶ୍ୱର ପାପନାଶିନୀ ମନ୍ଦିର ଓ ରାୟଗଡ଼ା ନିକଟ ପାଇକପଡ଼ାର ପାତାଳେଶ୍ୱର ମନ୍ଦିରରେ ରହିଛି । ବିଶ୍ୱପଦ୍ମ ଉପରେ ନୃତ୍ୟରତ ପ୍ରତିମା ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ପରିସର, ବ୍ରହ୍ମେଶ୍ୱର ମନ୍ଦିର ପରିସର ସମେତ ଚମ୍ପେଶ୍ୱର, ଆରାହାଟ ଓ ମଣିନାଗେଶ୍ୱର ମନ୍ଦିରରେ ଦେଖିବାକୁମିଳେ । ମୂଷିକବାହନ ଉପରେ ନୃତ୍ୟ କରୁଥିବା ଗଣେଶ କେନ୍ଦୁଝରର କୋଶଳେଶ୍ୱର, ବାଣପୁରର ଦକ୍ଷପ୍ରଜାପତି ତଥା କିଷନ୍‌ପୁରର ଘଟେଶ୍ୱର ମନ୍ଦିରରେ ଦେଖାଯାଏ । ଏହା ମଧ୍ୟରେ ମଣିନାଗେଶ୍ୱର ଓ ବ୍ରହ୍ମେଶ୍ୱର ମନ୍ଦିରର ମୂର୍ତ୍ତି ଷଡ଼ଭୁଜ ହୋଇଥିବାବେଳେ ଅନ୍ୟ ସମସ୍ତ ପ୍ରତିମା ଅଷ୍ଟଭୁଜ ଅଟନ୍ତି । ଅନେକସ୍ଥଳେ ଏଗୁଡ଼ିକର ହସ୍ତଗୁଡ଼ିକ ଭଗ୍ନ ହୋଇଥିବାରୁ ଆୟୁଧଗୁଡ଼ିକ ବିଷୟରେ ଜଣାଯାଏନାହିଁ । ଖ୍ରୀଷ୍ଟୀୟ ୯ମ-୧୦ମ ଶତାବ୍ଦୀ ଓ ତା'ର ପରବର୍ତ୍ତୀ ସମୟରେ ଭୁବନେଶ୍ୱରର ଅନେକ ଶିବମନ୍ଦିର ପାର୍ଶ୍ୱଦେବତାଭାବେ ଗଣେଶଙ୍କ ନୃତ୍ୟମୂର୍ତ୍ତି ସ୍ଥାନିତ ହୋଇଥିଲା । ତେବେ, ଏଗୁଡ଼ିକ ସ୍ଥାନାନ୍ତରିତ ହୋଇ ଦେଶବିଦେଶର ବିଭିନ୍ନ ସଂଗ୍ରହାଳୟକୁ ଚାଲିଯାଇଛି । ପଶ୍ଚିମଓଡ଼ିଶାର ପଦ୍ମପୁର ନିକଟ ପାଇକମାଳର ନୃସିଂହନାଥ ମନ୍ଦିର ପାଖ ପାହାଡ଼ର ଏକ ଶିଳାଉପରେ ଉତ୍‌କୀର୍ଣ୍ଣ ହୋଇଥିବା ନୃତ୍ୟ-ଗଣପତି ପ୍ରତିମାଟି ଏକ ବିଶାଳ କୃତି ଅଟେ ।



ପାହାଡ଼ ଉପରେ ଖୋଦିତ ନୃତ୍ୟ ଗଣେଶ ମୂର୍ତ୍ତି
ନୃସିଂହନାଥ ମନ୍ଦିର, ପାଇକମାଳ, ପଦ୍ମପୁର

ଅଧିକାଂଶ ସ୍ଥଳେ ଗଣେଶଙ୍କ ଶୁଣ୍ଢ 'ଦକ୍ଷିଣାବର୍ତ୍ତ' ଅର୍ଥାତ୍ ଦକ୍ଷିଣଦିଗକୁ ବକ୍ରହୋଇଥିବା ଦେଖାଯାଏ । କିନ୍ତୁ, ବୈଦନାଥ, ପେଡ଼ାଗଡ଼ି, ଖିଚିଂ, ବେଲଖଣ୍ଡି, ବଙ୍କାଡ଼ ମୁଖଲିଙ୍ଗମ୍ ଏବଂ ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ଏକ ରଚନାରେ ତା'ଙ୍କ 'ବାମାବର୍ତ୍ତ' ଶୁଣ୍ଢ ଦେଖିବାକୁମିଳେ । କେତେକ ବିଦ୍ୱାନଙ୍କ ମତରେ ଏହି ରଚନାଗୁଡ଼ିକ ତନ୍ତ୍ରଶାସ୍ତ୍ର ଦ୍ୱାରା ପ୍ରଭାବିତ । ଗଣେଶଙ୍କ ଶିରଭୂଷା ମଧ କୌତୁହଳପୂର୍ଣ୍ଣ । କେତେକ ପ୍ରାଚୀନ ମୂର୍ତ୍ତିରେ ଲଣ୍ଡିତ ହସ୍ତୀମସ୍ତକରେ ପତଳା ଅଳକା ପରିଧାନ କରିଥିବା ଦେଖାଯାଉଥିବାବେଳେ ଅନ୍ୟକେତେକ

ସ୍ଥଳେ କୁଞ୍ଚିତ କେଶର ଊର୍ଦ୍ଧ୍ୱଗଭା କେଶବିନ୍ୟାସ ଦେଖାଯାଏ। ମଧ୍ୟଯୁଗ ଓ ପରବର୍ତ୍ତୀ ସମୟର ଅଧିକାଂଶ ମୂର୍ତ୍ତିର ମସ୍ତକରେ କରଣ୍ଡମୁକୁଟ ସଦୃଶ ସୁଉଚ୍ଚ ଜଟାମୁକୁଟ ରହିଛି। ତେବେ,ଉତ୍ତରଓଡ଼ିଶାର ଉପାନ୍ତ ଅଞ୍ଚଳ ବେଣ୍ଟସାଗରର ଗଣେଶଙ୍କ ମସ୍ତକରେ ରୁଦ୍ରାକ୍ଷ, ମୋତିମାଳା ଘେର ଉପରେ କୀର୍ତ୍ତିମୁଖର ଏକ ପଦକ ଦେଖିବାକୁମିଳେ। କଳିଙ୍ଗଶୈଳୀର ଏହି ଗଣପତି ପ୍ରତିମାଗୁଡ଼ିକ ସର୍ବଭାରତୀୟ ସ୍ତରରେ ଏକ ସ୍ୱାତନ୍ତ୍ର୍ୟ ରକ୍ଷାକରେ।

## ପୁରୀର କାଞ୍ଚିଗଣେଶ ବା ଭଣ୍ଡଗଣେଶ

ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ପରିସରରେ ମୁଖ୍ୟମନ୍ଦିରର ପଛପାଖରେ ଏକ ପୀଢ଼ଦେଉଳ ମଧ୍ୟରେ ଏହି ଗଣେଶ ପ୍ରତିମାଟି ରଖାଯାଇଛି। ରାଜା ପୁରୁଷୋତ୍ତମଦେବ ଏହାକୁ ଦକ୍ଷିଣଭାରତର କାଞ୍ଚିଠାରୁ ଏଠାକୁ ଆଣିଥିବା ଜଣାଯାଏ। ଚନ୍ଦ୍ରମତରେ ନିର୍ମିତ ଏହି ଗଣେଶ ପ୍ରତିମା ଚତୁର୍ଭୁଜ। ଉଲଗ୍ନ ଗଣେଶଙ୍କ ମୁଖ୍ୟଦୁଇ ହସ୍ତରୁ ଦକ୍ଷିଣହସ୍ତରେ ସେ ନିଜ ଲିଙ୍ଗକୁ ଧାରଣକରି ବାମହସ୍ତରେ ନିଜ ବାମଜାନୁ ଉପରେ ବସିଥିବା ଦେବୀଙ୍କୁ ଆଲିଙ୍ଗନକରି ଶୁଣ୍ଢରେ ତା'ଙ୍କ ଯୋନି ଶୋଷଣ କରୁଛନ୍ତି। ତା'ଙ୍କ ଅନ୍ୟଦୁଇ ହସ୍ତରେ ଯଥାକ୍ରମେ ଜପମାଳା ଓ ପରଶୁ ରହିଛି। କଳାମୁଗୁନି ପଥରରେ ନିର୍ମିତ ବିଶାଳ ମୂର୍ତ୍ତିଟିର ଉତ୍କୀର୍ଣ୍ଣଶୈଳୀ ସରଳ ଓ ନିରାଡ଼ମ୍ବର। ତତ୍ତ୍ୱବିତ୍‌ଙ୍କ ମତରେ ଏହା 'ଉଚ୍ଛିଷ୍ଟ-ଗଣପତି' ମୂର୍ତ୍ତି ଅଟେ।

# କାର୍ତ୍ତିକେୟ

ଶିବରେତ ସଂସ୍ପର୍ଶରେ ଆସିଥିବା ଷଡ଼୍‌କୃତିକାଙ୍କଠାରୁ ଜାତ ଷଡ଼ାନନ, କାର୍ତ୍ତିକେୟ। ତାରକାସୁରଙ୍କୁ ବଧକରି ତ୍ରିଲୋକକୁ ତା'ର ଅତ୍ୟାଚାରରୁ ରକ୍ଷାକରିବା ନିମନ୍ତେ ତା'ଙ୍କର ଆର୍ବିଭାବ। ଏଣୁ ସେ ଦେବସେନାପତି ଏବଂ ଯୁଦ୍ଧର ଦେବତା ହୋଇଥିବାରୁ ଯୁଦ୍ଧାସ୍ତ୍ରଗୁଡ଼ିକ ତାଙ୍କର ଆୟୁଧ। ତେବେ, ଏହା ମଧ୍ୟରେ 'ଶୂଳ' ମୁଖ୍ୟ ଅଟେ। ଶାସ୍ତ୍ର ମତରେ ସେ ଦ୍ୱିଭୁଜ, ଷଡ଼୍‌ଭୁଜ କିମ୍ବା ଅଷ୍ଟଭୁଜ ହୋଇପାରନ୍ତି। କାର୍ତ୍ତିକେୟଙ୍କ ବାହନ ମୟୂର ଏବଂ ଖେଳସାଥୀ କୁକ୍କୁଟ ଅଟେ। ପ୍ରାଚୀନ କାଳରେ ଉତ୍ତର ଏବଂ ଉତ୍ତରପଶ୍ଚିମ ଭାରତରେ କାର୍ତ୍ତିକେୟଙ୍କ ପୂଜାର ପ୍ରସାର ଘଟିଥିବାବେଳେ ମଧ୍ୟଯୁଗରେ ଦକ୍ଷିଣଭାରତରେ ବିଭିନ୍ନଭାବରେ ତା'ଙ୍କ ପୂଜା ଲୋକପ୍ରିୟ ହୋଇଥିଲା।

ଓଡ଼ିଶାରେ କାର୍ତ୍ତିକେୟଙ୍କ ପୂଜାର କୌଣସି ଗୁରୁତ୍ୱ ନଥିବାବେଳେ ଶିବମନ୍ଦିରମାନଙ୍କର ପଶ୍ଚାତ୍‌ଭାଗରେ, ପାର୍ଶ୍ୱଦେବତାଭାବେ ତା'ଙ୍କ ମୂର୍ତ୍ତି ସ୍ଥାପିତ ହୋଇଥାଏ। ଭୁବନେଶ୍ୱରରେ ଲିଙ୍ଗରାଜମନ୍ଦିର ପରିସରରେ କାର୍ତ୍ତିକେୟଙ୍କର ଏକ ସ୍ୱତନ୍ତ୍ର ମନ୍ଦିର ରହିଛି। ମନ୍ଦିର ଗାତ୍ରରେ ଏବଂ ଖୋଲାଭାବରେ, ବିଭିନ୍ନ ସ୍ଥାନରେ ବିଭିନ୍ନ ସମୟର ଅନେକ କାର୍ତ୍ତିକେୟ ମୂର୍ତ୍ତି ଦେଖିବାକୁମିଳେ। ଓଡ଼ିଶାରେ ଦେଖାଯାଉଥିବା ଏହି ସମସ୍ତ ମୂର୍ତ୍ତିକୁ ସ୍ଥୁଳତଃ ତିନି ଶ୍ରେଣୀରେ ବିଭକ୍ତ କରାଯାଇପାରେ। ଯଥା:ଆସନମୂର୍ତ୍ତି, ମୟୂରାସନମୂର୍ତ୍ତି ଏବଂ ସ୍ଥାନକମୂର୍ତ୍ତି। ଅଧିକାଂଶ ପ୍ରାଚୀନ ମନ୍ଦିରର ପାର୍ଶ୍ୱଦେବତା କାର୍ତ୍ତିକେୟ ଆସନମୂର୍ତ୍ତି ଅଟନ୍ତି। ଅର୍ଥାତ୍, ସେ ଚୌକିଉପରେ ଏକ ଆସନ ଉପରେ ବସିଥାଆନ୍ତି। ତେବେ, ଅଳ୍ପ କେତେକ ପ୍ରାଚୀନ ମୂର୍ତ୍ତିରେ ସେ

ସହଜ ଭଙ୍ଗୀରେ ଦଣ୍ଡାୟମାନ ହୋଇଥିବା ମଧ୍ୟ ଦେଖାଯାଏ। କାର୍ତ୍ତିକେୟଙ୍କ ମୟୂରାସନ ମୂର୍ତ୍ତିଗୁଡ଼ିକ ସାଧାରଣତଃ ପ୍ରାଚୀନ ଯୁଗର ଦ୍ୱିତୀୟାର୍ଦ୍ଧ ଓ ମଧ୍ୟଯୁଗର ପ୍ରଥମାର୍ଦ୍ଧରେ ଲୋକପ୍ରିୟ ହୋଇଥିଲା। କେତେକ ପ୍ରାଚୀନ ମନ୍ଦିରର ଆବରଣଦେବତା ଓ ପାର୍ଶ୍ୱଦେବତାଙ୍କ ମଧ୍ୟରେ ଏହି ପ୍ରକାର ପ୍ରତିମା ଦେଖିବାକୁମିଳେ। ଖ୍ରୀଷ୍ଟୀୟ ୧୦ମ ଶତାବ୍ଦୀ ଓ ତା'ର ପରବର୍ତ୍ତୀ ସମୟ ମନ୍ଦିରର ଦୁଇ ଜଂଘ ମଧ୍ୟଭାଗ ରାହାପାଗମାନଙ୍କରେ କାର୍ତ୍ତିକେୟଙ୍କ ସ୍ଥାନକମୂର୍ତ୍ତି ବା ଦଣ୍ଡାୟମାନ ଭଙ୍ଗୀରମୂର୍ତ୍ତି ପାର୍ଶ୍ୱଦେବତାଭାବେ ସ୍ଥାନିତ ହୋଇଥିବା ଦେଖାଯାଏ। ଏଗୁଡ଼ିକ ସାଧାରଣତଃ ବିକଶିତ କଳାଶୈଳୀର ଅଟେ।

ଓଡ଼ିଶାର ପ୍ରାଚୀନ କାର୍ତ୍ତିକେୟ ମୂର୍ତ୍ତିଗୁଡ଼ିକ ସାଧାରଣତଃ ଏକମୁଖ ଓ ଦ୍ୱିଭୁଜ ବିଶିଷ୍ଟ ଅଟେ। ଅଧିକାଂଶ ମଧ୍ୟଯୁଗୀୟ ପ୍ରତିମା ଏକମୁଖ ଓ ଚର୍ତୁଭୁଜ ଅଟନ୍ତି। କ୍ୱଚିତ୍ ସ୍ଥଳେ ତାଙ୍କର ତ୍ରିମୁଖ,ଷଡ଼ମୁଖ, ଷଡ଼ଭୁଜ ଓ ଦ୍ୱାଦଶଭୁଜ ପ୍ରତିମା ଦେଖିବାକୁମିଳେ। କାର୍ତ୍ତିକେୟଙ୍କ ବେଶଭୂଷଣର ଦୁଇଟି ବିଶେଷତ୍ୱ ହେଉଛି; ତା'ଙ୍କ ମସ୍ତକରେ ତ୍ରିଯୁଡ଼ା ବିଶିଷ୍ଟ ଶିଖଣ୍ଡକ-କେଶବିନ୍ୟାସ, ଗଳାରେ ବ୍ୟାଘ୍ରନଖ ଓ କୂର୍ମ ପଦକଯୁକ୍ତ ହାର। ଏହା ବ୍ୟତୀତ ସେ ଅନ୍ୟ ସାଧାରଣ ବସ୍ତାଳଙ୍କାର ପରିଧାନ କରିଥାଆନ୍ତି। ଶୂଳ ତା'ଙ୍କର ମୁଖ୍ୟ ଆୟୁଧ ହୋଇଥିବାବେଳେ ଓଡ଼ିଶାର ମୂର୍ତ୍ତିମାନଙ୍କରେ ସେ ଏକ ଭିନ୍ନ ପ୍ରକାର ଶୂଳ ସମେତ କେତକ ସ୍ଥଳେ ଜପମାଳା, ବୀଜପୁରକ ଓ ଅନ୍ୟ ଆୟୁଧ ଧାରଣ କରିଥାଆନ୍ତି। ଅଳ୍ପକେତକ ପ୍ରାଚୀନ ରଚନା ବ୍ୟତୀତ ପ୍ରତ୍ୟେକ କୃତି ସହିତ ତା'ଙ୍କ ବାହନ ମୟୂରକୁ ଦେଖିବାକୁମିଳେ। ପକ୍ଷୀଟି କାର୍ତ୍ତିକେୟଙ୍କ ପାଦ ନିକଟରେ କିମ୍ବା ଆସନ ତଳେ ବିଭିନ୍ନ ଭଙ୍ଗୀରେ ଉଭା ହୋଇଥିବା ଦେଖାଯାଏ। ମଧ୍ୟଯୁଗୀୟ କୃତିଗୁଡ଼କରେ ସେ ଏକ କୁକୁଟକୁ ବାମହସ୍ତରେ ଧାରଣ କରିଥିବାବେଳେ ତା'ଙ୍କ ବାମା ଦେବସେନା କିମ୍ବା ଜଣେ ପରିଚ୍ଛରିକା ପକ୍ଷୀଟିକୁ ଉତ୍ତୋଳିତ କରି ଧରିଥାଆନ୍ତି। ଅନେକ ପ୍ରାଚୀନ ପ୍ରତିମାର ପ୍ରଚ୍ଛଦରେ କୌଣସି ପ୍ରଭାମଣ୍ଡଳ ରହୁନଥିବାବେଳେ କେତେକ ସ୍ଥଳେ ଚକ୍ରାକାର ସରଳ ପ୍ରଭାମଣ୍ଡଳ ଦେଖାଯାଏ। ମଧ୍ୟଯୁଗୀୟ କୃତିଗୁଡ଼ିକର ପ୍ରଚ୍ଛଦରେ କାରୁକଳାଯୁକ୍ତ ମକରତୋରଣ, ଉର୍ଦ୍ଧ୍ୱରେ ଉଡ୍ଡୀୟମାନ ଗନ୍ଧର୍ବ ଓ ଅପ୍‌ସରାଙ୍କ ସହିତ ନିମ୍ନ ଭାଗରେ ପରିଚ୍ଛେରକ, ପରିଚ୍ଛେରିକାଙ୍କ ପିତୁଳା ମଧ ଉତ୍କୀର୍ଣ୍ଣ ହୋଇଥାଏ।

## କାର୍ତ୍ତିକେୟ: ଆସନମୂର୍ତ୍ତି

ଭୁବନେଶ୍ୱରର ପ୍ରାଚୀନ ମନ୍ଦିରମାନଙ୍କ ମଧ୍ୟରେ ଆସନମୂର୍ତ୍ତି କାର୍ତ୍ତିକେୟ ସୁବର୍ଣ୍ଣଜଳେଶ୍ୱର, ପରଶୁରାମେଶ୍ୱର ମନ୍ଦିର ସମେତ ରାଜ୍ୟ ସଂଗ୍ରହାଳୟରେ ଦେଖିବାକୁମିଳେ। ଏହା ବ୍ୟତୀତ ଏହି ପ୍ରକାର ରଚନା ସିଂହନାଥ, ଖିଚିଂ ତଥା ମୁଖଲିଙ୍ଗମର ସୋମେଶ୍ୱର ମନ୍ଦିରରେ ରହିଛି। ଏହି କୃତିଗୁଡ଼ିକ ମଧ୍ୟରେ ପରଶୁରାମେଶ୍ୱର ମନ୍ଦିର, ପାର୍ଶ୍ୱଦେବତା କାର୍ତ୍ତିକେୟଙ୍କ କଳାଶୈଳୀ ବଳିଷ୍ଠ। ଏଠାରେ ଲଳିତାସନରେ ବସିଥିବା କାର୍ତ୍ତିକେୟଙ୍କ ମସ୍ତକ ଉପରେ ଝରାବଳୀଯୁକ୍ତ ଏକଛତ୍ର ଏବଂ ପ୍ରଚ୍ଛଦରେ ଏକ ସରଳ ଚକ୍ରାକାର ପ୍ରଭାମଣ୍ଡଳ ରହିଥିବାବେଳେ ଆସନର ନିମ୍ନରେ ତା'ଙ୍କ ବାହନ ମୟୂରଟି ଚଞ୍ଚୁରେ ଭୂମିରୁ ଖାଦ୍ୟ ଆହରଣ କରୁଥିବା ଦେଖାଯାଏ। ଏହି ଏକମୁଖ, ଦ୍ୱିଭୁଜ ଦେବତାଙ୍କ ଶରୀର ଗଠନ ସୁଠାମ। ସେ ମସ୍ତକରେ ଜଟାମୁକୁଟ ଓ ଦେହରେ ବିଭିନ୍ନ ବସ୍ତାଳଙ୍କର ପରିଧାନ କରିଥିବାର ଦେଖାଯାଏ। ତାଙ୍କ ଦକ୍ଷିଣହସ୍ତରେ ବୀଜପୂରକ ଓ ବାମହସ୍ତରେ ଏକ ଲମ୍ବଶୂଳ ରହିଛି। ମୂର୍ତ୍ତିର ଉର୍ଦ୍ଧ୍ୱଭାଗ ଛତ୍ରର ଦୁଇପାର୍ଶ୍ୱରେ ଦୁଇ ଗନ୍ଧର୍ବଙ୍କ ପିତୁଳା ଓ ମୂର୍ତ୍ତିର ଦୁଇପାର୍ଶ୍ୱବନ୍ଧ ଦେହରେ ଭାରରକ୍ଷକ, ପରିଚ୍ଛରକ ଓ ପରିଚ୍ଛରିକାଙ୍କ ମୂର୍ତ୍ତି ଖୋଦିତ ହୋଇଛି। ଖ୍ରୀଷ୍ଟୀୟ ୭ମ ଶତାବ୍ଦୀରେ ନିର୍ମିତ କୃତିଟିର ଉଚ୍ଚତା ପ୍ରାୟ ୧.୧୫ ମିଟର ଓ ପ୍ରସ୍ଥ ୦.୫୨ମିଟର ଅଟେ।

ରାଜ୍ୟ ସଂଗ୍ରହାଳୟରେ ଥିବା ଏକ ପ୍ରାଚୀନ କାର୍ତ୍ତିକେୟ ପ୍ରତିମାଟି କିଞ୍ଚିତ୍ ଆୟତାକାର ପଥର ଉପରେ ଅଗଭୀର ଶୈଳୀରେ ଉତ୍କୀର୍ଣ୍ଣ ହୋଇଛି। ଏହାର ଉପସ୍ଥାପନା ଓ କଳାଶୈଳୀ ଅତ୍ୟନ୍ତ ସରଳ। ବୋଧହୁଏ ମୂର୍ତ୍ତିଟି କୌଣସି ଏକ ପ୍ରାଚୀନ ଶିବମନ୍ଦିରର ପାର୍ଶ୍ୱଦେବତା ଭାବେ ସ୍ଥାନିତ ହୋଇଥିଲା।



କାର୍ତ୍ତିକେୟ, ପ୍ରାଚୀନ ଲଳିତାସନ ମୂର୍ତ୍ତି
ଓଡ଼ିଶାର ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର

ଏଠାରେ ନିରାଡ଼ମ୍ବର ବସ୍ତ୍ରଭୂଷଣଧାରୀ କାର୍ତ୍ତିକେୟ ଚୌକିଉଚ୍ଚର ଏକ ଆସନ ଉପରେ ଲଳିତଭଙ୍ଗୀରେ ବସିଥିବାବେଳେ ତା'ଙ୍କ ଦକ୍ଷିଣହସ୍ତଟି ନିଜ ଦକ୍ଷିଣଜାନୁ ଉପରେ ରହିଛି ଏବଂ ବାମହସ୍ତରେ ସେ ଏକ ବୀଜପୂରକ ଧାରଣ କରିଛନ୍ତି। ତା'ଙ୍କର ମୁଖ୍ୟ ଆୟୁଧ ଶୂଳଟି ଆସନର ଦକ୍ଷିଣପାର୍ଶ୍ୱରେ ରହିଛି। ଆସନର ନିମ୍ନରେ ତା'ଙ୍କ ବାହନ ମୟୂର ଉପସ୍ଥିତ ଥିବାବେଳେ ମସ୍ତକ ପ୍ରଚ୍ଛଦରେ ଏକ ସରଳ, ଚକ୍ରାକାର ପ୍ରଭାମଣ୍ଡଳ ଦେଖିବାକୁମିଳେ। କୃତିଟି ଖ୍ରୀ:୫ମ-୬ଷ୍ଠ ଶତାବ୍ଦୀର ହୋଇଥିବା ସମ୍ଭବ। ଏହି କୃତିଟିର ଉଚ୍ଚତା ପ୍ରାୟ ୦.୪ ମିଟର ଓ ପ୍ରସ୍ଥ ପ୍ରାୟ ୦.୩୮ ମିଟର ଅଟେ। କିଞ୍ଚିତ୍ ପରବର୍ତ୍ତୀ ସମୟର କାର୍ତ୍ତିକେୟଙ୍କ ଅନ୍ୟ କେତୋଟି ଆସନମୂର୍ତ୍ତି ସିଂହନାଥ, ପାଇକମାଳ ଓ ପଦ୍ମପୁରରେ ଦେଖିବାକୁମିଳେ। ଏଗୁଡ଼ିକରେ ସ୍ଥାନୀୟ କଳାଶୈଳୀର ସ୍ୱାତନ୍ତ୍ର୍ୟ ପରିଲକ୍ଷିତହୁଏ।

## କାର୍ତ୍ତିକେୟ: ମୟୂରାସନମୂର୍ତ୍ତି

ମୟୂର ଉପରେ ଆସନ ଗ୍ରହଣ କରିଥିବା କାର୍ତ୍ତିକେୟ ପ୍ରତିମାଗୁଡ଼ିକ ଗୁପ୍ତଯୁଗରୁ ଲୋକପ୍ରିୟ ହୋଇଥିବା ସୂଚନାମିଳେ। ଭୁବନେଶ୍ୱରର ଲିଙ୍ଗରାଜଙ୍କ ମୁଖ୍ୟ ଦେଉଳର ପଶ୍ଚାତ୍‌ଭାଗରେ ଅର୍ଥାତ୍ ଦେଉଳବେଢ଼ା ମଧ୍ୟରେ ଥିବା କାର୍ତ୍ତିକେୟଙ୍କ ଏକ ପ୍ରାଚୀନ ମୟୂରାସନ ପ୍ରତିମା ଗୁରୁତ୍ୱପୂର୍ଣ୍ଣ ଅଟେ। କୃତିଟି ଏକ ଚଟକା, କିଞ୍ଚିତ୍ ବର୍ଗାକାର ପଥର ଉପରେ ଅତ୍ୟନ୍ତ ଅଗଭୀର ଶୈଳୀରେ ଖୋଦିତ ହୋଇଛି। ବର୍ତ୍ତମାନ ଏହା ଏକ ଛୋଟ ପୀଢ଼ଦେଉଳର ବାଡ଼ଭାବେ ବ୍ୟବହାର ହୋଇଥିବାବେଳେ ପୂର୍ବେ କୃତିଟି କୌଣସି ଏକ ଛୋଟ ପ୍ରାଚୀନ ମନ୍ଦିରର ପାର୍ଶ୍ୱଦେବତାଭାବେ ସ୍ଥାନିତ ହୋଇଥିବା ଅନୁମାନ କରାଯାଏ। ଏଥିରେ ପକ୍ଷ ଓ ପୁଚ୍ଛ ପ୍ରସାରିତକରି ରହିଥିବା ମୟୂରର ପୃଷ୍ଠଦେଶରେ କାର୍ତ୍ତିକେୟ ଭଦ୍ରାସନରେ ବସିଛନ୍ତି। ଅର୍ଥାତ୍, ଚକ୍ରାକାର ପ୍ରସାରିତ ମୟୂରପୁଚ୍ଛଗୁଡ଼ିକ ତା'ଙ୍କ ପ୍ରଚ୍ଛଦରେ ପ୍ରଭାମଣ୍ଡଳ ସଦୃଶ ରହିଛି। ମୂର୍ତ୍ତିର ମସ୍ତକରେ ଏକ ଭିନ୍ନ ପ୍ରକାରର ଶିଖଣ୍ଡକ କେଶବିନ୍ୟାସ ଏବଂ କପାଳ ଉପରକୁ ତିନୋଟି ପୁଷ୍ପ ପଦକଯୁକ୍ତ

ଏକ ପତଳା ଅଳକା ରହିଛି। ଏହା ବ୍ୟତୀତ ସେ କର୍ଣ୍ଣରେ ବୃହଦାକାର ପତ୍ରକୁଣ୍ଡଳ, ଗଳାରେ ବ୍ୟାଘ୍ରନଖ ତଥା ଅନ୍ୟାନ୍ୟ ପଦକଯୁକ୍ତ ହାର, ବାହୁରେ ବାଜୁବନ୍ଧ ଏବଂ ବକ୍ଷଃ ନିକଟରେ ଏକ ଉଦରବନ୍ଧ ପରିଧାନ କରିଥିବା ଦେଖାଯାଏ। ଏଠାରେ ଦ୍ୱିଭୁଜ କାର୍ତ୍ତିକେୟଙ୍କ ବାମହସ୍ତରେ ଏକ ଲମ୍ବଶୂଳ ରହିଥିବାବେଳେ ମୂର୍ତ୍ତିର ଦକ୍ଷିଣହସ୍ତ ସମେତ କେତେକାଂଶ ଭଗ୍ନ। ତା'ଙ୍କ ବାହନ ମୟୂର ଗଳାରେ ମଧ୍ୟ ଦୁଇଟି ପଦକଯୁକ୍ତ ହାର ରହିଛି। କୃତିଟିର ଏକ ଗୁରୁତ୍ୱପୂର୍ଣ୍ଣ ଦୃଶ୍ୟ ହେଉଛି; କାର୍ତ୍ତିକେୟଙ୍କ ଦକ୍ଷିଣ ପାର୍ଶ୍ୱରେ ବ୍ରହ୍ମା ଏବଂ ବାମ ପାର୍ଶ୍ୱରେ ବିଷ୍ଣୁ ତା'ଙ୍କୁ ଅଭିଷେକ କରିବାନିମନ୍ତେ ହସ୍ତରେ ଜଳକଳସ ଧାରଣ କରି ଦଣ୍ଡାୟମାନ ହୋଇଛନ୍ତି। ଚର୍ତୁମୁଖ ବ୍ରହ୍ମାଙ୍କ ତିନିମୁଖ ଦେଖାଯାଉଥିବାବେଳେ ବିଷ୍ଣୁଙ୍କ ବାମପାର୍ଶ୍ୱଟି ଭଗ୍ନ। ଏଣୁ କୃତିଟିକୁ କାର୍ତ୍ତିକେୟଙ୍କ 'ମୟୂରାସନ-ଅଭିଷେକମୂର୍ତ୍ତି' ଭାବେ ଚିହ୍ନିତ କରାଯାଇପାରେ। ଏହି ସମସ୍ତ ରଚନା ଏକ ପୀଠଉପରେ ରହିଥିବାବେଳେ ଏହାର ନିମ୍ନ, ମଧ୍ୟଭାଗରେ ଜଣେ ଭାରରକ୍ଷକ ଯକ୍ଷ ଓ ଦୁଇ ପାର୍ଶ୍ୱରେ ଉଡ୍ଡୀୟମାନ ଗନ୍ଧର୍ବଙ୍କ ପିତୁଳା ସ୍ଥାନିତ ହୋଇଛି। କୃତିଟି ଗୁପ୍ତଯୁଗ କିମ୍ବା ତା'ର କିଞ୍ଚିତ୍ ପରବର୍ତ୍ତୀ ସମୟର ହୋଇଥିବା ସମ୍ଭବ। କାର୍ତ୍ତିକେୟଙ୍କ ଅଭିଷେକ ମୂର୍ତ୍ତିଗୁଡ଼ିକ ଉତ୍ତରଭାରତରେ ବେଶ୍ ଲୋକପ୍ରିୟ ହୋଇଥିଲା। ତେବେ, ଓଡ଼ିଶାର ମୂର୍ତ୍ତିକଳାରେ ଏହା ଏକ ବିରଳ କୃତି କହିଲେ ଅତ୍ୟୁକ୍ତି ହେବନାହିଁ।



କାର୍ତ୍ତିକେୟ (ମୟୂରାସନ-ଅଭିଷେକ ମୂର୍ତ୍ତି)
ପ୍ରାଚୀନ କୃତି, ଲିଙ୍ଗରାଜ ମନ୍ଦିର ପରିସର



କାର୍ତ୍ତିକେୟ (ମୟୂରାସନ ମୂର୍ତ୍ତି)
ପଶ୍ଚିମେଶ୍ୱର ମନ୍ଦିର, ଭୁବନେଶ୍ୱର

ଖ୍ରୀଷ୍ଟୀୟ ୬ଷ୍ଠ-୧୦ମ ଶତାବ୍ଦୀ ମଧ୍ୟରେ ନିର୍ମିତ ବହୁ ଶିବମନ୍ଦିର ସହିତ କାର୍ତ୍ତିକେୟଙ୍କ ମୟୂରାସନମୂର୍ତ୍ତି ଦେଖିବାକୁମିଳେ। ଏହିସବୁ କୃତିରେ ମୟୂରଟି ସାଧାରଣତଃ ସମ୍ମୁଖ ଭଙ୍ଗୀରେ ରହିଥାଏ। ଅଳ୍ପ କେତେକ ସ୍ଥଳେ ପାର୍ଶ୍ୱଭଙ୍ଗୀର ମୂର୍ତ୍ତି ଦେଖାଯାଏ। ଏହି ମୟୂରର ପାଦତଳେ ପ୍ରାୟତଃ ଏକ ନାଗ ରହିଥାଏ। ମୟୂରଉପରେ କାର୍ତ୍ତିକେୟ ଅଧିକାଂଶ ସ୍ଥଳେ ଭଦ୍ରାସନ ବା ଅଶ୍ୱାରୋହଣ ଭଙ୍ଗୀରେ ଆସନ ଗ୍ରହଣ କରୁଥିବାବେଳେ ଅଳ୍ପ କେତେକ ରଚନାରେ ଲଳିତଭଙ୍ଗୀରେ ବସିଥିବା ଦେଖାଯାଏ। ଏହି ସମସ୍ତ ରଚନାରେ ଦ୍ୱିଭୁଜ କାର୍ତ୍ତିକେୟ ଗୋଟିଏ ହସ୍ତରେ ଶୂଳ ଓ ଅନ୍ୟ ହସ୍ତରେ ବୀଜପୂରକ ଧାରଣ କରିଥାଆନ୍ତି। କଳାଶୈଳୀରେ ଭିନ୍ନତାଥିବା ଏହି ପ୍ରକାର ମୂର୍ତ୍ତି ଭୁବନେଶ୍ୱରର ଶତ୍ରୁଘ୍ନେଶ୍ୱର ମନ୍ଦିର, ସୁବର୍ଣ୍ଣଜଳେଶ୍ୱର,

ପରଶୁରାମେଶ୍ୱର ମନ୍ଦିର ଓ ରାଜ୍ୟ ସଂଗ୍ରହାଳୟ ସମେତ ବଙ୍କାଡ଼, ଯାଜପୁର, ସିଂହନାଥ, ଗଞ୍ଜାମର ବଡ଼ଗାଁ, ମୁଖଲିଙ୍ଗମ୍‌ର ମଧୁକେଶ୍ୱର ମନ୍ଦିର, ପଶ୍ଚିମଓଡ଼ିଶାର ବୈଦ୍ୟନାଥ ଓ ଚରଦାଠାରେ ରହିଛି। ବୈଦନାଥ,କୋଶଳେଶ୍ୱର ମନ୍ଦିରର ଏକ ସ୍ତମ୍ଭ ଉପରେ ମନୁଷ୍ୟାକୃତି କାର୍ତ୍ତିକେୟ ଓ ମୟୂରକୁ ପାର୍ଶ୍ୱଭଙ୍ଗୀରେ ଦେଖିବାକୁମିଳେ।

## କାର୍ତ୍ତିକେୟ: ସ୍ଥାନକମୂର୍ତ୍ତି

କାର୍ତ୍ତିକେୟଙ୍କ ସ୍ଥାନକ ଅର୍ଥାତ୍, ଦଣ୍ଡାୟମାନ ଭଙ୍ଗୀର ଅଳ୍ପକେତେକ ପ୍ରାଚୀନ ପ୍ରତିମା ରହିଥିବାବେଳେ ଅଧିକାଂଶ ମଧ୍ୟଯୁଗୀୟ ଓ ପରବର୍ତ୍ତୀକାଳୀନ ମୂର୍ତ୍ତି ଏହି ଶୈଳୀର ଅଟେ। ଏହି ପ୍ରାଚୀନ ଦ୍ୱିଭୁଜ ପ୍ରତିମାଗୁଡ଼ିକ ବିଭିନ୍ନ ଭାବରେ ଉପସ୍ଥାପିତ। ଭୁବନେଶ୍ୱରର ଲକ୍ଷ୍ମଣେଶ୍ୱର ମନ୍ଦିରର ଏକ ରଚନାରେ ସେ ଦକ୍ଷିଣହସ୍ତରେ ଶୂଳ ଧାରଣ କରିଥିବାବେଳେ ଜଣେ ପରିଚାରିକା ତା'ଙ୍କ ଦକ୍ଷିଣପାର୍ଶ୍ୱରେ ଓ ମୟୂରଟି ବାମପାର୍ଶ୍ୱରେ ଉପସ୍ଥିତ ଅଛି। ଭରତେଶ୍ୱର ମନ୍ଦିରର ରଚନାରେ ସେ ଦକ୍ଷିଣହସ୍ତଟି କଟିଉପରେ ରଖି ବାମହସ୍ତରେ ଶୂଳ ଧାରଣ କରିଛନ୍ତି। ପରିଚାରିକା ଜଣକ ତା'ଙ୍କ ବାମପାର୍ଶ୍ୱରେ ଦଣ୍ଡାୟମାନ ହୋଇଥିବାବେଳେ ମୂର୍ତ୍ତିଟି ବାହନ ବିହୀନ। ଭୁବନେଶ୍ୱର, ଭବନୀଶଙ୍କର ମନ୍ଦିର ପରିସରର କାର୍ତ୍ତିକେୟଙ୍କ ସହିତ ଜଣେ ପରଚାରିକା ଓ ମୟୂର ରହିଥିବାବେଳେ ସେ କୌଣସି ଆୟୁଧ ଧାରଣ କରିନାହାଁନ୍ତି। ଏହି ପ୍ରତିମାଟି ବିନ୍ଦୁସାଗର ପଙ୍କୋଦ୍ଧାର ବେଳେ ପ୍ରାପ୍ତ ହୋଇଥିଲା। ଯାଜପୁରର ଏକ ରଚନାରେ ସେ ଦକ୍ଷିଣହସ୍ତରେ ବୀଜପୂରକ ଧାରଣ କରିଥିବାବେଳେ ବାମହସ୍ତଟି ବାମଜାନୁ ଉପରେ ରଖିଛନ୍ତି। ଏଠାରେ ମୟୂର ତା'ଙ୍କ ଦକ୍ଷିଣପାର୍ଶ୍ୱରେ ଓ ଶୂଳଟି ବାମପାର୍ଶ୍ୱରେ ଦେଖାଯାଏ। ଏହିପରି ବିଭିନ୍ନ ଭାବରେ ଥିବା ପ୍ରାଚୀନ କାର୍ତ୍ତିକେୟଙ୍କ ସ୍ଥାନକ ପ୍ରତିମା ଭୁବନେଶ୍ୱର, ବଙ୍କାଡ଼, ଯାଜପୁର ଓ ମୁଖଲିଙ୍ଗମ୍‌ରେ ଦେଖିବାକୁମିଳେ।

ମଧ୍ୟଯୁଗର ଅଧିକାଂଶ କାର୍ତ୍ତିକେୟ ପ୍ରତିମା ଚତୁର୍ଭୁଜ ହୋଇଥିବାବେଳେ, ଏହି ସମୟର ଦୁଇଟି ଦ୍ୱିଭୁଜମୂର୍ତ୍ତି ଉଲ୍ଲେଖଯୋଗ୍ୟ। ଏଥିମଧ୍ୟରୁ ଓଡ଼ିଶାର ଗୋଟିଏ ସୁନ୍ଦର ପ୍ରତିମା ଫିଲାଡ଼େଲ୍‌ଫିଆ ସଂଗ୍ରହାଳୟରେ ଏବଂ ଅନ୍ୟଟି ମୟୂରଭଞ୍ଜ ଜିଲ୍ଲାର ଦେଢ଼ାଗଡ଼ିଠାରେ ରହିଛି। ପ୍ରଥମ ମୂର୍ତ୍ତିଟି ବୋଧହୁଏ ପୂର୍ବେ ଭୁବନେଶ୍ୱରର କୌଣସି ଶିବମନ୍ଦିର ପାର୍ଶ୍ୱଦେବତାଭାବେ ରହିଥିଲା। ଉଭୟ ମୂର୍ତ୍ତିର ମୂର୍ତ୍ତିତତ୍ତ୍ୱରେ



କାର୍ତ୍ତିକେୟ (ସ୍ଥାନକ ଭଙ୍ଗୀ ମୂର୍ତ୍ତି)
ପ୍ରାଚୀନ କୃତି, ଭବନୀଶଙ୍କର ମନ୍ଦିର ପରିସର, ଭୁବନେଶ୍ୱର

ସମ୍ପୂର୍ଣ୍ଣ ସମତା ରହିଥିବାବେଳେ କଳାଶୈଳୀରେ ଯଥେଷ୍ଟ ପାର୍ଥକ୍ୟ ଦେଖାଯାଏ। ଉଭୟମୂର୍ତ୍ତି ବିଶ୍ୱପଦ୍ମଉପରେ ଦଣ୍ଡାୟମାନହୋଇ ଦକ୍ଷିଣହସ୍ତରେ ଶୂଳ ଧାରଣ କରିଛନ୍ତି ଓ ବାମହସ୍ତଟିକୁ ବାମପାର୍ଶ୍ୱରେ ଥିବା କୁକ୍କୁଟ ପୃଷ୍ଠରେ ସସ୍ନେହରେ ରଖିଛନ୍ତି। ମୂର୍ତ୍ତିର ନିମ୍ନଭାଗ ଦକ୍ଷିଣପାର୍ଶ୍ୱରେ ମୟୂର ଓ ବାମପାର୍ଶ୍ୱରେ କୁକ୍କୁଟକୁ ଧାରଣ କରିଥିବା ପ୍ରଥମ ମୂର୍ତ୍ତିରେ ପରଚାରକ ଓ ଦ୍ୱିତୀୟ ମୂର୍ତ୍ତିରେ ଜଣେ ପରିଚାରିକାଙ୍କୁ ଦେଖିବାକୁମିଳେ। ଉଭୟ ପ୍ରତିମାର ବେଶଭୂଷଣ ଓ ପ୍ରଚ୍ଛଦର ଅଣ୍ଡାକୃତି ପ୍ରଭାମଣ୍ଡଳରେ ଯଥେଷ୍ଟ ସମତା ରହିଥିବାବେଳେ ପ୍ରଥମ କୃତିର ଊର୍ଦ୍ଧ୍ୱ ଦୁଇ କୋଣରେ ଯଥାକ୍ରମେ ଉଡ୍ଡୀୟମାନ ଗନ୍ଧର୍ବ ଓ ଅପ୍‌ସରା ଏବଂ ଦ୍ୱିତୀୟ କୃତିର ଏହି ସ୍ଥାନରେ କେବଳ ଦୁଇ ଗନ୍ଧର୍ବଙ୍କ ପିତୁଳା ସ୍ଥାନିତ ହୋଇଛି। ଫିଲାଡ଼େଲ୍‌ଫିଆ ସଂଗ୍ରହାଳୟର ମୂର୍ତ୍ତିଟି ମୁଗୁନିପଥରର ମସୃଣ ପ୍ରତିମା ହୋଇଥିବାବେଳେ ଏହାର ଦକ୍ଷିଣହସ୍ତ ଓ ଶୂଳଟି ଭଗ୍ନ। ଦ୍ୱିତୀୟ, ଅର୍ଥାତ୍ ପେଡ଼ାଗଡ଼ିର କାର୍ତ୍ତିକେୟ ପ୍ରତିମାଟି କନ୍ଦାପଥରରେ ନିର୍ମିତ। କଳାଶୈଳୀରୁ ଉଭୟ ପ୍ରତିମା ଖ୍ରୀ:୧୦ମ ଶତାବ୍ଦୀର ବୋଲି ଅନୁମାନ କରାଯାଏ।

ଖ୍ରୀଷ୍ଟୀୟ ୧୧ଶ ଶତାବ୍ଦୀ ଓ ତା'ର ପରବର୍ତ୍ତୀ ସମୟରେ ନିର୍ମିତ ଅଧିକାଂଶ ସୁଉଚ୍ଚ ସୁନ୍ଦର ଶିବମନ୍ଦିରମାନଙ୍କ ପାର୍ଶ୍ୱଦେବତା କାର୍ତ୍ତିକେୟ ମୂର୍ତ୍ତିଗୁଡ଼ିକ ଉଚ୍ଚକୋଟୀର କଳାଶୈଳୀର, ଚର୍ତୁଭୁଜ ରଚନା ଅଟେ। କିନ୍ତୁ, ଅନେକ ସ୍ଥଳେ ହସ୍ତଗୁଡ଼ିକ ଭଗ୍ନହୋଇଥିବାରୁ ଆୟୁଧଗୁଡ଼ିକ ସମ୍ପର୍କରେ ସ୍ପଷ୍ଟଧାରଣା କରିହୁଏନାହିଁ। ତେବେ, ଏଗୁଡ଼ିକର ସାଧାରଣ ଆୟୁଧ ହେଉଛି; ମୁଖ୍ୟ ଦକ୍ଷିଣହସ୍ତରେ ଶୂଳ ଓ ଅନ୍ୟ ହସ୍ତଟି ବରଦମୁଦ୍ରା ପ୍ରଦର୍ଶନ କରୁଥାଏ। ସମୟ ସମୟେ ଏହି ହସ୍ତରେ ଏକ ଜପମାଳା ମଧ୍ୟ ଦେଖାଯାଏ। ଅଧିକାଂଶ ମୂର୍ତ୍ତିର ଦୁଇ ବାମହସ୍ତ ବାମପାର୍ଶ୍ୱର କୁକ୍କୁଟ ଉପରେ ସସ୍ନେହଭାବରେ ରହିଥାଏ କିମ୍ବା ଏଥିମଧ୍ୟରୁ ଗୋଟିଏ ହସ୍ତ ଅଭୟମୁଦ୍ରା ପ୍ରଦର୍ଶନ କରୁଥିବା ଦେଖାଯାଏ। ଏହି ପ୍ରକାର ପ୍ରତ୍ୟେକ ସ୍ଥାନକ ମୂର୍ତ୍ତିର ବେଶଭୂଷଣ ଓ ମଣ୍ଡନକୃତି ବିକଶିତ ଶୈଳୀର ଅଟେ। ଏହିପରି କେତେକ ମୂର୍ତ୍ତି ମଧ୍ୟରେ ଭୁବନେଶ୍ୱର, ଲିଙ୍ଗରାଜମନ୍ଦିରର ପାର୍ଶ୍ୱଦେବତା କାର୍ତ୍ତିକେୟ ସମେତ ସିଦ୍ଧେଶ୍ୱର, କେଦାରେଶ୍ୱର,ମେଘେଶ୍ୱରର ମୂର୍ତ୍ତି ଉଲ୍ଲେଖଯୋଗ୍ୟ। ଏହା ବ୍ୟତୀତ ଗାରେଡ଼ିପାଞ୍ଚଣ, ପ୍ରାଚୀ ଅବବାହିକାର ନିଆଳି, ସୋମେଶ୍ୱର, ସାଲେପୁର ନିକଟ ବଟେଶ୍ୱର, ଜଗତ୍‌ସିଂହପୁର ନିକଟ କୁଣ୍ଡେଶ୍ୱର, ନରସିଂହପୁର ନିକଟ ଚମ୍ପେଶ୍ୱରରେ ମଧ୍ୟ ଏହି ପ୍ରକାର କାର୍ତ୍ତିକେୟ ପ୍ରତିମା ଦେଖିବାକୁ ମିଳେ। ଏହି ସମସ୍ତ ମୂର୍ତ୍ତିର ହସ୍ତଗୁଡ଼ିକ ବିଭିନ୍ନ ଭାବରେ ଭାଙ୍ଗିପଡ଼ିଥିବାବେଳେ ଖୋର୍ଦ୍ଧା ଜିଲ୍ଲା ଟାଙ୍ଗୀ ନିକଟ ଚଣ୍ଡେଶ୍ୱର ଶିବମନ୍ଦିରର କାର୍ତ୍ତିକେୟ ପ୍ରତିମାଟି ପ୍ରାୟ ଅକ୍ଷୁର୍ଣ୍ଣ ରହିଛି। ଏହାର କିଞ୍ଚିତ୍ ପରବର୍ତ୍ତୀ ସମୟର, ଅପରିପକ୍ୱ କଳାଶୈଳୀର କେତୋଟି ଛୋଟ ଚର୍ତୁଭୁଜ ପ୍ରତିମା ଭୁବନେଶ୍ୱରର ଗୌରୀମନ୍ଦିର ପରିସର, ଭିଲ୍ଲିଦେଉଳୀ, ପାଇକପଡ଼ା ଓ ଖିଚିଂରେ ମଧ୍ୟ ରହିଛି। ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ପରିସରରେ ଥିବା ବିମଳାମନ୍ଦିର, ପ୍ରବେଶଦ୍ୱାରର ବାମପାର୍ଶ୍ୱରେ ଷଡ଼ମୁଖ ଓ ଦ୍ୱାଦଶଭୁଜ ବିଶିଷ୍ଟ କାର୍ତ୍ତିକେୟଙ୍କ ଏକ ଛୋଟ ପ୍ରତିମା ସ୍ଥାନିତ ହୋଇଛି। ଉଚ୍ଚକୋଟୀର କଳାଶୈଳୀର କୃତିଟି ଖ୍ରୀ:୧୧ଶ-୧୨ଶ ଶତାବ୍ଦୀର ହୋଇଥିବା ସମ୍ଭବ। କଟକ ଜିଲ୍ଲା ଆଠଗଡ଼ ଓ ମହାନଦୀକୂଳ, ଧବଳେଶ୍ୱର ମନ୍ଦିରର ଏକ କୃତିରେ କାର୍ତ୍ତିକେୟ ମୟୂର ଉପରେ ଦଣ୍ଡାୟମାନ ହୋଇଛନ୍ତି। ଏଗୁଡ଼ିକ ବିରଳକୃତି କହିଲେ ଅତ୍ୟୁକ୍ତି ହେବନାହିଁ।



କାର୍ତ୍ତିକେୟ,ଫିଲାଡ଼େଲ୍‌ଫିଆ ମ୍ୟୁଜିଏମ୍



କାର୍ତ୍ତିକେୟ,କେଦାରେଶ୍ୱର ମନ୍ଦିର,ଭୁବନେଶ୍ୱର

ଭିନ୍ନ ଶୈଳୀର କେତେକ ସ୍ଥାନକ କାର୍ତ୍ତିକେୟ ମୂର୍ତ୍ତି ମଧ୍ୟରେ ପୁରୀ ଜିଲ୍ଲା ସାକ୍ଷୀଗୋପାଳ ନିକଟ ଅଳଗୁମ୍ ଗ୍ରାମର ମୂର୍ତ୍ତିଟି ଗୁରୁତ୍ୱପୂର୍ଣ୍ଣ। ଏଠାରେ ତିନିମୁଖ ଓ ଷଡ଼ଭୁଜ କାର୍ତ୍ତିକେୟ ତା'ଙ୍କ ବାହନ ମୟୂର ଉପରେ ଦଣ୍ଡାୟମାନ ହୋଇଛନ୍ତି। ତା'ଙ୍କର ଦକ୍ଷିଣପାର୍ଶ୍ୱ ତିନିହସ୍ତ ମଧ୍ୟରୁ ଉପର ହସ୍ତରେ ଏକ ଲକୁଟ ଦଣ୍ଡ ରହିଥିବାବେଳେ ତଳହସ୍ତରେ ବରଦମୁଦ୍ରା ପ୍ରଦର୍ଶନ କରିଛନ୍ତି। ଏହି ପାର୍ଶ୍ୱର ମୁଖ୍ୟ ହସ୍ତଟି ଭଗ୍ନ। ସେହିପରି ବାମପାର୍ଶ୍ୱର ଉପର ହସ୍ତରେ ଏକ ମୟୂରପୁଚ୍ଛ ଧାରଣ କରିଥିବାବେଳେ ଅନ୍ୟ ଏକ ହସ୍ତ କୁକୁଟ ପୃଷ୍ଠରେ ରହିଛି। ପରିତାପର ବିଷୟଯେ, ମୂର୍ତ୍ତିର ମୁଖ୍ୟହସ୍ତ ଦୁଇଟି ଭଗ୍ନ। ଏହା ବ୍ୟତୀତ ରଚନାର ଦକ୍ଷିଣପାର୍ଶ୍ୱରେ ଜଣେ ପରିଚାରିକା ଓ ବାମପାର୍ଶ୍ୱରେ କାର୍ତ୍ତିକେୟଙ୍କ ପତ୍ନୀ ଦେବସେନାଙ୍କ ପିତୁଳା ସ୍ଥାନିତ ହୋଇଛି। ମୂର୍ତ୍ତିର ଦେହରେ ସମସାମୟିକ ବସ୍ତ୍ରଭୂଷଣ ଓ ପ୍ରଚ୍ଛଦରେ ମଣ୍ଡନକୃତି ରହିଛି।

ବାଣପୁର, ଦକ୍ଷପ୍ରଜାପତି ମନ୍ଦିରର ଏକ ରଚନାରେ କାର୍ତ୍ତିକେୟ ମୟୂର ଉପରେ ତାଣ୍ଡବନୃତ୍ୟ ଭଙ୍ଗୀରେ ରହିଛନ୍ତି। ତା'ଙ୍କ ମୁଖ୍ୟ ଦୁଇହସ୍ତ 'ଗଜହସ୍ତ' ନୃତ୍ୟମୁଦ୍ରା ପ୍ରଦର୍ଶନ କରୁଥିବାବେଳେ ଅନ୍ୟ ଦକ୍ଷିଣହସ୍ତରେ ଏକ ଦଣ୍ଡ ବା ଶୂଳ ଏବଂ ବାମହସ୍ତରେ ଏକ ଚମ୍ପକପୁଷ୍ପ ରହିଛି। ଏହା ଖ୍ରୀ:୧୩ଶ ଶତାବ୍ଦୀର କୃତି। ବ୍ରିଟିଶ୍ ସଂଗ୍ରହାଳୟରେ ଥିବା ଓଡ଼ିଶାର ଏକ ଚର୍ତୁଭୁଜ କାର୍ତ୍ତିକେୟ ପ୍ରତିମାର ଉପର ଦକ୍ଷିଣହସ୍ତରେ ବଜ୍ର ରହିଥିବାବେଳେ ତଳହସ୍ତ ବରଦମୁଦ୍ରା ପ୍ରଦର୍ଶନ କରେ ଏବଂ ବାମପାର୍ଶ୍ୱର ଉପର ହସ୍ତରେ ଡ଼ମରୁ ଓ ମୁଖ୍ୟ ହସ୍ତଟି କୁକୁଟ ପୃଷ୍ଠରେ ରହିଛି। ଏହା ଖ୍ରୀ:୧୪ଶ-୧୫ଶ ଶତାବ୍ଦୀର କୃତି ହୋଇଥିବା ସମ୍ଭବ। ଏହିପରି ଓଡ଼ିଶାର ପରବର୍ତ୍ତୀକାଳୀନ ଅର୍ଥାତ୍, ଶେଷ ପର୍ଯ୍ୟାୟ କାର୍ତ୍ତିକେୟ ପ୍ରତିମାଗୁଡ଼ିକରେ କୌଣସି ନିର୍ଦ୍ଦିଷ୍ଟ ମୂର୍ତ୍ତିତତ୍ତ୍ୱ ବା ଧାରା ଦେଖିବାକୁ ମିଳେନାହିଁ। ମନ୍ଦିର ପାର୍ଶ୍ୱଦେବତାଭାବେ ହେଲେହେଁ କଳିଙ୍ଗର ମୂର୍ତ୍ତିକଳାରେ କାର୍ତ୍ତିକେୟଙ୍କ ବିକାଶଧାରା ଓ ସ୍ୱାତନ୍ତ୍ର୍ୟ ଉଲ୍ଲେଖଯୋଗ୍ୟ।



# ମନ୍ଦିର ଗାତ୍ରରେ ଶୈବ ଆବରଣଦେବତା

ମହାଦେବ ମୂର୍ତ୍ତିମୟ ଅର୍ଥାତ୍ ବେଦ, ଧର୍ମଶାସ୍ତ୍ର, ତନ୍ତ୍ର ଓ ପୁରାଣମାନଙ୍କରେ ତା'ଙ୍କର ବହୁବିଧ ରୂପର ବର୍ଣ୍ଣନା କରାଯାଇଛି । ତେବେ, ସେଥିମଧ୍ୟରୁ କେତେକ ମୂର୍ତ୍ତିକଳାରେ ପ୍ରତିଫଳିତ ହୋଇଥାଏ । ଭାରତର ବିଭିନ୍ନ ପ୍ରାନ୍ତରେ ଥିବା ମନ୍ଦିରମାନଙ୍କରେ ଭିନ୍ନଭିନ୍ନ ରୂପର ଉପସ୍ଥାପନ ବିଭିନ୍ନ ଭାବରେ ଦେଖାଯାଏ । ଅନ୍ୟଭାବରେ କହିବାକୁଗଲେ, ବିଭିନ୍ନ ଅଞ୍ଚଳର ମନ୍ଦିରରେ ତା'ଙ୍କର କେତେକ ମାତ୍ର ମୂର୍ତ୍ତି ଉତ୍କୀର୍ଣ୍ଣ ହୋଇଥାଏ । ଶିବଙ୍କର ଏହି ସମସ୍ତ ମୂର୍ତ୍ତିକୁ ସ୍ଥୁଳତଃ ଆଠ ଭାଗରେ ବିଭକ୍ତ କରାଯାଇପାରେ; ଯଥା: ୧.ଏକକମୂର୍ତ୍ତି, ୨.ନୃତ୍ୟମୂର୍ତ୍ତି, ୩.ଲୀଳାମୂର୍ତ୍ତି, ୪.ଯୁଗଳମୂର୍ତ୍ତି, ୫.ଯୁଗ୍ମମୂର୍ତ୍ତି, ୬.ଅନୁଗ୍ରହମୂର୍ତ୍ତି, ୭.ଉଗ୍ରମୂର୍ତ୍ତି ଓ ୮.ସଂହାରମୂର୍ତ୍ତି । ଏହାର ପ୍ରତ୍ୟେକ ଭାଗରେ ତା'ଙ୍କର ବିଭିନ୍ନ ବିଷୟ ସୂଚିତ କରୁଥିବା ମୂର୍ତ୍ତିମାନ ରହିଛି । ଏଗୁଡ଼ିକ ସାଧାରଣତଃ ଅର୍ଥ କିମ୍ବା ଆଖ୍ୟାନ ସୂଚକ । ଓଡ଼ିଶାର ମନ୍ଦିରଗାତ୍ରରେ ଏହି ସମସ୍ତ ବିଭାଗରୁ କିଛିକିଛି ମୂର୍ତ୍ତି ଦେଖିବାକୁମିଳେ । ମନ୍ଦିର ବାଡ଼ ବା ବାହାର ପାଖରେ ଥିବା ଏହି ଛୋଟ ଛୋଟ ଦେବଦେବୀ ପ୍ରତିମାଗୁଡ଼ିକୁ ଆବରଣଦେବତା କୁହାଯାଏ । ଏଠାରେ ଏହାର ସମ୍ୟକ ସୂଚନା ପ୍ରଦତ୍ତ କରାଗଲା ।

## ଲକୁଳୀଶ

ମହାଭାରତର ତଥ୍ୟ ଅନୁଯାୟୀ 'ଉମାପତି-ଶିବଶ୍ରୀକଣ୍ଠ' ପାଶୁପତ ଶୈବମତବାଦର ପ୍ରବର୍ତ୍ତକ ଅଟନ୍ତି । କେତେକ ବିଦ୍ୱାନଙ୍କ ମତରେ ସେ 'ସ୍ୱୟଂଶିବ' ହୋଇଥିବାବେଳେ ଅନ୍ୟକେତେକ ସେ ତତ୍କାଳୀନ ଜଣେ ଶୈବଗୁରୁବୋଲି ମତ ଦିଅନ୍ତି । ତେବେ, ଏହି ମତବାଦର ଅନେକ ଗୁରୁଙ୍କ ମଧ୍ୟରୁ ଲକୁଳୀଶଙ୍କୁ ଶିବଙ୍କ ୧୮ଶ କିମ୍ବା ୨୮ଶ ଅବତାର ଭାବେ ଗ୍ରହଣ କରାଯାଏ । ଐତିହାସିକଙ୍କ ମତରେ ଲକୁଳୀଶ ଗୁଜୁରାଟରେ ଜନ୍ମଗ୍ରହଣ କରିଥିଲେ । ଅନ୍ୟକେତେକ ତା'ଙ୍କ ଜନ୍ମସ୍ଥାନ ମହାରାଷ୍ଟ୍ର ମଧ କହନ୍ତି । ତେବେ, ସେ ତତ୍କାଳୀନ ଏକ ପ୍ରାଚୀନ ଶୈବଗୋଷ୍ଠୀ ଜନଜାତିର ଗୁରୁ ଥିଲେ । କେତେକ ତା'ଙ୍କୁ ପ୍ରଖ୍ୟାତ ଯୋଗଶାସ୍ତ୍ର ପ୍ରଣେତା ପତଞ୍ଜଳିଙ୍କ ସମସାମୟିକ ବୋଲି ଅନୁମାନ କରନ୍ତି । ଯେତେବେଳେ ଭାରତରେ ସର୍ବତ୍ର ବୌଦ୍ଧଧର୍ମର ଦୃଢ଼ ପ୍ରସାର ଘଟିଥିଲା, ସେହି ସମୟରେ ଶୈବାଚାର୍ଯ୍ୟମାନେ ନିଜ ଧର୍ମର ଉତ୍କର୍ଷତା ପ୍ରମାଣ ନିମନ୍ତେ ଲକୁଳୀଶଙ୍କୁ ବୁଦ୍ଧଙ୍କ ସମକକ୍ଷ ଜଣେ ଯୋଗୀଭାବେ ସମାଜରେ ଉପସ୍ଥାପିତ କରିଥିଲେ । ଏଣୁ, ଲକୁଳୀଶଙ୍କ ପ୍ରାଚୀନ ମୂର୍ତ୍ତିଗୁଡ଼ିକରେ ବୁଦ୍ଧଦେବ କିମ୍ବା ବୋଧିସତ୍ତ୍ୱ ମୂର୍ତ୍ତିର ପ୍ରଭାବ ଦେଖିବାକୁମିଳେ । ଭାରତର ବିଭିନ୍ନ ପ୍ରାନ୍ତରେ ଲକୁଳୀଶଙ୍କ ଭିନ୍ନଭିନ୍ନ ଭଙ୍ଗୀର ମୂର୍ତ୍ତି ପ୍ରାପ୍ତହେଉଥିବାବେଳେ ଓଡ଼ିଶାର ମନ୍ଦିରଗାତ୍ରରେ ତା'ଙ୍କର ଯୋଗାସନରେ ବସିଥିବା ମୂର୍ତ୍ତିହିଁ ଉତ୍କୀର୍ଣ୍ଣ ହୋଇଛି ।

ଓଡ଼ିଶାର ମୂର୍ତ୍ତିକଳାରେ ଲକୁଳୀଶ ଜଣେ ସାଧୁ । ସେ ପଦ୍ମଉପରେ ପଦ୍ମାସନ କିମ୍ବା ଯୋଗପଟ୍ଟ ବନ୍ଧିତ ଯୋଗାସନରେ ବସିଥିବା ଦେଖାଯାଏ । ତାଙ୍କ ଲଣ୍ଡିତ ମସ୍ତକରେ ବୁଦ୍ଧଦେବଙ୍କ ଭଳି ଚକ୍ରାକାର କୁଞ୍ଚିତ କେଶ ଓ କେତେକ ସ୍ଥଳେ ଉର୍ଦ୍ଧ୍ୱଜୁଡ଼ା ରହିଥିବାବେଳେ ରାଜ୍ୟ ସଂଗ୍ରହାଳୟର ଏକ କୃତିରେ ତା'ଙ୍କ ମସ୍ତକରେ ଜଟାଭାର ରହିଛି । ଅଧିକାଂଶ ସ୍ଥଳେ ସେ ବ୍ୟାଖ୍ୟାନ କିମ୍ବା ଧର୍ମଚକ୍ର ପ୍ରବର୍ତ୍ତନ

ମୁଦ୍ରାରେ ଦ୍ୱିଭୁଜ ହୋଇଥିବାବେଳେ କେତେକ ସ୍ଥଳେ ତାଙ୍କର ଚତୁର୍ଭୁଜ ପ୍ରତିମା ମଧ ଦେଖିବାକୁ ମିଳେ। ଲକୁଟ ନାମକ ଏକା କାଷ୍ଠଦଣ୍ଡ ତାଙ୍କର ମୁଖ୍ୟ ଆୟୁଧ। କେତେକ ମୂର୍ତ୍ତିରେ ଏହା ଦକ୍ଷିଣକାନ୍ଧ ଉପରେ ଓ ଅନ୍ୟ କେତେକ କୃତିରେ ବାମକାନ୍ଧ ଉପରେ ଧାରଣ କରିଥାଆନ୍ତି। ଅଧିକାଂଶ ମୂର୍ତ୍ତିରେ ତାଙ୍କ ସହିତ ତାଙ୍କ ଚାରିଜଣ ଶିଷ୍ୟଙ୍କ ପିତୁଳା ବ୍ୟତୀତ ଜଣେ ଦୁଇଜଣ ଭକ୍ତଙ୍କ ପିତୁଳା ମଧ ରହିଥାଏ। ପୁରାଣରେ ଏହି ଚାରି ଶିଷ୍ୟଙ୍କ ନାମ ହେଉଛି: କୌଶିକ, ଗର୍ଗ, ମିତ୍ର ଓ କୌରୁଷ୍ୟ। ଅନ୍ୟ କେତେକ ମୂର୍ତ୍ତିରେ ତାଙ୍କ ସହିତ ଶୈବମତବାଦର ଅଠରଜଣ ଆଚାର୍ଯ୍ୟଙ୍କ ମୂର୍ତ୍ତି ସ୍ଥାପିତ ହୋଇଥାଏ। ବୁଦ୍ଧଦେବଙ୍କ ଅନୁରୂପ ପ୍ରତିମାଗୁଡ଼ିକରେ ସେ ସମ୍ପୂର୍ଣ୍ଣ ନିରାଡ଼ମ୍ବର ଥିବାବେଳେ ମୈତ୍ରେୟଙ୍କ ପ୍ରଭାବ ପଡ଼ିଥିବା କୃତିଗୁଡ଼ିକରେ ତାଙ୍କ ମସ୍ତକରେ ଜଟାମୁକୁଟ ଓ ଶରୀରରେ ବସ୍ତ୍ରାଳଙ୍କାର ଦେଖାଯାଏ।



ଲକୁଳୀଶ, ପରଶୁରାମେଶ୍ୱର ମନ୍ଦିର, ଭୁବନେଶ୍ୱର



ଲକୁଳୀଶ, ମାର୍କଣ୍ଡେଶ୍ୱର ମନ୍ଦିର, ଭୁବନେଶ୍ୱର

ଓଡ଼ିଶାରେ ଶୈଳୋଦ୍‌ଭବ ଓ ଭୌମକରାକଳୀନ ଅର୍ଥାତ୍, ଖ୍ରୀ:୬ଷ୍ଠ ରୁ ୯ମ ଶତାବ୍ଦୀ ମଧ୍ୟର ମଣ୍ଡନକୃତି ଓ ମୂର୍ତ୍ତିକଳାଯୁକ୍ତ ମନ୍ଦିରମାନଙ୍କରେ ଲକୁଳୀଶଙ୍କ ମୂର୍ତ୍ତିକୁ ବେଶ୍ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦିଆଯାଇଛି। ତାଙ୍କ ମୂର୍ତ୍ତି ଶିବମନ୍ଦିରର ଆବରଣଦେବତା ବ୍ୟତୀତ କେତେକ ଜଗମୋହନରେ ପାର୍ଶ୍ୱଦେବତାଭାବେ ମଧ ଦେଖିବାକୁମିଳେ। ଭୁବନେଶ୍ୱରର ପ୍ରାଚୀନ ପରଶୁରାମେଶ୍ୱର ମନ୍ଦିର, ବୈତାଳଦେଉଳ, ବୈଦ୍ୟେଶ୍ୱରର, ସିଂହନାଥ, ମୁଖଲିଙ୍ଗମ୍‌ର ସୋମେଶ୍ୱର ଓ ମଧୁକେଶ୍ୱର ମନ୍ଦିରର ଗଣ୍ଡି ଉପର ବକ୍ରମସ୍ତକରେ ଲକୁଳୀଶଙ୍କ ସୁନ୍ଦର ପ୍ରତିମା ଉତ୍‌କୀର୍ଣ୍ଣ ହୋଇଛି। ଭୁବନେଶ୍ୱର, ମୁକ୍ତେଶ୍ୱର ମନ୍ଦିର ପରିସରରେ ଥିବା ମରିଚିକୁଣ୍ଡ, ମଣିଭଦ୍ରେଶ୍ୱର ମନ୍ଦିର ନିକଟ ଏକ ଛୋଟ ଶିବମନ୍ଦିର ଓ ରାଜାରାଣୀ ମନ୍ଦିର ଜଗମୋହନର ପ୍ରବେଶ ଦ୍ୱାରମାନଙ୍କ ଦ୍ୱାରଲଲାଟବିମ୍ବରେ ଲକୁଳୀଶଙ୍କ ମୂର୍ତ୍ତି ସ୍ଥାପିତ ହୋଇଛି। ତେବେ, ରାଜାରାଣୀ ମନ୍ଦିର ମୂର୍ତ୍ତି ସହିତ ଅନ୍ୟ ଅଠରଜଣ ଶୈବ ଗୁରୁଙ୍କ ପିତୁଳା ମଧ ଦେଖିବାକୁ ମିଳେ। ମନ୍ଦିର ଗାତ୍ରରେ ଅନ୍ୟ ସ୍ଥାନର ମୂର୍ତ୍ତି ମଧ୍ୟରେ ତାଙ୍କ ପ୍ରତିମା ସାଧାରଣତଃ ଦକ୍ଷିଣପାର୍ଶ୍ୱ ବାଡ଼ କିମ୍ବା ଗଣ୍ଡିରେ ଦେଖାଯାଏ। କାରଣ ଦକ୍ଷିଣମୂର୍ତ୍ତି ଶିବ ଗୁରୁ ବା ଜ୍ଞାନଦାତା ଅଟନ୍ତି। ଏଣୁ ଲକୁଳୀଶଙ୍କ ମୂର୍ତ୍ତି ମଧ ମନ୍ଦିରର ଦକ୍ଷିଣ ଦିଗରେ ସ୍ଥାପିତ କରାଯାଇଥାଏ। ଏହି ପ୍ରକାର ଉଦାହରଣ ଭୁବନେଶ୍ୱରର ଶିଶିରେଶ୍ୱର, ମେଘେଶ୍ୱର ମନ୍ଦିର ଓ ମୁଖଲିଙ୍ଗମ୍‌ର ମଧୁକେଶ୍ୱର

ମନ୍ଦିରରେ ରହିଛି। ତେବେ, ଓଡ଼ିଶାର ଦକ୍ଷିଣାଞ୍ଚଳରେ ଥିବା ପାଇକପଡ଼ା ଓ ଜୟତିର ଶିବମନ୍ଦିର ଉତ୍ତର ପାର୍ଶ୍ୱରେ ଲକୁଳୀଶଙ୍କ ମୂର୍ତ୍ତି ରହିଛି। ଖୋଲା ଭାବରେ ଥିବା କେତେକ ଲକୁଳୀଶ ମୂର୍ତ୍ତି ମଧ୍ୟରେ ଭୁବନେଶ୍ୱର, ରାଜ୍ୟ ସଂଗ୍ରହାଳୟ, ପଞ୍ଚୁପାଣ୍ଡବ ଗୁମ୍ଫା, ଭାରତୀମଠ, ଭବାନୀଶଙ୍କର ମନ୍ଦିର ପରିସର, ସିଂହନାଥ ମନ୍ଦିର ପରିସର ଓ ଉତ୍ତରଓଡ଼ିଶାର ସୀମାନ୍ତ ଅଞ୍ଚଳ ବେଣୁସାଗରରେ ଥିବା ମୂର୍ତ୍ତିଗୁଡ଼ିକ ଉଲ୍ଲେଖଯୋଗ୍ୟ। ଭୁବନେଶ୍ୱର ପରଶୁରାମେଶ୍ୱର ମନ୍ଦିର, ବୈତାଳଦେଉଳ, ଭାରତୀମଠ ଓ ତାଳେଶ୍ୱର ମନ୍ଦିରର ଲକୁଳୀଶ ବିଶ୍ୱପଦ୍ମ ଉପରେ ପଦ୍ମାସନରେ ବସିଥିବାବେଳେ ଭୁବନେଶ୍ୱରର ମେଘେଶ୍ୱର ମନ୍ଦିର, ସିଂହନାଥ ଓ ପାଇକପଡ଼ାର ମୂର୍ତ୍ତିରେ ସେ ଯୋଗପଟ୍ଟ ବନ୍ଧିତ ଯୋଗାସନରେ ଦେଖାଯାଆନ୍ତି। ଲକୁଟ ଧାରଣ କରିଥିବା ଏହି ସମସ୍ତ ପ୍ରତିମା ଦ୍ୱିଭୁଜ ଏବଂ ତାଙ୍କର ଦୁଇ ପାର୍ଶ୍ୱରେ ଚାରିଜଣ ଅନୁଗାମୀ ଶିଷ୍ୟଙ୍କ ପିତୁଳା ରହିଛି।

ଭୁବନେଶ୍ୱରର ଶିଶିରେଶ୍ୱର ମନ୍ଦିର ଓ ମୁଖଲିଙ୍ଗମ୍‌ର ସୋମେଶ୍ୱର ମନ୍ଦିର ଗାତ୍ରରେ ପଦ୍ମାସନରେ ବସିଥିବା ଲକୁଳୀଶଙ୍କ ଚର୍ତୁଭୁଜ ମୂର୍ତ୍ତି ରହିଛି। ଏହି ଉଭୟ ରଚନା ବୌଦ୍ଧ ଧର୍ମର ବୋଧିସତ୍ତ୍ୱଙ୍କ ମୂର୍ତ୍ତି ଦ୍ୱାରା ପ୍ରଭାବିତ। ଶିଶିରେଶ୍ୱରର ଲକୁଳୀଶ ମୁଖ୍ୟ ଦୁଇ ହସ୍ତରେ ଧର୍ମଚକ୍ରପ୍ରବର୍ତ୍ତନ ମୁଦ୍ରା ପ୍ରଦର୍ଶନ କରି ଅନ୍ୟ ଦୁଇହସ୍ତରୁ ଦକ୍ଷିଣହସ୍ତରେ ଜପମାଳା ଓ ବାମହସ୍ତରେ ଏକ ଚମ୍ପକ ପୁଷ୍ପ ଧାରଣ କରିଥିବାବେଳେ ସୋମେଶ୍ୱରର ଲକୁଳୀଶ ମୁଖ୍ୟ ହସ୍ତରେ ଅନୁରୂପ ଧର୍ମଚକ୍ର ମୁଦ୍ରା ପ୍ରଦର୍ଶନ କରିବା ସହିତ ଅନ୍ୟ ଦକ୍ଷିଣ ହସ୍ତରେ ଜପମାଳା ଓ ବାମହସ୍ତରେ ତ୍ରିଶୂଳ ଧାରଣ କରିଛନ୍ତି। ଶିଶିରେଶ୍ୱର ମନ୍ଦିର ଲକୁଳୀଶ ଲକୁଟ ଦଣ୍ଡଟି ଦକ୍ଷିଣ ସ୍କନ୍ଧରେ ଧାରଣ କରିଥିବାବେଳେ ସୋମେଶ୍ୱର ମନ୍ଦିର ଲକୁଳୀଶଙ୍କ ଲକୁଟଟି ତାଙ୍କ



ଲକୁଳୀଶ, ଶିଶିରେଶ୍ୱର ମନ୍ଦିର, ଭୁବନେଶ୍ୱର



ଲକୁଳୀଶ, ସୋମେଶ୍ୱର ମନ୍ଦିର, ଆନ୍ଧ୍ର ପ୍ରଦେଶ

ବାମସ୍କନ୍ଧରେ ରହିଛି। ଶିଶିରେଶ୍ୱର ମୂର୍ତ୍ତିର ମସ୍ତକରେ ଜଟାଯୂଡ଼ା ଓ ସୋମେଶ୍ୱର ମୂର୍ତ୍ତିର ମସ୍ତକରେ ଜଟାମୁକୁଟ ରହିଥିବାବେଳେ ଉଭୟ ପ୍ରତିମା ବସ୍ତ୍ରାଳଙ୍କାର ଦ୍ୱାରା ସୁଶୋଭିତ। ଏହା ବ୍ୟତୀତ ଉଭୟ ମୂର୍ତ୍ତିର ଉପର କୋଣରେ ଉଡ୍ଡୀୟମାନ ଗନ୍ଧର୍ବ ଓ ଅପ୍ସରାଙ୍କ ପିତୁଳା ଦେଖିବାକୁମିଳେ। ଶିଶିରେଶ୍ୱର ଲକୁଳୀଶଙ୍କ ମୂର୍ତ୍ତିର ଦୁଇ ଦ୍ୱାରବନ୍ଧ ଓ ଉପରଭାଗରେ ୧୭ଜଣ ଶୈବଗୁରୁଙ୍କ ମୂର୍ତ୍ତି ସ୍ଥାନିତ ହୋଇଥିଲା। ସେଥିମଧ୍ୟରୁ ୯ଗୋଟି ମୂର୍ତ୍ତି ଭାଙ୍ଗିପଡ଼ିଥିବାରୁ ମନ୍ଦିର ମରାମତିବେଳେ ସେହି ସ୍ଥାନରେ ସାଧା ପଥର ସଂଯୋଗ କରାଯାଇଛି। ଅର୍ଥାତ୍ ମୂର୍ତ୍ତି ସହିତ ବର୍ତ୍ତମାନ ୬ଜଣ ଗୁରୁଙ୍କ ପିତୁଳା ଦୃଷ୍ଟିଗୋଚର ହୁଏ। ସୋମେଶ୍ୱର ଲକୁଳୀଶଙ୍କ ଆସନ ତଳେ ତାଙ୍କ ଚାରିଜଣ ଶିଶିଷ୍ୟଙ୍କ ପିତୁଳା ଉତ୍କୀର୍ଣ୍ଣ ହୋଇଥିବାବେଳେ ଶିଶିରେଶ୍ୱର ଲକୁଳୀଶଙ୍କ ମୂର୍ତ୍ତି ନିମ୍ନର ମଧ୍ୟଭାଗରେ ପୁଷ୍ପଗୁଚ୍ଛ, ଦୁଇପାର୍ଶ୍ୱରେ ମୃଗଯୁଗଳ ଓ ପରିଚାରକଙ୍କ ମୂର୍ତ୍ତି ରହିଛି। ଶିଶିରେଶ୍ୱର ମନ୍ଦିର ଜଗମୋହନ ପାର୍ଶ୍ୱଦେବତାଭାବେ ଥିବା ଏହି ଲକୁଳୀଶ ପ୍ରତିମାର ଉଚ୍ଚତା ପ୍ରାୟ ୧.୪୦ ମିଟର। ଏହା ଖ୍ରୀ:୯ମ ଶତାବ୍ଦୀର କୃତିବୋଲି ଅନୁମାନ କରାଯାଏ।

ଖ୍ରୀଷ୍ଟୀୟ ୯ମ ଶତାବ୍ଦୀ ପରେ, ଓଡ଼ିଶାରେ ତନ୍ତ୍ରପୂଜା ପରମ୍ପରାର ବିକାଶ ଘଟିବା ସଙ୍ଗେ ସଙ୍ଗେ ଶୈବ କୌଳ ଓ କାପାଳିକ ସନ୍ୟାସୀଙ୍କ ପ୍ରଭାବ ବୃଦ୍ଧି ପାଇଥିଲା। ଏହାଦ୍ୱାରା ମନ୍ଦିର ଗାତ୍ରରେ ପାଶୁପତ ଶୈବଚାର୍ଯ୍ୟ ଲକୁଳୀଶଙ୍କ ମୂର୍ତ୍ତି ଗୌଣ ହୋଇପଡ଼ିଥିବା ଦେଖାଯାଏ। ତେବେ, ଏହି ସମୟର ମନ୍ଦିରମାନଙ୍କରେ ଶିଷ୍ୟମାନଙ୍କୁ ଶିକ୍ଷା ଦେଉଥିବା ତତ୍କାଳୀନ ଗୁରୁମାନଙ୍କ ମୂର୍ତ୍ତି ଅଧିକ ସଂଖ୍ୟାରେ ସ୍ଥାନ ପାଇଛି। ଏହି ପ୍ରକାର ରଚନା ସାଧାରଣତଃ 'ଶିକ୍ଷାସଦନ' ନାମରେ ପରିଚିତ। ଭୁବନେଶ୍ୱରର ଲିଙ୍ଗରାଜ, ବ୍ରହ୍ମେଶ୍ୱର, ମେଘେଶ୍ୱର, ଯମେଶ୍ୱର, ଚିତ୍ରକାରିଣୀ ଇତ୍ୟାଦି ମନ୍ଦିରମାନଙ୍କର ଆବରଣଦେବତାଙ୍କ ମଧ୍ୟରେ ଲକୁଳୀଶଙ୍କ ପ୍ରତିମା ଗୌଣ ହୋଇପଡ଼ିଥିବାବେଳେ ଶିକ୍ଷାସଦନ ମୂର୍ତ୍ତିମାନ ଦେଉଳବାଡ଼ ତଥା ଜଗମୋହନର ବିଭିନ୍ନ ସ୍ଥାନରେ ଏକ ବିଶେଷ ସ୍ଥାନ ଅଧିକାର କରିଥିବା ଦେଖାଯାଏ।

# ଶିବ: ଏକକମୂର୍ତ୍ତି

## ଶିବ: ଶଙ୍କର

'ଶଙ୍କର' ଶିବଙ୍କର ଅନ୍ୟଏକ ନାମ। ଏହାର ଅର୍ଥ ହେଉଛି ମଙ୍ଗଳକର୍ତ୍ତା। ହସ୍ତରେ ତ୍ରିଶୂଳ, ଡ଼ମ୍ବରୁ, ଜପମାଳା, କମଣ୍ଡଳୁ କିମ୍ବା କପାଳପାତ୍ର ଧାରଣ କରିଥିବା ନାଗଭୂଷଣ, ବ୍ୟାଘ୍ରଚର୍ମ ପରିଧାନ ସହିତ ଉର୍ଦ୍ଧ୍ୱଲିଙ୍ଗଥିବା ଶିବଙ୍କ ସାଧାରଣ ମୂର୍ତ୍ତି ବିଭିନ୍ନ ଭଙ୍ଗୀରେ ଦେଖିଯାଏ। କେତେକ ମୂର୍ତ୍ତିରେ ଶିବ ନିଜର ସାଧାରଣ ଆୟୁଧ ସହିତ ଗୋଟିଏ ହସ୍ତ ଅଭୟ ଓ ଅନ୍ୟଟି ବରଦ ମୁଦ୍ରାରେ ରଖିଥାଆନ୍ତି। ଏହା ତାଙ୍କର ମଙ୍ଗଳକର୍ତ୍ତା 'ଶଙ୍କରମୂର୍ତ୍ତି'। ଓଡ଼ିଶାର ମନ୍ଦିରଗାତ୍ରରେ ଓ ଖୋଲାଭାବେ ଏହି ପ୍ରକାର ମୂର୍ତ୍ତି ଦେଖିବାକୁ ମିଳେ। ଖିଚିଂ ସଂଗ୍ରହାଳୟରେ କେତୋଟି ସୁଉଚ୍ଚ ଭଗ୍ନ ଶିବମୂର୍ତ୍ତି ରହିଛି। ମନ୍ଦିରର ଅଙ୍ଗପ୍ରତ୍ୟଙ୍ଗରେ ରହିଥିବା କେତେକ ଚୈତ୍ୟପଦକ ମଣ୍ଡନକୃତି ମଧ୍ୟରେ କେବଳ ଶିବଙ୍କ ଶାନ୍ତମୁଖମଣ୍ଡଳ ଦେଖିବାକୁମିଳେ। ଅନ୍ୟଭାବରେ ଏହା 'ନନ୍ଦିମୁଖ' ନାମରେ ମଧ୍ୟ ପରିଚିତ। ମନ୍ଦିରଗାତ୍ରରେ ଏହାଏକ ଶୁଭ ଅର୍ଥାତ୍ ମଙ୍ଗଳସୂଚକ ଚିହ୍ନ।

## ଶିବ: ଯୋଗେଶ୍ୱର

ଶିବ, ମହାଯୋଗୀ ଅଟନ୍ତି। ମୂର୍ତ୍ତିକଳାରେ ସେ ଯୋଗସନରେ ବସିଥାଆନ୍ତି। ତା'ଙ୍କ ଚର୍ତୁଭୁଜଢ଼୍, ମୁଖ୍ୟ ଦୁଇହସ୍ତ ଯୋଗମୁଦ୍ରାରେ ପାଦଉପରେ ରହିଥିବାବେଳେ ଅନ୍ୟ ଦୁଇହସ୍ତରେ ତ୍ରିଶୂଳ ଓ ଜପମାଳା ଧାରଣ କରିଥିବା ଦେଖାଯାଏ। ହସ୍ତ ସଂଖ୍ୟା ବୃଦ୍ଧିହେଲେ ସେଥିରେ କମଣ୍ଡଳୁ ଓ କପାଳପାତ୍ର ମଧ ଧାରଣ କରିଥାଆନ୍ତି। ଭୁବନେଶ୍ୱରର କେତେକ ପ୍ରାଚୀନ ମନ୍ଦିର ଗାତ୍ରରେ ଯୋଗେଶ୍ୱର-ଶିବଙ୍କ



ଶିବ ଶଙ୍କର, ପାତାଳେଶ୍ୱର ମନ୍ଦିର
ପାଇକପଡ଼ା



ଯୋଗେଶ୍ୱର ଶିବ, ଲିଙ୍ଗରାଜ ମନ୍ଦିର,
ଭୁବନେଶ୍ୱର

କ୍ଷୁଦ୍ର ମୂର୍ତ୍ତିମାନ ରହିଥିବାବେଳେ ପାଇକପଡ଼ାର ପାତାଳେଶ୍ୱର ମନ୍ଦିର ପରିସରରେ ମଧ୍ୟମ ଉଚ୍ଚତାର ଦୁଇଟି ସ୍ୱତନ୍ତ୍ର ଯୋଗମୂର୍ତ୍ତି ରହିଛି। ଏହା ବ୍ୟତୀତ ଭୁବନେଶ୍ୱର, ଲିଙ୍ଗରାଜ ମନ୍ଦିରେ, ଅମଳକ ବେକିରେ ଶିବଙ୍କ ସୁନ୍ଦର ଯୋଗେଶ୍ୱର ମୂର୍ତ୍ତି ସ୍ଥାନିତ ହୋଇଛି।

## ଶିବ: ପରଶୁପାଣି

ବେଦ ଓ ପୁରାଣରେ ରୁଦ୍ର ଏବଂ ଶିବଙ୍କୁ ବନପର୍ବତର ଦେବତା ଭାବେ ଚିତ୍ରଣ କରାଯାଇଛି। ଏହି ପରିପ୍ରେକ୍ଷୀରେ ବନବାସୀଙ୍କ ଏକ ଅସ୍ତ୍ର 'ପରଶୁ' ତା'ଙ୍କ ମୁଖ୍ୟ ଆୟୁଧଭାବେ ଦେଖାଯାଏ। ଏହା ସହିତ ଶିବ ଅନେକ କ୍ଷେତ୍ରରେ ତ୍ରିଶୂଳ ଓ ଅନ୍ୟ ଆୟୁଧ ମଧ ଧାରଣ କରିଥାଆନ୍ତି। ଓଡ଼ିଶାର କେତେକ ପ୍ରାଚୀନ ମନ୍ଦିର ଗାତ୍ରରେ ଶିବଙ୍କର ଏହି ପ୍ରକାର ଦଣ୍ଡାୟମାନ କିମ୍ବା ଆସନମୂର୍ତ୍ତି ରହିଛି। ଏହି ସବୁ ମୂର୍ତ୍ତିରେ କ୍ୱଚିତ୍ ସ୍ଥଳେ ସେ ଦ୍ୱିଭୁଜ ହୋଇଥିବାବେଳେ ଅଧିକାଂଶ ସ୍ଥଳେ ଚର୍ତୁଭୁଜ ଅଟନ୍ତି। କେତେବେଳେ ଆୟୁଧ, ପରଶୁଟି ତାଙ୍କ ଉପର ଦକ୍ଷିଣହସ୍ତରେ ଅନ୍ୟ କେତେକ ସ୍ଥଳେ ବାମହସ୍ତରେ ରହିଥାଏ। ଭୁବନେଶ୍ୱରର ଲକ୍ଷ୍ମଣେଶ୍ୱର ମନ୍ଦିର ପୁଞ୍ଜରେ ଏହି ପ୍ରକାର 'ପରଶୁପାଣି' ଶିବମୂର୍ତ୍ତିର ଭଗ୍ନାବଶେଷ ରହିଛି। ମୁଖଲିଙ୍ଗମ୍‌ରେ ମଧୁକେଶ୍ୱର ମନ୍ଦିର ତଥା ତା'ର ପରିସରରେ ଏହି



ପରଶୁପାଣି ଶିବ, ପାତାଳେଶ୍ୱର ମନ୍ଦିର,ପାଇକପଡ଼ା



ମହେଶମୂର୍ତ୍ତି, ମାଣିକେଶ୍ୱର ମନ୍ଦିର , ଶୁକ୍ଳେଶ୍ୱର

ପ୍ରକାର ଏକାଧିକ ମୂର୍ତ୍ତି ଦେଖାଯାଏ। ପାଇକପଡ଼ାର ପାତାଳେଶ୍ୱର ମନ୍ଦିର ପରିସରରେ ଆସନ ଭଙ୍ଗୀର ଦୁଇଟି ପରଶୁପାଣି ପ୍ରତିମା ରହିଛି। କୋରାପୁଟ ଜିଲ୍ଲା, ବାଲିମେଳାର ଓରକାଲ୍ ଠାରୁ ଏକ ପ୍ରାଚୀନ ପରଶୁପାଣି, ଦଣ୍ଡାୟମାନ ଶିବମୂର୍ତ୍ତି ପ୍ରାପ୍ତ ହୋଇଥିଲା।

**ଶିବ: ମହେଶମୂର୍ତ୍ତି**

ଶିବଙ୍କର ଅନ୍ୟଏକ ନାମ ମହେଶ୍ୱର, ଅର୍ଥାତ୍ ସେ ମହା-ଇଶ୍ୱର। ଏହି ନାମରେ ତା'ଙ୍କ ତିନିମୁଖ୍ୟ ଶକ୍ତି ଯଥା: ସୃଷ୍ଟି, ସ୍ଥିତି, ଓ ପ୍ରଳୟ ବିଦ୍ୟମାନ। ଏହି ମର୍ମରେ ପ୍ରତ୍ୟେକ ମୁଖ ଉପରୋକ୍ତ ଗୋଟିଏ ଭାବକୁ ବୁଝାଏ। ତେବେ, ତା'ଙ୍କ ସୃଷ୍ଟିକର୍ତ୍ତା ମୁଖ ଶାନ୍ତ, ପାଳନକର୍ତ୍ତା ମୁଖ ସୌମ୍ୟ ଓ ସଂହାରକର୍ତ୍ତା ମୁଖ ଉଗ୍ର ଅଟେ। ମୂର୍ତ୍ତିରେ ଏହି ଶେଷମୁଖର ଉଗ୍ରତା ଦାଢ଼ି ଓ ଦନ୍ତରୁ ସୂଚିତ ହୁଏ। ମହେଶମୂର୍ତ୍ତି ସାଧାରଣତଃ ଶିବଙ୍କ ତ୍ରିମୁଖଯୁକ୍ତ ଆବକ୍ଷପ୍ରତିମା। ତେବେ, ସୃଷ୍ଟି ଓ ସ୍ଥିତିଭାବ ପ୍ରକାଶ କରୁଥିବା ମୁଖ ଦ୍ୱୟରେ ବିଶେଷ ପାର୍ଥକ୍ୟ ରହୁନଥିବାବେଳେ ସଂହାରଭାବ ପ୍ରକାଶ କରୁଥିବା ଉଗ୍ରମୁଖର ଭାବ ସ୍ପଷ୍ଟ ହୋଇଥାଏ। ଭାରତର ପଶ୍ଚିମାଞ୍ଚଳ ଏଲିଫେଣ୍ଟା ଗୁମ୍ଫାଠାରେ ଥିବା ବିଶାଳ ମହେଶମୂର୍ତ୍ତିରେ ବାମପାର୍ଶ୍ୱ ମୁଖ ଉଗ୍ର ହୋଇଥିବାବେଳେ ଦକ୍ଷିଣଭାରତର କାବେରପକମ୍ ଓ ଓକାକ୍ଠାରେ ଥିବା ମୂର୍ତ୍ତିରେ ତା'ଙ୍କ ମଧ୍ୟଭାଗ ମୁଖ ଉଗ୍ର ଅଟେ। ମଧ୍ୟଭାରତ ସମେତ ଓଡ଼ିଶାର ମହେଶମୂର୍ତ୍ତିମାନଙ୍କରେ ଦକ୍ଷିଣପାର୍ଶ୍ୱ ମୁଖ ଉଗ୍ର ହୋଇଥିବା ଦେଖାଯାଏ।

ଓଡ଼ିଶାର କେତେକ ପ୍ରାଚୀନ ମନ୍ଦିର ଗାତ୍ରରେ ମହେଶମୂର୍ତ୍ତି ରହିଛି। ଭୁବନେଶ୍ୱରର ପରଶୁରାମେଶ୍ୱର ମନ୍ଦିର, ଜଗମୋହନ, ଉତ୍ତରପାର୍ଶ୍ୱ ବାଡ଼ର ଏକ ଚୈତ୍ୟପଦକ ମଧ୍ୟରେ ଶିବଙ୍କ ଆବକ୍ଷ ଅବୟବ ସହିତ ତିନିମସ୍ତକ ଦେଖାଯାଏ। ଏହି ତ୍ରିନେତ୍ର ପ୍ରତିମାଗୁଡ଼ିକ ଦେହରେ ସ୍ୱଳ୍ପ ଅଳଙ୍କାର ରହିଥିବାବେଳେ ନିମ୍ନଭାଗ ଅବକ୍ଷୟିତ। ଅନ୍ୟଏକ ବିକଶିତ କଳାଶୈଳୀର ମହେଶମୂର୍ତ୍ତି ଦେଉଳଗଣ୍ଡି, ସମ୍ମୁଖ ରାହାପାଗର ଏକ ଚୈତ୍ୟପଦକ ନକ୍ସା ମଧ୍ୟରେ ରହିଛି। ଏଥିରେ ଶିବଙ୍କ ଗୋଟିଏ ଆବକ୍ଷ ଶରୀର ସହିତ ତିନିମୁଖ ସଂଯୋଗ ହୋଇଛି। ଏହିପରି ମୂର୍ତ୍ତି ମାହାଙ୍ଗା ନିକଟ

ଶୁକ୍ଳେଶ୍ୱର, ମାଣିକେଶ୍ୱର ମନ୍ଦିରର ଏକ ଭଗ୍ନାବଶେଷରେ ଦେଖିବାକୁ ମିଳେ। ମୁଖଲିଙ୍ଗମ୍, ମଧୁକେଶ୍ୱରଙ୍କ ଦେଉଳ ପୂର୍ବପାର୍ଶ୍ୱ ଗଣ୍ଡିର ଏକ ଚୈତ୍ୟପଦକରେ ମଧ୍ୟ ସୁନ୍ଦର ମହେଶମୂର୍ତ୍ତି ଉତ୍କୀର୍ଣ୍ଣ ହୋଇଛି।

## ଶିବ: ଚନ୍ଦ୍ରଶେଖର ମୂର୍ତ୍ତି

ସମୁଦ୍ରମନ୍ଥନ ବେଳେ ନିର୍ଗତ ହୋଇଥିବା ବିଷ ପାନକରିବାପରେ ତା'ର ଜ୍ୱାଳାରୁ ଉପଶମ ନିମନ୍ତେ ତଥା ସଂସାରର ଶାନ୍ତି ଓ ଶୀତଳ ନିମନ୍ତେ ଶିବ ମସ୍ତକରେ ଚନ୍ଦ୍ରଧାରଣ କରିଥାଆନ୍ତି। ଏହା ଶିବଙ୍କ 'ସୋମ'ରୂପ ଅଟେ। ମୂର୍ତ୍ତିକଳାରେ ଯୋଗସନ କିମ୍ୱା ତ୍ରିଭଙ୍ଗରେ ଦଣ୍ଡାୟମାନ ଶିବଙ୍କ ହସ୍ତରେ ପରଶୁ ତଥା ଅନ୍ୟଆୟୁଧ ସହିତ ମୃଗ କିମ୍ୱା ଶଶକ ରହିଥିବା ମୂର୍ତ୍ତି 'ଚନ୍ଦ୍ରଶେଖର'ଭାବେ ପରିଚିତ ହୁଅନ୍ତି। କେତେକ ମୂର୍ତ୍ତିର ମସ୍ତକରେ ଚନ୍ଦ୍ର ରହିଥିବାବେଳେ ଓଡ଼ିଶାର ଶିବମୂର୍ତ୍ତିମାନଙ୍କରେ ଏହି ଚିହ୍ନ ସ୍ପଷ୍ଟ ହୁଏନାହିଁ। ଏଠାରେ ଶଶକ ଓ ମୃଗକୁ ଚନ୍ଦ୍ରଙ୍କ ପ୍ରତୀକ ଭାବେ ଗ୍ରହଣ କରାଯାଏ।

## ଶିବ: ବୀଣାଧରମୂର୍ତ୍ତି

ଶିବ ସଙ୍ଗୀତ ତଥା ବାଦ୍ୟ ବିଦ୍ୟାର ସ୍ରଷ୍ଟା। ଏହଦ୍ୱାରା ସେ ସଂସାରକୁ ଛନ୍ଦମୟ ତଥା ସଙ୍ଗୀତମୟ କରିଥାଆନ୍ତି। ମୂର୍ତ୍ତିକଳାରେ ସେ ଲଳିତାସନରେ ବସି ମୁଖ୍ୟ ଦୁଇ ହସ୍ତରେ ବୀଣାବାଦନ କରୁଥିବାବେଳେ ଅନ୍ୟଦୁଇ ମୁଖ୍ୟ ହସ୍ତରେ ତ୍ରିଶୂଳ ଓ ଏକ ପୁଷ୍ପ ଧାରଣ କରିଥିବା ଦେଖାଯାଏ। ଏହା ବ୍ୟତୀତ ତା'ଙ୍କ ବାହନ ବୃଷଭଟି ଆସନ ତଳେ ଉପସ୍ଥିତଥାଏ। ଏହି ପ୍ରକାର ଦୁଇଟି ସୁନ୍ଦର ମୂର୍ତ୍ତି ମଧ୍ୟରୁ ଗୋଟିଏ ଜଗତ୍‌ସିଂହପୁର ନିକଟ ସଠଳପୁରର ମାତୃକାମୂର୍ତ୍ତି ସହିତ ଓ ଅନ୍ୟଟି ଯାଜପୁର ଜିଲ୍ଲାର ଧର୍ମଶାଳାଠାରେ ରହିଛି। ଭୁବନେଶ୍ୱର ନିକଟ ହୀରପୁର ଚୌଷଠୀଯୋଗିନୀ ମନ୍ଦିର ପରିସରରେ ବୀଣାଧର ଶିବଙ୍କ ଏକ ଭଗ୍ନମୂର୍ତ୍ତି ଦେଖାଯାଏ। କେତେକ ମାତୃକାମୂର୍ତ୍ତିର ଦକ୍ଷିଣ ପାର୍ଶ୍ୱରେ ବୀଣାଧର ଶିବଙ୍କ ପ୍ରତିମା ରହିଥାଏ। କେତେକ ସ୍ଥଳେ ଶିବ ବୀଣାଧାରଣ କରି ନୃତ୍ୟକରୁଥିବା ମଧ୍ୟ ଦେଖିବାକୁମିଳେ। କେନ୍ଦୁଝର ନିକଟ ଅସନପାଟ ଗ୍ରାମରୁ ପ୍ରାପ୍ତ ହୋଇଥିବା ଏହି ପ୍ରକାର ପ୍ରାଚୀନ ମୂର୍ତ୍ତିର ସୂଚନା ଏହି ପୁସ୍ତକରେ ଦିଆଯାଇଥିବାବେଳେ ଭୁବନେଶ୍ୱର, ବ୍ରହ୍ମେଶ୍ୱରମନ୍ଦିର ଗାତ୍ରରେ ବୀଣାଧରଶିବଙ୍କ ଏକ ସୁନ୍ଦର ନୃତ୍ୟମୂର୍ତ୍ତି ଉତ୍କୀର୍ଣ୍ଣ ହୋଇଛି।

## ଶିବ: ଗଙ୍ଗାଧରମୂର୍ତ୍ତି

ମହାଭାରତର ଏକ ଆଖ୍ୟାନ ଅନୁଯାୟୀ, ଭଗୀରଥ ନିଜ ପିତୃପୁରୁଷଙ୍କ ମୁକ୍ତି ନିମନ୍ତେ କଷ୍ଟସାଧ୍ୟ ତପସ୍ୟା କରି ଗଙ୍ଗାଙ୍କୁ ସ୍ୱର୍ଗରୁ ଆଣିବା ବ୍ୟବସ୍ଥା କଲେ। ତେବେ, ଗଙ୍ଗା ଭଗୀରଥଙ୍କ ଅନୁରୋଧ ରକ୍ଷାକରି ପୃଥିବୀପୃଷ୍ଠରେ ଅବତରଣ କରିବା ପୂର୍ବରୁ ପୃଥିବୀ ତା'ଙ୍କ ପତନଭାର ସହ୍ୟ କରିବାକୁ ଅକ୍ଷମ ପ୍ରକାଶକଲେ। ସମସ୍ୟାର ସମାଧାନ ନିମନ୍ତେ ଭଗୀରଥ ପୁନଶ୍ଚ ତପସ୍ୟା କରି ଶିବଙ୍କୁ ସନ୍ତୁଷ୍ଟ କରିବାଦ୍ୱାରା ଶିବ ନିଜ ମସ୍ତକରେ ଗଙ୍ଗାଙ୍କୁ ଧାରଣ କରିଥିଲେ। ଏହି ବିଷୟ ଉପରେ ଆଧାରିତ ଶିବଙ୍କ 'ଗଙ୍ଗାଧରମୂର୍ତ୍ତି'। ମୂର୍ତ୍ତିକଳାରେ ଗଙ୍ଗାଧର ସର୍ବଦା ଚର୍ତୁଭୁଜ। ତା'ଙ୍କ ଦୁଇହସ୍ତରେ ତ୍ରିଶୂଳ, କମଣ୍ଡଳୁ ଓ କେତେକ ସ୍ଥଳେ ଜପମାଳା ରହିଥିବାବେଳେ ତଳ ଦକ୍ଷିଣହସ୍ତ ବରଦମୁଦ୍ରାରେ ଥାଏ ଏବଂ ଗୋଟିଏ ଉପର ହସ୍ତର ଦୁଇ ଅଙ୍ଗୁଳିରେ ତାଙ୍କ ଜଟାରୁ ପ୍ରବାହିତ ଜଳଧାରାକୁ ସ୍ପର୍ଶ କରୁଥିବା



ଗଙ୍ଗାଧରମୂର୍ତ୍ତି, ପାଇକପଡ଼ା



ଶିବ: ବୀଣାଧରମୂର୍ତ୍ତି, ଧର୍ମଶାଳା

ଦେଖାଯାଏ। କେତେକ ରଚନାରେ ସେ ସମଭଙ୍ଗରେ ଓ ଅନ୍ୟ କେତେକ ସ୍ଥଳେ ତ୍ରିଭଙ୍ଗରେ ଦଣ୍ଡାୟମାନ ହୋଇଥାଆନ୍ତି। ଏଠାରେ ତା'ଙ୍କ ଊର୍ଦ୍ଧ୍ୱ ଲିଙ୍ଗ ବ୍ୟତୀତ ମସ୍ତକରେ ଜଟାମୁକୁଟ ଓ ଦେହରେ ସ୍ୱଳ୍ପ ବସ୍ତ୍ରାଳଙ୍କାର ଦୃଷ୍ଟିଗୋଚର ହୁଏ। ଅଧିକାଂଶ ସ୍ଥଳେ ଭଗୀରଥ ଶିବଙ୍କ ଦକ୍ଷିଣପାର୍ଶ୍ୱରେ ଯୋଡ଼ହସ୍ତରେ ଉଭା ହୋଇଥିବାବେଳେ ଗଙ୍ଗା ବାମପାର୍ଶ୍ୱରେ ସାବଲୀଳ ଭଙ୍ଗୀରେ ଦେଖାଯାଆନ୍ତି। କେତେକ ସ୍ଥଳେ ମୂର୍ତ୍ତିରେ ଦେବୀ ଶିବଙ୍କ ଉପର ଦକ୍ଷିଣ ଭାଗରୁ ଅବତରଣ କରୁଥିବା ଭଙ୍ଗୀରେ ରହିଥାଆନ୍ତି।

ଓଡ଼ିଶାର କେତେକ ପ୍ରାଚୀନ ମନ୍ଦିରର ଆବରଣଦେବତାଙ୍କ ମଧ୍ୟରେ ଶିବଙ୍କ ଗଙ୍ଗାଧରମୂର୍ତ୍ତି ଦେଖିବାକୁମିଳେ। ଭୁବନେଶ୍ୱରର ମାର୍କେଣ୍ଡେଶ୍ୱର ଓ ଶିଶିରେଶ୍ୱର ମନ୍ଦିର, ସିଂହନାଥ ଶିବମନ୍ଦିର, ପାଇକପଡ଼ାର ପାତାଳେଶ୍ୱର ମନ୍ଦିର ସମେତ ଯାଜପୁର ଓ ମୁଖଲିଙ୍ଗମ୍‌ରେ ଏହି ପ୍ରକାର କେତେକ ମୂର୍ତ୍ତି ରହିଛି। ତେବେ, ଖ୍ରୀ:୯ମ ଶତାବ୍ଦୀ ପରେପରେ ମନ୍ଦିରଗାତ୍ରରେ ଗଙ୍ଗାଧର ମୂର୍ତ୍ତିର ଗୁରୁତ୍ୱ ହ୍ରାସ ପାଇଥିବା ଲକ୍ଷ୍ୟ କରାଯାଏ।

## ଶିବ: ଦକ୍ଷିଣମୂର୍ତ୍ତି

ଦେବୀ ପାର୍ବତୀଙ୍କୁ ଧର୍ମଶାସ୍ତ୍ର ଶ୍ରବଣ କରାଉଥିବାବେଳେ କିମ୍ବା ଦେବତା ଓ ମୁନି, ଋଷିମାନଙ୍କୁ ଧର୍ମଶାସ୍ତ୍ର ଶିକ୍ଷା ଦେବାବେଳେ ଶିବ ଦକ୍ଷିଣମୁଖହୋଇ ଯୋଗାସନରେ କିମ୍ବା ଲଳିତାସନରେ ବସନ୍ତି। ଏହି ସମୟରେ ତା'ଙ୍କ ଦୃଷ୍ଟି ନାସାଗ୍ରରେ ଏବଂ ଦୁଇ ହସ୍ତ ବ୍ୟାଖ୍ୟାନ ମୁଦ୍ରାରେ ଥାଏ। ଏହି ରୂପରେ ଶିବ ଦକ୍ଷିଣଭାରତୀୟ ଆଗମ ଶାସ୍ତ୍ରଗୁଡ଼ିକ ସୃଷ୍ଟି କରିଥିବା ଉଲ୍ଲେଖ ଅଛି। ଏଣୁ ଦକ୍ଷିଣାଞ୍ଚଳରେ-ଶିବଙ୍କ ପ୍ରସ୍ତର ଓ ମିଶ୍ରିତଧାତୁ ବା ବ୍ରୋଞ୍ଜ୍ ନିର୍ମିତ 'ଦକ୍ଷିଣମୂର୍ତ୍ତି' ସଂଖ୍ୟା ସର୍ବାଧିକ। ଦକ୍ଷିଣଭାରତୀୟ ମୂର୍ତ୍ତିତତ୍ତ୍ୱ ଉପରେ ଆଧାରିତ ରଚନା ଓଡ଼ିଶାରେ ପ୍ରାୟ ଦେଖାଯାଏ ନାହିଁ। ତେବେ, ଶିବଙ୍କ ଅବତାରବୋଲି ଗ୍ରହଣ କରାଯାଉଥିବା ଶୈବଗୁରୁ ଲକୁଳୀଶଙ୍କ ମୂର୍ତ୍ତି ଏହି ଭାବଭଙ୍ଗୀରେ ଦେଖିବାକୁମିଳେ। କେତେକ ବିଦ୍ୱାନଙ୍କ ମତରେ ମନ୍ଦିରର ଦକ୍ଷିଣପାର୍ଶ୍ୱରେ ଯୋଗାସନରେ ଥିବା ଶିବଙ୍କ ମୂର୍ତ୍ତିକୁ 'ଯୋଗାସନ-ଦକ୍ଷିଣମୂର୍ତ୍ତି'ଭାବେ ଗ୍ରହଣ କରାଯାଇପାରେ। ମୁଖଲିଙ୍ଗମ୍‌ର ସୋମେଶ୍ୱର

ମନ୍ଦିର ପରିସର ଓ ଭୁବନେଶ୍ୱରର ବ୍ରହ୍ମେଶ୍ୱର ମନ୍ଦିର ପରିସର ବାଡ଼ରେ ଦକ୍ଷିଣଭାରତୀୟ ଶୈଳୀର ଶିବଙ୍କ ଦକ୍ଷିଣମୂର୍ତ୍ତି ପ୍ରତିମା ଦେଖିବାକୁମିଳେ।

## ଶିବ: ବୃଷଭାରୂଢ଼ମୂର୍ତ୍ତି

ଶିବଙ୍କ ବାହାନ ବୃଷଭ ଶରୀରର ପ୍ରତୀକ ହୋଇଥିବାବେଳେ ସ୍ୱୟଂ ଶିବ ଆତ୍ମା ଅଟନ୍ତି। ଏହି ମର୍ମରେ ଶିବଙ୍କ 'ବୃଷଭାରୂଢ଼ମୂର୍ତ୍ତି'ର ପରିକଳ୍ପନା। ପୁରାଣ ଓ କାବ୍ୟମାନଙ୍କରେ ଶିବଙ୍କ ବାହନ ବୃଷଭ ବିଷୟରେ ବିଭିନ୍ନ ଆଖ୍ୟାନ ରହିଥିବାବେଳେ ଉତ୍ତର ଓ ମଧ୍ୟଭାରତର ବିଭିନ୍ନ ସ୍ଥାନରେ ଶିବଙ୍କ ଭିନ୍ନ ଭିନ୍ନ ଭଙ୍ଗୀର ବୃଷଭାରୂଢ଼ମୂର୍ତ୍ତି ଦେଖିବାକୁମିଳେ। ତେବେ, ଓଡ଼ିଶାରେ ଏହି ପ୍ରକାର ମୂର୍ତ୍ତିର ସଂଖ୍ୟା ଯଥେଷ୍ଟ କମ୍।



ଶିବ: ବୃଷଭାରୂଢ଼ମୂର୍ତ୍ତି, ଯାଜପୁର

ଯାଜପୁରର ଅଠରନଳାରେ ସଂଯୋଗ ହୋଇଥିବା କୌଣସି ପ୍ରାଚୀନ ମନ୍ଦିରର ଏକ ପଥର ଖଣ୍ଡରେ ଶିବ ବୃଷଭ ଉପରେ ଆସନ ଗ୍ରହଣ କରିଥିବାବେଳେ ତା'ଙ୍କ ପୃଷ୍ଠ ଓ ସମ୍ମୁଖଭାଗରେ ଶିବଗଣମାନେ ଗମନ କରୁଥିବା ଦେଖାଯାଏ। ଭୁବନେଶ୍ୱରର ଶତ୍ରୁଘ୍ନେଶ୍ୱର ମନ୍ଦିର ଗାତ୍ରରେ ଥିବା ଶିବବିବାହ ଦୃଶ୍ୟରେ ସେ ବୃଷଭ ଉପରେ ଯାତ୍ରା କରୁଛନ୍ତି। ମୁଖଲିଙ୍ଗମ୍‌ର ମଧୁକେଶ୍ୱର ମନ୍ଦିର ପରିସରରେ ଥିବା ଏକ ଛୋଟ ଦେଉଳର ଚୈତ୍ୟପଦକ ମଣ୍ଡନକୃତିରେ ଶିବପାର୍ବତୀ ବୃଷଭ ଉପରେ ଆରୋହଣ କରିଥିବା ମୂର୍ତ୍ତି ରହିଛି।

# ଶିବ: ନୃତ୍ୟମୂର୍ତ୍ତି, ନଟରାଜ

## ଶିବ: ନଟରାଜ

ଶିବ ନୃତ୍ୟର ସ୍ରଷ୍ଟା ଅଟନ୍ତି। ଏଣୁ ସେ ନଟରାଜ ନାମରେ ଖ୍ୟାତ। ପ୍ରଥମେ ଏହି ବିଦ୍ୟା ସେ ତଣ୍ଡ ନାମକ ମୁନିଙ୍କୁ ଶିକ୍ଷା ଦେଇଥିଲେ। ତଣ୍ଡମୁନି ଏହାର ପ୍ରଚ୍ଚର ପ୍ରସାର କରାଇଥିବାରୁ ଶିବଙ୍କ ଏହି ନୃତ୍ୟ 'ତାଣ୍ଡବ' ଭାବରେ ମଧ ପରିଚିତ। ତାଣ୍ଡବ ବହୁବିଧ ହେଲେହେଁ, ମୁଖ୍ୟତଃ ଏହା ଦୁଇ ଶ୍ରେଣୀରେ ବିଭକ୍ତ, ଯଥା: ଲଳିତତାଣ୍ଡବ ବା ଆନନ୍ଦତାଣ୍ଡବ ଓ ଉଗ୍ରତାଣ୍ଡବ। ଶିବଙ୍କ ଏହି ନୃତ୍ୟ ବାସ୍ତବରେ ସୃଷ୍ଟି କ୍ରିୟାର ଛନ୍ଦମୟ ଚଳନକୁ ସଙ୍କେତ କରେ। ଏହା ସୁନ୍ଦର, ସାବଲୀଳ କିମ୍ୱା

ଭୀମଭୟଙ୍କର ହୋଇପାରେ। ମୂର୍ତ୍ତିକଳାରେ ଦ୍ୱିଭୁଜରୁ ଚତୁର୍ଦ୍ଦଶଭୁଜ ବିଶିଷ୍ଟ ନଟରାଜ ମୂର୍ତ୍ତିମାନ ଦେଖିବାକୁମିଳେ। ତା'ଙ୍କର ମୁଖ୍ୟ ଦୁଇହସ୍ତ କିମ୍ବା ଚାରିହସ୍ତ ନୃତ୍ୟ ଭଙ୍ଗୀରେ ରହୁଥିବାବେଳେ ଅନ୍ୟ ହସ୍ତଗୁଡ଼ିକରେ ସେ ବିଭିନ୍ନ ଆୟୁଧ ଧାରଣ କରିଥାଆନ୍ତି। ଅନେକ ମୂର୍ତ୍ତିରେ ସେ ଊର୍ଦ୍ଧ୍ୱ ଦୁଇ ହସ୍ତରେ, ମସ୍ତକ ଉପରେ ଏକ ନାଗ ଧାରଣକରି ଅନ୍ୟଏକ ହସ୍ତରେ ତା'ଙ୍କ ବାମପାର୍ଶ୍ୱରେ ଉପସ୍ଥିତ ଥିବା ପାର୍ବତୀଙ୍କ ଚିବୁକ କିମ୍ବା ମୁଖକୁ ସ୍ପର୍ଶକରୁଥିବା ଦେଖାଯାଏ। କେତେକ ସ୍ଥଳେ ସେ ଅପସ୍ମାରପୁରୁଷ ଉପରେ ଉଭାହୋଇଥାନ୍ତି। ନୃତ୍ୟରତ ଶିବଙ୍କ ଗଣମାନେ ମଧ୍ୟ ତା'ଙ୍କ ସହିତ ବାଦ୍ୟବାଦନକରି ନୃତ୍ୟକରୁଥିବା ଦେଖାଯାଏ। ସୂଚନାଯୋଗ୍ୟ ଯେ, ଓଡ଼ିଶାର ନଟରାଜ ମୂର୍ତ୍ତିଗୁଡ଼ିକ ଲାସ୍ୟତାଣ୍ଡବ ବା ଲଳିତତାଣ୍ଡବ ଶ୍ରେଣୀର ରଚନା ଅଟେ। ତେବେ, ଦକ୍ଷିଣଭାରତୀୟ ମୂର୍ତ୍ତିକଳାରେ ଉଗ୍ରତାଣ୍ଡବ ଶୈଳୀଗୁଡ଼ିକ ଲୋକପ୍ରିୟ।



ନଟରାଜ, ଅସନପାଟ, କେନ୍ଦୁଝର
(ଓଡ଼ିଶା ରାଜ୍ୟ ସଂଗ୍ରହାଳୟ)



ଦଶଭୁଜ ନଟରାଜ,
ମୁକ୍ତେଶ୍ୱର ମନ୍ଦିର ପରିସର, ଭୁବନେଶ୍ୱର

କେନ୍ଦୁଝର ଜିଲ୍ଲା, ଅସନପାଟ ଗ୍ରାମରୁ ପ୍ରାପ୍ତ ନୃତ୍ୟଶିବ-ନଟରାଜ ପ୍ରତିମାଟି ବର୍ତ୍ତମାନ ଓଡ଼ିଶା ରାଜ୍ୟ ସଂଗ୍ରାହଳୟରେ ରହିଛି। ଧୂସରିଆ ଏକ ଆୟତାକାର, ଚଟକା ପଥର ଉପରେ ଖୋଦିତ ଏହି କୃତିଟିର ଉପର ଭାଗରେ ଅଷ୍ଟଭୁଜ ଶିବଙ୍କ ପ୍ରତିମା ରହିଥିବାବେଳେ ନିମ୍ନ ଭାଗରେ ଏକ ଅଭିଲେଖ ଉତ୍କୀର୍ଣ୍ଣ ହୋଇଛି। ଏହି ଉଲଗ୍ନ, ଊର୍ଦ୍ଧ୍ୱଲିଙ୍ଗ ମୂର୍ତ୍ତି ମସ୍ତକର ଊର୍ଦ୍ଧ୍ୱଜୁଡ଼ାରେ ପଦକଯୁକ୍ତ ରୁଦ୍ରାକ୍ଷମାଳା ଓ କଟିରେ କେବଳ ଏକ କଟିସୂତ୍ର ଦେଖିବାକୁମିଳେ। ଅର୍ଥାତ୍ ମୂର୍ତ୍ତି ବସ୍ତ୍ରାଳଙ୍କାର ବିହୀନ। ଏଠାରେ ଶିବ ତାଙ୍କ ଅଷ୍ଟଭୁଜରୁ ମୁଖ୍ୟ ଦୁଇହସ୍ତରେ ବୀଣା, ଉପର ଦକ୍ଷିଣ ଓ ବାମ ହସ୍ତରେ ମସ୍ତକ ଉପରେ ନାଗ ଧାରଣ କରିଛନ୍ତି। ଏହା ସହିତ ଅନ୍ୟ ଦକ୍ଷିଣ ହସ୍ତ ଦ୍ୱୟରେ ରହିଛି ଛୁରୀକା ଓ ଜପମାଳା। ସେହିପରି ଉପର ବାମ ହସ୍ତରେ ପତାକାଯୁକ୍ତ ତ୍ରିଶୂଳ ଧାରଣ କରିଥିବାବେଳେ ଅନ୍ୟ ହସ୍ତଟିରେ ବରଦମୁଦ୍ରା ପ୍ରଦର୍ଶନ କରୁଛନ୍ତି। ନୃତ୍ୟବିତ୍‌ଙ୍କ ମତରେ ରଚନାଟି ଶିବଙ୍କ 'ଲଳିତତାଣ୍ଡବ' ନୃତ୍ୟ। ଏହା ବ୍ୟତୀତ ମୂର୍ତ୍ତିର ଦକ୍ଷିଣ ପାର୍ଶ୍ୱରେ ଯୋଡ଼ହସ୍ତରେ ଜଣେ ଭକ୍ତ କିମ୍ବା ରାଜା ଆସନ ଗ୍ରହଣ କରିଥିବାବେଳେ ବାମ ପାର୍ଶ୍ୱରେ ତାଙ୍କ ବାହନ ବୃଷଭଟି ଊର୍ଦ୍ଧ୍ୱମୁଖ ହୋଇ ଶିବଙ୍କୁ ଚାହିଁଛି।

ସୂଚନାଯୋଗ୍ୟ ଯେ, ଉପରୋକ୍ତ ରଚନାରେ ଶିବ ଧାରଣ କରିଥିବା ବୀଣାଟି ବର୍ତ୍ତମାନ ସେହି ଅଞ୍ଚଳର ଆଦିବାସୀମାନେ ବ୍ୟବହାର କରୁଥିବା 'ଟୁଇଲା' ବାଦ୍ୟଯନ୍ତ୍ର ସଦୃଶ। ଏହା ବ୍ୟତୀତ କୃତିଟିରେ ଜନଜାତିର ରୂପ, ସ୍ୱରୂପର ବଳିଷ୍ଠ ପ୍ରଭାବ ରହିଛି। ମୂର୍ତ୍ତି ନିମ୍ନରେ ଥିବା ଅଭିଲେଖର 'ଶତ୍ରୁଭଞ୍ଜ' ରାଜାଙ୍କ ନାମକୁ ଦେଖି କେତେକ ଏହି ମୂର୍ତ୍ତିକୁ ଖ୍ରୀ: ୫ମ ଶତାବ୍ଦୀର ବୋଲି ଅନୁମାନ କରୁଥିବାବେଳେ ଅନ୍ୟ କେତେକ ଏହାକୁ ଖ୍ରୀ: ୭ମ ଶତାବ୍ଦୀ ପ୍ରାରମ୍ଭ ସମୟର ରଚନା ବୋଲି ମତ ଦିଅନ୍ତି। ଅନ୍ୟ ଭାବରେ କୃତିଟି ଓଡ଼ିଶା କାହିଁକି, ଭାରତର ପ୍ରାଚୀନତମ 'ବୀଣାଧରଶିବ-ନୃତ୍ୟମୂର୍ତ୍ତି' ବୋଲି ବିଶ୍ୱାସ କରାଯାଏ।

ଭୁବନେଶ୍ୱରର ମୁକ୍ତେଶ୍ୱର ମନ୍ଦିର ପରିସରରେ ଥିବା ଏକ ଛୋଟ ପୀଢ଼ଦେଉଳ ମଧ୍ୟରେ ଅନ୍ୟ ସ୍ଥାନରୁ ସଂଗୃହୀତ ହୋଇଥିବା ଏକ ପ୍ରାଚୀନ ଶୈଳୀର ନଟରାଜ ପ୍ରତିମା ଦେଖିବାକୁମିଳେ। ପ୍ରାୟ ବର୍ଗାକାର ଏକ ଚଟକା ପଥରରେ ଖୋଦିତ କୃତିଟି ବୋଧହୁଏ ପୂର୍ବେ କୌଣସି ଏକ ମନ୍ଦିରର ଗବାକ୍ଷଭାବେ ସ୍ଥାନିତ ହୋଇଥିଲା। ଦଶଭୁଜ ମୂର୍ତ୍ତିଟିର ମୁଖ୍ୟ ଦୁଇହସ୍ତ ଗୋଟିକଉପରେ ଗୋଟିଏ ଗଜହସ୍ତ ମୁଦ୍ରାରେ ରହିଥିବାବେଳେ ଅନ୍ୟ ଦୁଇହସ୍ତରେ ସେ ଦୁଇ ପାର୍ଶ୍ୱରେ ଲମ୍ୱିଥିବା ନିଜର ଉତ୍ତରୀୟକୁ ଧାରଣ କରିଛନ୍ତି। ଉର୍ଦ୍ଧ୍ୱକୁ ଉତ୍ତୋଳିତ ଦୁଇ ହସ୍ତରେ ମସ୍ତକ ଉପରେ ନାଗ ଧାରଣ କରିଥିବା ଦେଖାଯାଏ। ଏହା ବ୍ୟତୀତ ଦକ୍ଷିଣପାର୍ଶ୍ୱର ଅବଶିଷ୍ଟ ଦୁଇ ହସ୍ତରେ ଯଥାକ୍ରମେ ତ୍ରିଶୂଳ ଓ ଜପମାଳା ଏବଂ ବାମପାର୍ଶ୍ୱର ଦୁଇ ହସ୍ତରେ ବୀଣା ଓ କମଣ୍ଡଳୁ ରହିଛି। ଲଳିତ ନୃତ୍ୟଭଙ୍ଗୀରେ ଥିବା ପାଦର ଦକ୍ଷିଣପାର୍ଶ୍ୱରେ ଗଣେଶ ନୃତ୍ୟଭଙ୍ଗୀରେ ଏବଂ ବାମପାର୍ଶ୍ୱରେ ଜଣେ ଗଣ ମୃଦଙ୍ଗଯୁଗଳ ବାଦନ କରୁଥିବା ଦେଖାଯାଏ। ଉର୍ଦ୍ଧ୍ୱଲିଙ୍ଗ ମୂର୍ତ୍ତିଟିର ମସ୍ତକରେ ଜଟାମୁକୁଟ, କଟିରେ ବ୍ୟାଘ୍ରଚର୍ମର ପରିଧେୟ ସହିତ ଅଙ୍ଗପ୍ରତ୍ୟଙ୍ଗରେ ପ୍ରାଚୀନ ଶୈଳୀର ବିବିଧ ଅଳଙ୍କାର ରହିଛି। ଏହି କୃତିଟି ପଶ୍ଚିମଭାରତର ବାଦାମିରେ ଥିବା ଏକ ପ୍ରାଚୀନ ନଟରାଜ ମୂର୍ତ୍ତିର ମୂର୍ତ୍ତିତତ୍ତ୍ୱ ଓ ଶୈଳୀ ସହିତ ବହୁଭାବରେ ସମତା ରକ୍ଷାକରେ। ଓଡ଼ିଶାରେ ପ୍ରାଚୀନ କାଳର ଏହାଏକ ବଳିଷ୍ଠ କୃତି କହିଲେ ଅତ୍ୟୁକ୍ତି ହେବନାହିଁ ଯାହାକି, ଖ୍ରୀ:୫ମ-୬ମ ଶତାବ୍ଦୀର ହୋଇଥିବା ସମ୍ଭବ।

କଳିଙ୍ଗର ପ୍ରାଚୀନ ମନ୍ଦିର ମୂର୍ତ୍ତିକଳାରେ ନଟରାଜ ଏକ ମୁଖ୍ୟସ୍ଥାନ ଅଧିକାର କରନ୍ତି। ଦେଉଳ ଗଣ୍ଡିର ସମ୍ମୁଖ ଓ କେତେକ ସ୍ଥଳେ ଅନ୍ୟ ପାର୍ଶ୍ୱର ରାହାପାଗରେ ଥିବା 'ଭୋ' ବା 'ବଜ୍ରମସ୍ତକ' ନକ୍ସାର ଉପର ଚୈତ୍ୟପଦକରେ ନଟରାଜଙ୍କ ପ୍ରତିମା ଦେଖିବାକୁମିଳେ। ଅଧିକାଂଶ ପ୍ରାଚୀନ ମନ୍ଦିର ମଣ୍ଡନକୃତିର ଏହା ଅନିବାର୍ଯ୍ୟ ଅଙ୍ଗ ହୋଇଥିବାବେଳେ ଖ୍ରୀ: ୧୦ମ ଶତାବ୍ଦୀ ଓ ତା'ର ପରବର୍ତ୍ତୀ ସମୟର ମନ୍ଦିରମାନଙ୍କ ଏହି ବ୍ୟବସ୍ଥାରେ ଅନେକ ପରିବର୍ତ୍ତନ ଲକ୍ଷ୍ୟ କରାଯାଏ। ତେବେ, ଅଧିକାଂଶ ପ୍ରାଚୀନ ତଥା ମଧ୍ୟଯୁଗୀୟ ଶିବମନ୍ଦିରର ଆବରଣଦେବତାଙ୍କ ମଧ୍ୟରେ ବିଭିନ୍ନ ଆକାର ପ୍ରକାରର ନଟରାଜ ମୂର୍ତ୍ତି ସ୍ଥାନିତ ହୋଇଛି। ଭୁବନେଶ୍ୱରର ପ୍ରାଚୀନ ଶତ୍ରୁଘ୍ନେଶ୍ୱର ମନ୍ଦିରର ସମ୍ମୁଖ ରାହାପାଗରେ ଥିବା ଦ୍ୱାଦଶଭୁଜ ନଟରାଜ ମୂର୍ତ୍ତିଟି ଉଲ୍ଲେଖଯୋଗ୍ୟ। ମୂର୍ତ୍ତିଟିର ବକ୍ଷଃ ନିକଟର ଦୁଇହସ୍ତ ଭଗ୍ନ ହେଲେହେଁ ଗୋଟିଏ ହସ୍ତ ଖେଟକ ଓ ଅନ୍ୟ ଏକ ହସ୍ତ ଗଜହସ୍ତମୁଦ୍ରା ଏବଂ ଅନ୍ୟ ଦୁଇହସ୍ତ ଜଂଘ ନିକଟରେ, ନୃତ୍ୟର ଅର୍ଦ୍ଧଚନ୍ଦ୍ରମୁଦ୍ରା ପ୍ରଦର୍ଶନ କରୁଥିବା ଦେଖାଯାଏ। ଉପର ଦୁଇ ହସ୍ତରେ ଏକ ନାଗକୁ ମସ୍ତକ ଉପରେ, ଅର୍ଦ୍ଧଚକ୍ରାକାରରେ ଧାରଣ କରିବା ସହିତ ବାମପାର୍ଶ୍ୱର ଗୋଟିଏ ହସ୍ତରେ ଡ଼ମରୁ ଧାରଣ କରିଛନ୍ତି। ଦୁର୍ଭାଗ୍ୟ ବଶତଃ ଭଗ୍ନଯୋଗୁଁ ଅନ୍ୟ ହସ୍ତର ଆୟୁଧଗୁଡ଼ିକ ଅସ୍ପଷ୍ଟ। ତା'ଙ୍କ



ନଟରାଜ, ଶତ୍ରୁଘ୍ନେଶ୍ୱର ମନ୍ଦିର, ଭୁବନେଶ୍ୱର



ନଟରାଜ, ପାଇକପଡ଼ା

ବାହନ ବୃଷଭର ସମ୍ମୁଖଭାଗଟି ତା'ଙ୍କ ଦକ୍ଷିଣପାଦ ନିକଟରେ ରହିଛି। ମସ୍ତକରେ ଜଟାମୁକୁଟ ଓ ଦେହରେ ସ୍ୱଳ୍ପ ଅଳଙ୍କାର ଓ ବ୍ୟାଘ୍ରଚର୍ମ ପରିଧାନ କରିଥିବା, ଊର୍ଦ୍ଧ୍ୱଲିଙ୍ଗ ମୂର୍ତ୍ତିଟି ଚକ୍ରାକାର ଚୈତ୍ୟପଦକ ମଧ୍ୟରେ ସୁନ୍ଦରଭାବେ ସ୍ଥାପିତ ହୋଇଛି। ଏହି ପ୍ରକାର ଦେଉଳ ରାହାପାଗରେ ସ୍ଥାପିତ ସାମାନ୍ୟ ଭିନ୍ନ କଳାଶୈଳୀର ଦଶଭୁଜ ନଟରାଜମୂର୍ତ୍ତି ପରଶୁରାମେଶ୍ୱର ମନ୍ଦିରରେ, ଅଷ୍ଟଭୁଜ ନଟରାଜ ଶିଶିରେଶ୍ୱର ମନ୍ଦିରରେ ଏବଂ ଦ୍ୱାଦଶଭୁଜ ନଟରାଜ ବୈତାଳଦେଉଳ ଓ ମାର୍କଣ୍ଡେଶ୍ୱର ମନ୍ଦିରରେ ଦେଖାଯାଏ। ଭୁବନେଶ୍ୱର ବାହାର, ଶୁକ୍ଳେଶ୍ୱର ମନ୍ଦିରର ଭଗ୍ନାବଶେଷରେ ଅଷ୍ଟଭୁଜ ତଥା ଦଶଭୁଜମୂର୍ତ୍ତି ଏବଂ ମୁଖଲିଙ୍ଗମ୍‌ର ମଧୁକେଶ୍ୱର ମନ୍ଦିର ଚୈତ୍ୟପଦକରେ ଚତୁର୍ଦ୍ଦଶଭୁଜ ନଟରାଜ ମୂର୍ତ୍ତି ରହିଛି।

ପୂର୍ବ ବର୍ଣ୍ଣିତ ସମସ୍ତ ମୂର୍ତ୍ତିରେ ଶିବ ଏକ ସମତଳ ଭୂମିଉପରେ ନୃତ୍ୟରତ ଥିବାବେଳେ ଆବରଣ ଦେବତାମାନଙ୍କ ମଧ୍ୟରେ ଦେଖାଯାଉଥିବା ଅନେକ ରଚନାରେ ସେ ପଦ୍ମଉପରେ, ବୃଷଭ ପୃଷ୍ଠରେ କିମ୍ବା ଅପସ୍ମାରପୁରୁଷ ଉପରେ ଏବଂ ଏକ ବିରଳ ମୂର୍ତ୍ତିରେ ଛିନ୍ନମସ୍ତକଗୁଡ଼ିକ ଉପରେ ନୃତ୍ୟକରୁଥିବା ଦେଖାଯାଏ। ପଦ୍ମଉପରେ ନୃତ୍ୟରତ ମୂର୍ତ୍ତି ପଶ୍ଚିମଓଡ଼ିଶା, ଚରଦାର କପିଳେଶ୍ୱର ମନ୍ଦିରର ଏକ ମଣ୍ଡପ ସ୍ତମ୍ଭରେ, ଭୁବନେଶ୍ୱରର ମେଘେଶ୍ୱର ମନ୍ଦିର ଗାତ୍ରରେ ଏବଂ ବ୍ରିଟିଶ୍ ସଂଗ୍ରହାଳୟରେ ଥିବା ଓଡ଼ିଶାର ଏକ ସୁନ୍ଦର ରଚନାରେ ଦେଖିବାକୁମିଳେ। ବୃଷଭ ଉପରେ ନୃତ୍ୟକରୁଥିବା ନଟରାଜ ଭୁବନେଶ୍ୱରର ବ୍ରହ୍ମେଶ୍ୱର ଓ ପାପନାଶିନୀ ମନ୍ଦିର, ବାଣପୁରର ଦକ୍ଷପ୍ରଜାପତି ମନ୍ଦିର, କନ୍ଦରପୁର ନିକଟ, ମହାନାଦୀ ଟାପୁର ଉତ୍ତରେଶ୍ୱର ମନ୍ଦିର ଓ ରାଣୀପୁର-ଝରିଆଲର ଚଉଷଠିଯୋଗିନୀ ପୀଠରେ ରହିଛି। ବୌଦ, ବଲାଙ୍ଗୀର ନିକଟ ବୈଦ୍ୟନାଥ ଓ ଖିଚିଂର ଏକ ମୂର୍ତ୍ତିରେ ସେ ଅପସ୍ମାରପୁରୁଷ ଉପରେ ନୃତ୍ୟରତ ଥିବା ଦେଖାଯାଏ। ଓଡ଼ିଶାର ଏକ ବଡ଼ ବୀଣାଧର-ଶିବପ୍ରତିମା ପାନାସାଡ଼ନ୍ ଠାରେ ଥିବା ନର୍ଟନ୍ ସାଇମନ୍ ସଂଗ୍ରହାଳୟରେ ରହିଛି। ଏଥିରେ ଶିବ ପାଞ୍ଚଗୋଟି ଛିନ୍ନମସ୍ତକ ଉପରେ ନୃତ୍ୟ କରୁଛନ୍ତି।

ମୁଖ୍ୟ ଦୁଇହସ୍ତରେ ବୀଣା ଧାରଣକରି ନୃତ୍ୟ କରୁଥିବା ଶିବଙ୍କୁ 'ବୀଣାଧର-ନୃତ୍ୟଶିବ' କୁହାଯାଏ। ଉପରୋକ୍ତ ପାନାସତ୍‌ନ ସଂଗ୍ରହାଳୟର କୃତିଟି ଏହି ଶ୍ରେଣୀୟ ହୋଇଥିବାବେଳେ ଭୁବନେଶ୍ୱରର ଶତ୍ରୁଘ୍ନେଶ୍ୱର ଓ ବ୍ରହ୍ମେଶ୍ୱର ମନ୍ଦିର ଗାତ୍ରରେ ମଧ ଏହି ପ୍ରକାର ରଚନା ରହିଛି।



ଶିବ: ଅର୍ଦ୍ଧନାରୀଶ୍ୱର ନୃତ୍ୟମୂର୍ତ୍ତି
ପରଶୁରାମେଶ୍ୱର ମନ୍ଦିର, ଭୁବନେଶ୍ୱର



ଶିବ: ବାମଦେବ ନୃତ୍ୟମୂର୍ତ୍ତି
ବ୍ରହ୍ମେଶ୍ୱର ମନ୍ଦିର, ଭୁବନେଶ୍ୱର

ଶିବଙ୍କ ଅର୍ଦ୍ଧନାରୀଶ୍ୱର ନୃତ୍ୟମୂର୍ତ୍ତି ଭୁବନେଶ୍ୱରର ଶତ୍ରୁଘ୍ନେଶ୍ୱର ଓ ପରଶୁରାମେଶ୍ୱର ମନ୍ଦିର ଗାତ୍ରରେ ଦେଖିବାକୁମିଳେ। ରାଣୀପୁର ଝରିଆଲ୍, ଚଉଷଠିଯୋଗିନୀ ପୀଠର ନୃତ୍ୟଶିବ ଓ କୋଣାର୍କର କେତୋଟି ନଟରାଜ ଏବଂ ଭୈରବ-ନୃତ୍ୟମୂର୍ତ୍ତି, ତ୍ରିମୁଖ ଅଟନ୍ତି। ସୋନପୁରର ଖମ୍ଭେଶ୍ୱରୀ ମନ୍ଦିର ଦେହର ଦୁଇଟି ରଚନାରେ ଶିବ ସାବଲୀଳ ଭଙ୍ଗୀରେ ନୃତ୍ୟକରୁଥିବା ଦେଖାଯାଏ। ତେବେ, ଏହା ପରବର୍ତ୍ତୀ ସମୟର କୃତି ଅଟେ। ପଶ୍ଚିମ ଓଡ଼ିଶାରେ ଥିବା ମଧ୍ୟଭାରତୀୟ ଶୈଳୀର କେତେକ ମନ୍ଦିର ସହିତ ଥିବା ମଣ୍ଡପର ସ୍ତମ୍ଭ ଓ ଉପସ୍ତମ୍ଭରେ ମନୁଷ୍ୟାକୃତି ନଟରାଜ ପ୍ରତିମାମାନ ଦେଖିବାକୁମିଳେ। ଏହିପରି ଓଡ଼ିଶାର ବିଭିନ୍ନ ମନ୍ଦିର ଗାତ୍ରରେ କିମ୍ବା ଖୋଲାଭାବେ ବିଭିନ୍ନ ସମୟର ବହୁ ନଟରାଜମୂର୍ତ୍ତି ଓଡ଼ିଶାର କଳାସମ୍ପଦକୁ ପରିପୁଷ୍ଟ କରେ।

## ଶିବ: ନୃତ୍ୟମୂର୍ତ୍ତି-ବାମଦେବ

ଚାମୁଣ୍ଡାଙ୍କ ଭଳି 'ବାମଦେବ' ଶିବଙ୍କ ଏକ ଅସ୍ଥିକଙ୍କାଳ ରୂପ ଅଟେ। କେତେକ ରଚନାରେ ବାମଦେବ ପଦ୍ମ କିମ୍ବା ଏକ ଶବ ଉପରେ ସରଳ ନୃତ୍ୟ ଭଙ୍ଗୀରେ ଦେଖାଯାଆନ୍ତି। ଅଧିକାଂଶ ସ୍ଥଳେ ଊର୍ଦ୍ଧ୍ୱଲିଙ୍ଗମୂର୍ତ୍ତି ଦ୍ୱିଭୁଜ, ଚର୍ତୁଭୁଜ କିମ୍ବା ଷଡ଼ଭୁଜ ହୋଇଥାଆନ୍ତି। ତା'ଙ୍କ ଦିଗମ୍ବର ଶରୀରର ମସ୍ତକରେ ଅଗ୍ନିଶିଖା, କପାଳ ଓ ଗଳାରେ କପାଳମାଳା, ହସ୍ତ, କଟି ଓ ପାଦରେ ଧାତବ ବଳୟ ପରିଧାନ କରିଥିବା ଦେଖାଯାଏ। କେତେକ ମୂର୍ତ୍ତିର ନିମ୍ନଭାଗ ଦ୍ୱିପାର୍ଶ୍ୱରେ ଶ୍ୱାନ, ଶୃଗାଳ କିମ୍ବା ଭୈରବଙ୍କ ଏକ କ୍ଷୁଦ୍ର ପିଚୁଳା ସ୍ଥାନିତ ହୋଇଥାଏ। ବାମଦେବ ହସ୍ତରେ ସାଧାରଣତଃ ଶିବଙ୍କ ମୁଖ୍ୟ ଆୟୁଧଗୁଡ଼ିକ ସହିତ ଖେଟକ ଓ ଦଣ୍ଡ ଧାରଣ କରିଥାଆନ୍ତି।

ଓଡ଼ିଶାର ମଧ୍ୟଯୁଗୀୟ ମନ୍ଦିରମାନଙ୍କ ଦକ୍ଷିଣ କିମ୍ବା ପଶ୍ଚିମପାର୍ଶ୍ୱର ଆବରଣଦେବତାଙ୍କ ମଧ୍ୟରେ ବାମଦେବଙ୍କ ମୂର୍ତ୍ତି ଉତ୍‌କୀର୍ଣ୍ଣ ହୋଇଥାଏ। ଯାଜପୁରର ଏକ ଛୋଟ ମନ୍ଦିର ମଧ୍ୟରେ ବାମଦେବଙ୍କ ଏହି ପ୍ରକାର ଏକ ମୂର୍ତ୍ତି ପ୍ରତିଷ୍ଠିତ ହୋଇଥିବାବେଳେ ଭୁବନେଶ୍ୱରର ବ୍ରହ୍ମେଶ୍ୱର ମନ୍ଦିର ସମେତ ବାଲୁଙ୍କେଶ୍ୱର, ସଠଙ୍କପୁରର ସପ୍ତମାତୃକା ମନ୍ଦିର, ପୁରୀ ଜିଲ୍ଲାର ଖେଲାର ଓ ବେରବୋଇର ଶିବମନ୍ଦିର, ପ୍ରାଚୀନଦୀ ଅବବାହିକା, ନିଆଳିର ଶୋଭନେଶ୍ୱର ମନ୍ଦିର ଏବଂ କାକଟପୁର ନିକଟ ସୋମେଶ୍ୱର ମନ୍ଦିର ପରସରରେ ଥିବା ବାମଦେବଙ୍କ ନୃତ୍ୟମୂର୍ତ୍ତିଗୁଡ଼ିକ ଉଲ୍ଲେଖଯୋଗ୍ୟ।

## ଶିବ: ଅନୁଗ୍ରହମୂର୍ତ୍ତି

### ଶିବ: ରାବଣାନୁଗ୍ରହମୂର୍ତ୍ତି

ପୌରାଣିକ ଆଖ୍ୟାନ ଅନୁଯାୟୀ ଏକଦା ରାବଣ ଆକାଶ ମାର୍ଗରେ ଭ୍ରମଣ କରୁଥିବାବେଳେ କୈଳାସ ପର୍ବତରେ ଶିବଙ୍କ ଉଦ୍ୟାନ ଦେଖି ପ୍ରୀତହେଲା। ସେ ସେଠାରେ ଭ୍ରମଣ କରିବାକୁ ଇଛା କରିବାରୁ ଶିବଗଣମାନେ ତା'ଙ୍କୁ ବାରଣ କଲେ। ଏଥିରେ ରାବଣ କ୍ରୋଧାନ୍ୱିତ ହୋଇ ଶିବ ଓ ତା'ଙ୍କ ପରିବାର ସହିତ କୈଳାସ ପର୍ବତକୁ ଅପହରଣ କରିନେବା ନିମନ୍ତେ ଚେଷ୍ଟାକଲା। ସେ ପର୍ବତ ଉତ୍ତୋଳନ କରିବାବେଳେ ଶିବ ଏହା ଜାଣିପାରି ତା'ଙ୍କ ଏକପାଦ ଭୂମିକୁ ଲମ୍ବାଇଦେଲେ। ଏଦାଦ୍ୱାରା ରାବଣ ପର୍ବତ ଉତ୍ତୋଳନ କରିନପାରି, ପର୍ବତ ଓ ଭୂମି ମଧ୍ୟରେ ବନ୍ଦୀ ହୋଇଗଲେ। ଶତଚେଷ୍ଟା ସତ୍ତ୍ୱେ ସେ ସେଠାରୁ ମୁକ୍ତି ପାଇପାରିଲା ନାହିଁ। ଏଥିରୁ ସେ ଶିବଙ୍କ ମହିମା ଜାଣିପାରି ସେଠାରେ ଦୀର୍ଘଦିନ ଶିବଙ୍କ ଗୁଣଗାନ ପୂର୍ବକ ପ୍ରାର୍ଥନା କଲା। ଶିବ ଏଥିରେ ସନ୍ତୁଷ୍ଟ ହୋଇ, ଅନୁଗ୍ରହପୂର୍ବକ ରାବଣକୁ ମୁକ୍ତି ଦେଲେ। ଶିବଙ୍କ ଏହି ରୂପ ଓ ଆଖ୍ୟାନ ବିଷୟଟି 'ରାବଣାନୁଗ୍ରହମୂର୍ତ୍ତି' ଭାବେ ଖ୍ୟାତ। ତେବେ, ଶିବଙ୍କର ଅନ୍ୟ କେତେକ ଆଖ୍ୟାନକୁ ନେଇ ଅନୁଗ୍ରହମୂର୍ତ୍ତି ମଧ ରହିଛି। ଖ୍ରୀଷ୍ଟୀୟ ୫ମ-୯ମ ଶତାବ୍ଦୀ ମଧ୍ୟରେ ମନ୍ଦିରଗାତ୍ରରେ ଏହି ରାବଣାନୁଗ୍ରହ ମୂର୍ତ୍ତି ଅତ୍ୟନ୍ତ ଲୋକପ୍ରିୟ ହୋଇଥିବା ଜଣାଯାଏ। ଓଡ଼ିଶାର ପ୍ରାଚୀନ ମନ୍ଦିର ବ୍ୟତୀତ ପଶ୍ଚିମଭାରତର ଏଲୋରା ଗୁମ୍ଫା ଓ ଅନ୍ୟ ସ୍ଥାନର କେତେକ ସମସାମୟିକ ଗୁମ୍ଫା ଓ ମନ୍ଦିରରେ ମଧ ଏହି ମୂର୍ତ୍ତି ଉତ୍‌କୀର୍ଣ୍ଣ ହୋଇଛି।

ଓଡ଼ିଶାର ଘରୋଟି ସ୍ଥାନରେ ରାବଣାନୁଗ୍ରହ ମୂର୍ତ୍ତି ଦେଖିବାକୁମିଳେ। ବିଷୟଟିର ଲୋକପ୍ରିୟତା ଯୋଗୁଁ ମୂର୍ତ୍ତିଟି ମନ୍ଦିର ଦେହର ଏକ ଗୁରୁତ୍ୱପୂର୍ଣ୍ଣ ଅଙ୍ଗରେ ସ୍ଥାନିତ ହୋଇଥାଏ। ଭୁବନେଶ୍ୱରର ଶତ୍ରୁଘ୍ନେଶ୍ୱର ଓ ପରଶୁରାମେଶ୍ୱର ମନ୍ଦିରର ସମ୍ମୁଖ ରାହାପାଗ 'ଭୋ' ନକ୍ସାର ତଳ ଚୈତ୍ୟପଦକରେ ରାବାଣାନୁଗ୍ରହ ମୂର୍ତ୍ତି ରହିଛି। ଏହି ଦୁଇଟି କୃତି ଅନେକାଂଶରେ ଭଗ୍ନ ହେଲେହେଁ ଶତ୍ରୁଘ୍ନେଶ୍ୱର ମନ୍ଦିରର କୃତିଟି ଅଧିକ ସ୍ପଷ୍ଟ। ଏହାର ଅଣ୍ଡାକୃତି ଚୈତ୍ୟପଦକ ମଧ୍ୟରେ ରାବଣ ଆସନଭଙ୍ଗୀରେ ଦୁଇହସ୍ତ ଆଣ୍ଠୁ ଉପରେ ଭରାଦେଇ ଅନ୍ୟ ଦୁଇ ହସ୍ତରେ ମସ୍ତକ ଉପରେ ଶିବଙ୍କ ପରିବାର ସମେତ କୈଳାଶ ଉତ୍ତୋଳନ କରିବା ଅବସ୍ଥାରେ ରହିଛି। ଏଠାରେ ରାବଣର ସମ୍ମୁଖ ପାଞ୍ଚମୁଖ ଦେଖାଯାଉଥିବାବେଳେ ଅନ୍ୟ ପାଞ୍ଚମୁଖ ପଶ୍ଚାତ୍‌ଭାଗରେ ଥିବା ଅନୁମାନ କରାଯାଏ। ତାଙ୍କର ଦଶଭୁଜ ମଧ୍ୟରୁ ଅବଶିଷ୍ଟ ଛଅହସ୍ତରେ ବିଭିନ୍ନ ଅସ୍ତ୍ର, ଆୟୁଧ ରହିଛି। ଏଠାରେ ରାବଣର ମସ୍ତକରେ ମୁକୁଟ ଓ ଦେହରେ ବିଭିନ୍ନ ବସ୍ତ୍ରାଳଙ୍କାର ପରିଧାନ କରିଥିବା ଦେଖାଯାଏ। ମସ୍ତକ ଉପର ଦୃଶ୍ୟରେ ଅର୍ଥାତ୍,

କୈଳାଶରେ ପାର୍ବତୀ ଆତଙ୍କିତହୋଇ ଶିବଙ୍କୁ ଆଲିଙ୍ଗନ କରୁଥିବାବେଳେ ଦକ୍ଷିଣପାର୍ଶ୍ବରେ ଗଣେଶ ତା'ଙ୍କ ପରଶୁ ଓ ବାମପାର୍ଶ୍ବରେ ମୟୂର ଉପରେଥିବା କାର୍ତ୍ତିକେୟ ତା'ଙ୍କ ଆୟୁଧ ଶୂଳକୁ ଉତ୍ତୋଳନ କରି ରାବଣକୁ ଆକ୍ରମଣ କରିବା ଭଙ୍ଗୀରେ ରହିଛନ୍ତି। ଏହା ବ୍ୟତୀତ ଦୁଇପାର୍ଶ୍ବରେ ବିଭିନ୍ନ ଭଙ୍ଗୀରେ କେତେକ ଶିବଗଣ ଜାଗ୍ରତ ଅଛନ୍ତି। ପରଶୁରାମେଶ୍ବର ମନ୍ଦିରର ମୂର୍ତ୍ତିଟି ସାମନ୍ୟ ଭିନ୍ନତାସହ ଏହି ପ୍ରକାର ହୋଇଥିବାବେଳେ ଅନେକାଂଶରେ ଭଗ୍ନ।



ରାବଣାନୁଗ୍ରହମୂର୍ତ୍ତି (ରାବଣର କୈଳାସ ଉତ୍ତୋଳନ)
ଶତ୍ରୁଘ୍ନେଶ୍ବର ମନ୍ଦିର, ଭୁବନେଶ୍ବର

ଅନ୍ୟ ସ୍ଥାନରୁ ସଂଗୃହୀତ ହୋଇଥିବା ରାବଣାନୁଗ୍ରହ ମୂର୍ତ୍ତିର ଏକ ଖଣ୍ଡ ଯାଜପୁରର ତ୍ରିଲୋଚନେଶ୍ବର ମନ୍ଦିର ଦେହରେ ସଂଯୋଗ ହୋଇଛି। ପ୍ରସ୍ଥ ଭାଗରେ ଥିବା ରଚନାଟିରେ, ପଞ୍ଚମୁଖ ଓ ଦଶଭୁଜ ରାବଣ ନିଜର ସମସ୍ତ ଶକ୍ତି ପ୍ରୟୋଗକରି କୈଳାସ ଉତ୍ତୋଳନ କରିବା ଭଙ୍ଗୀରେ ଦେଖାଯାଆନ୍ତି। ତା'ଙ୍କର ଦୁଇପାର୍ଶ୍ବରେ ଆକ୍ରମଣ କରିବା ଭଙ୍ଗୀରେ କେତେକ ଶିବଗଣ ରହିଛନ୍ତି। ଜଗତସିଂହପୁର ନିକଟ କୁଣ୍ଡେଶ୍ବରର ତ୍ରିଲୋଚନେଶ୍ବର ମନ୍ଦିର ପରିସରରେ ଏକ ଭିନ୍ନ ପ୍ରକାରର ରାବଣାନୁଗ୍ରହମୂର୍ତ୍ତି ଦେଖିବାକୁମିଳେ। ଆଲମ୍ବ-ଆୟତାକାର ଏକ ପଥର ଉପର ରଚନାରେ ଦ୍ବିଭୁଜ ରାବଣର ସମସ୍ତ ଦଶମୁଖ ସମ୍ମୁଖକୁ ରହିଛି। ଏଠାରେ ସେ ପ୍ରସାରିତ ପାଦ ଆସନଭଙ୍ଗୀରେ ରଖି ଦୁଇ ହସ୍ତରେ, ମସ୍ତକ ଉପରେ କୈଳାଶ ଉତ୍ତୋଳନ କରୁଛନ୍ତି। ଏହାର ଉପର ଦୃଶ୍ୟରେ ଶିବପାର୍ବତୀ ପଶାଖେଳରେ ମଗ୍ନଥିବା ସୂଚନା ମିଳୁଥିବାବେଳେ କୃତିଟିରେ ଅନ୍ୟକୌଣସି ବିଷୟ ଦୃଷ୍ଟିଗୋଚର ହୁଏନାହିଁ। କଳାଶୈଳୀ ଦୃଷ୍ଟିରୁ ଏହା ଖ୍ରୀ: ୭ମ-୮ମ, ଶତାବ୍ଦୀରେ ନିର୍ମିତ କୌଣସି ପ୍ରାଚୀନ ମନ୍ଦିରର ଅଙ୍ଗବିଶେଷ ହୋଇଥିବା ସମ୍ଭବ। ଅନ୍ୟ ଆଖ୍ୟାନ ଉପରେ ଆଧାରିତ ଶିବଙ୍କ ଅନୁଗ୍ରହମୂର୍ତ୍ତି ଭାରତର ବିଭିନ୍ନ ସ୍ଥାନରେ ରହିଥିବାବେଳେ ଓଡ଼ିଶାର ମନ୍ଦିରରେ ଅନ୍ୟ କୌଣସି ଅନୁଗ୍ରହମୂର୍ତ୍ତି ଦେଖିବାକୁମିଳେ ନାହିଁ।



# ଶିବ: ଲୀଳାମୂର୍ତ୍ତି

## ଶିବ: କଲ୍ୟାଣସୁନ୍ଦରମୂର୍ତ୍ତି

ବ୍ରହ୍ମାଙ୍କଠାରୁ ବରପାଇ ତାରକାସୁର ତ୍ରିଲୋକରେ ବିତ୍ପାତ ସୃଷ୍ଟିକଲା । ସେହି ସମୟରେ ପର୍ବତରାଜନନ୍ଦିନୀ,ପାର୍ବତୀ ଶିବଙ୍କୁ ପତିରୂପେ ପାଇବାପାଇଁ ଘୋର ତପସ୍ୟାରେ ମଗ୍ନଥିଲେ । ଦେବତାମାନେ ତାରକାସୁରକୁ ବଧକରିବା ନିମନ୍ତେ ଉପାୟ ପାଞ୍ଚୁଥିବାବେଳେ ଜାଣିପାରିଲେ ଯେ, ଶିବଙ୍କ ଔରସଜାତ ସନ୍ତାନ ଦ୍ୱାରା ତାରକାସୁର ବିନାଶ ହେବ। ତତ୍କ୍ଷଣାତ୍ ସେମାନେ ଶିବଙ୍କ ନିକଟକୁଯାଇ, ପ୍ରାର୍ଥନା ପୂର୍ବକ କହିଲେ "ପ୍ରଭୁ ! ଜଗତର କଲ୍ୟାଣ ନିମନ୍ତେ ଆପଣ ବିବାହ କରନ୍ତୁ । ଆପଣଙ୍କ ପୁତ୍ର ଦ୍ୱାରା ତାରକାସୁର ବଧହେବ ।" ପାର୍ବତୀଙ୍କ ତପସ୍ୟାରେ ଶିବ ସନ୍ତୁଷ୍ଟଥିଲେ । ଏଣୁ, ସେ ଦେବତାମାନଙ୍କ ସହଯୋଗରେ ପାର୍ବତୀଙ୍କୁ ବିବାହ କଲେ । ଜଗତର କଲ୍ୟାଣ ନିମନ୍ତେ ଉଦ୍ଦିଷ୍ଟ ଶିବପାର୍ବତୀଙ୍କ ବିବାହ ଦୃଶ୍ୟ ମୂର୍ତ୍ତିକଳାରେ 'କଲ୍ୟାଣସୁନ୍ଦରମୂର୍ତ୍ତି' ଭାବରେ ପରିଚିତ । ଗୁପ୍ତଯୁଗ ଓ ତା'ର ପରବର୍ତ୍ତୀ ସମୟରେ ଏହି ବିଷୟଟି କେବଳ ଓଡ଼ିଶା କାହିଁକି ଭାରତର ସର୍ବତ୍ର, ଗୁମ୍ଫା ଓ ମନ୍ଦିର ମୂର୍ତ୍ତିକଳାରେ ଲୋକପ୍ରିୟ ହୋଇଥିବା ଲକ୍ଷ୍ୟକରାଯାଏ । ତେବେ, ଏହା ତତ୍କାଳୀନ ରଚିତ କାଳିଦାସଙ୍କ 'କୁମାରସମ୍ଭବମ୍' କାବ୍ୟର ପ୍ରଭାବବୋଲି କେତେକ ଗବେଷକ ମତଦିଅନ୍ତି । ଭାରତର ବିଭିନ୍ନ ପ୍ରାନ୍ତର ମନ୍ଦିରଗାତ୍ରରେ ଏହି ବିଷୟ ବିଭିନ୍ନ ଭାବରେ ରୂପାୟିତ ହୋଇଥିବାବେଳେ ଓଡ଼ିଶାର ପ୍ରାଚୀନ ମନ୍ଦିରମାନଙ୍କ ରାହାପାଗର ଏକ ଲମ୍ବ ପାଟପଥର ଉପରେ ଏହି କୃତି ଦେଖିବାକୁମିଳେ । ଏହା ବ୍ୟତୀତ କେତେକ ମଧ୍ୟଯୁଗୀୟ ମନ୍ଦିରର ଗବାକ୍ଷ ଉପରେ ମଧ ଏହି ମୂର୍ତ୍ତି ଉତ୍କୀର୍ଣ୍ଣ ହୋଇଛି ।



କଲ୍ୟାଣସୁନ୍ଦରମୂର୍ତ୍ତି (ଶିବ ବିବାହ ଶୋଭାଯାତ୍ରା), ଶତ୍ରୁଘ୍ନେଶ୍ୱର ମନ୍ଦିର, ଭୁବନେଶ୍ୱର

ପ୍ରାଚୀନ ମନ୍ଦିରମାନଙ୍କ ମଧ୍ୟରେ 'କଲ୍ୟାଣସୁନ୍ଦରମୂର୍ତ୍ତି' ଭୁବନେଶ୍ୱରର ଶତ୍ରୁଘ୍ନେଶ୍ୱର, ସୁବର୍ଣ୍ଣଜଳେଶ୍ୱର ଓ ପରଶୁରାମେଶ୍ୱର ମନ୍ଦିରରେ ଦେଖିବାକୁମିଳେ । ସୁବର୍ଣ୍ଣଜଳେଶ୍ୱର ମନ୍ଦିରର କୃତିଟି ବହୁଭାବରେ ନଷ୍ଟ ହୋଇପଡ଼ିଥିବାବେଳେ ଅନ୍ୟ ଦୁଇଟି କୃତିଟି ସୁରକ୍ଷିତ ରହିଛି । ଶତ୍ରୁଘ୍ନେଶ୍ୱର ମନ୍ଦିରର ମୂର୍ତ୍ତିଟି ଶିବଙ୍କ ବରାନୁଗମନ ଦୃଶ୍ୟ ଅଟେ । ବର୍ଣ୍ଣନାତ୍ମକ ବିଷୟଟି ବାମରୁ ଦକ୍ଷିଣକୁ ଏହି ଯେ, ପ୍ରଥମେ ତିନିମୁଖଥିବା ଜଣେ ଦେବୀ (ବ୍ରହ୍ମାଣୀ)ଙ୍କ ନିକଟ ଜଣେ ଅପ୍ସରା ନୃତ୍ୟରତ ଅଛନ୍ତି । ତା'ଙ୍କ ନିକଟରେ ନାଗଭୂଷଣ, ତ୍ରିଶୂଳଦଣ୍ଡଧାରୀ ଦୁଇଜଣ ଶିବଗଣ କଥୋପକଥନ ପୂର୍ବକ ଗମନ କରୁଛନ୍ତି । ତା'ପରେ ବୀଣାଧାରୀ ନାରଦ ଓ ଜପମାଳ ଓ କମଣ୍ଡଳୁ ଧାରଣ କରିଥିବା ଅଗ୍ନିଦେବତାଙ୍କ

ମୂର୍ତ୍ତି ରହିଛି । ଏହାର ପରବର୍ତ୍ତୀ ଦୃଶ୍ୟରେ ଚର୍ତୁଭୁଜ ବ୍ରହ୍ମା ନିଜ ଆୟୁଧସହ ଏବଂ ବିଷ୍ଣୁ ଏକ ପୂର୍ଣ୍ଣକୁମ୍ଭ, ଚକ୍ର ଓ ଗଦା ଧାରଣକରି ଗମନ କରୁଥିବାବେଳେ ପୁରୋଭାଗରେ, ମସ୍ତକଉପରେ ଛତ୍ରଥିବା ବରରୂପୀ ଶିବଙ୍କ ବୃଷଭାରୂଢ଼ମୂର୍ତ୍ତି ଦେଖିବାକୁମିଳେ । ଏହି ଅଂଶଟି ବହୁଭାବରେ ଭଗ୍ନ ହୋଇଥିବାରୁ ଶେଷରେ ଥିବା ପାର୍ବତୀଙ୍କ ପ୍ରତିମା ଅସ୍ପଷ୍ଟ ହୋଇପଡ଼ିଛି ।

ପରଶୁରାମେଶ୍ୱର ମନ୍ଦିରର କଲ୍ୟାଣସୁନ୍ଦର ମୂର୍ତ୍ତିରେ ଶିବପାର୍ବତୀଙ୍କ ବିବାହ ଦୃଶ୍ୟ ବର୍ଣ୍ଣିତ ହୋଇଥିବା ଦେଖାଯାଏ । ବିଷୟର ମଧ୍ୟଭାଗରେ ଅଗ୍ନି ଦେବତାଙ୍କ ନିକଟରେ ଏକ ପୂର୍ଣ୍ଣକୁମ୍ଭ ଓ ଗଣେଶ ରହିଥିବାବେଳେ ବାମପାର୍ଶ୍ୱରୁ ଶିବପାର୍ବତୀ ହୋମଅଗ୍ନିକୁ ପ୍ରଦକ୍ଷିଣ କରୁଛନ୍ତି । ଦକ୍ଷିଣପାର୍ଶ୍ୱର ମୂର୍ତ୍ତି ମଧ୍ୟରେ, ପ୍ରଥମେ ଜଣେ ନୃତ୍ୟରତ ଗଣ, ତା'ଙ୍କ ନିକଟରେ ବରୁଣ, ସୂର୍ଯ୍ୟ ଓ ଅଗ୍ନିଙ୍କ ନିକଟରେ ଚର୍ତୁମୁଖ ବ୍ରହ୍ମା ଆଣ୍ଠୁମାଡ଼ି କମଣ୍ଡଳୁରୁ ଜଳଦାନପୂର୍ବକ ସଂକଳ୍ପ କରୁଛନ୍ତି । ଶିବପାର୍ବତୀଙ୍କ ବାମଭାଗରେ ଦୁଇଜଣ ଦେବୀ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଥିବାବେଳେ ଜଣେ ଗଣ ମସ୍ତକରେ କୌଣସି ପଦାର୍ଥ ଧାରଣକରି ଉଭାହୋଇଥିବା ଦେଖାଯାଏ ।ଏମାନଙ୍କ ନିକଟରେ ପୂର୍ଣ୍ଣକୁମ୍ଭ ଧାରଣକରି ନୃତ୍ୟଭଙ୍ଗୀରେ ବିଷ୍ଣୁ ଓ ଅନ୍ୟଜଣେ ଦେବତା ରହିଛନ୍ତି । ଖ୍ରୀଷ୍ଟୀୟ ୭ମ ଶତାବ୍ଦୀର ଏହି କୃତିଟିର କଳାଶୈଳୀ ଶତ୍ରୁଘ୍ନେଶ୍ୱର ମନ୍ଦିରର ଶୈଳୀ ଅପେକ୍ଷା ବିକଶିତ ଓ ଛନ୍ଦମୟ ଅଟେ ।



କଲ୍ୟାଣସୁନ୍ଦରମୂର୍ତ୍ତି
(ଶିବପାର୍ବତୀ ବିବାହ ଦୃଶ୍ୟ),
ବିଷ୍ଣୁପୁର, ପୁରୀ ଜିଲ୍ଲା

ପୁରୀଜିଲ୍ଲା, ନିମାପଡ଼ା ନିକଟ ବିଷ୍ଣୁପୁରର ଭଗ୍ନ ଶିବମନ୍ଦିରରୁ ସ୍ଥାନାନ୍ତରିତ ହୋଇ ସ୍ଥାନୀୟ ସଂଗ୍ରହାଳୟରେ ରଖାଯାଇଥିବା 'ଶିବବିବାହ' ମୂର୍ତ୍ତିଟି ଏକ ମଧ୍ୟଯୁଗୀୟ କୃତି । ଏହା ଏକ ଆୟତାକାର ପଥରରେ ଉପର, ତଳ ଦୁଇ ଭାଗରେ ଉତ୍କୀର୍ଣ୍ଣ ହୋଇଛି । ଉପର ମୁଖ୍ୟ ଭାଗରେ ଡ଼ମ୍ବରୁ ଓ ତ୍ରିଶୂଳ ଧାରଣ କରିଥିବା ଚର୍ତୁଭୁଜ ଶିବ ଏକ ଅନୁଚ୍ଚ ଆସନ ଉପରେ ବସି ନିମ୍ନରେ ବସିଥିବା ପାର୍ବତୀଙ୍କ ପାଣିଗ୍ରହଣ କରୁଛନ୍ତି । ଦକ୍ଷିଣପାର୍ଶ୍ୱରେ ପୀଢ଼ା ଉପରେ ବସିଥିବା ଜଣେ ଋଷି ମନ୍ତ୍ରପାଠ କରୁଥିବାବେଳେ ଅନ୍ୟଦୁଇ ଋଷି ତା'ଙ୍କ ପଶ୍ଚାତ୍‌ଭାଗରେ ଦଣ୍ଡାୟମାନ ହୋଇଛନ୍ତି । ଏହା ବ୍ୟତୀତ ଶିବଙ୍କ ବାମପାର୍ଶ୍ୱରେ ବ୍ରହ୍ମା ଓ ବିଷ୍ଣୁ ଆସନ ଗ୍ରହଣ କରିଥିବା ଦେଖାଯାଏ । ନିମ୍ନଭାଗର ପିଡୁଳାଗୁଡ଼ିକ ବାମରୁ ଦକ୍ଷିଣକୁ ଏହିକି; ଦୁଇଜଣ ଋଷି କୌଣସି ପଦାର୍ଥ ସହିତ ଉପସ୍ଥିତ ହେଉଥିବାବେଳେ ବ୍ରହ୍ମା ଜଣେ ଋଷିଙ୍କ ସହିତ ହୋମରେ ଆହୁତି ଦେଉଛନ୍ତି । ତା'ଙ୍କ ନିକଟରେ ଏକ ସୁଉଚ୍ଚ ପୀଠଉପରେ ଶିବଙ୍କ ବାହନ ବୃଷଭର ମୂର୍ତ୍ତି ସ୍ଥାପିତ ହୋଇଥିବାବେଳେ ପରେ ପରେ ବରୁଣ, ସୂର୍ଯ୍ୟଙ୍କ ନିକଟରେ

ଐରାବତ ହସ୍ତୀ ଉପରେ ଚର୍ତୁଭୁଜ ଇନ୍ଦ୍ର ନିଜ ଆୟୁଧ ଧାରଣକରି ଉପସ୍ଥିତ ହେଉଥିବା ଦେଖାଯାଏ। ଉଷତ୍‌ନୀଳ, ମୁଗୁନିପଥରରେ ଉତ୍‌କୀର୍ଣ୍ଣ ହୋଇଥିବା ଏହି କୃତିଟି ସୁପରିକଳ୍ପିତ ଓ ବିକଶିତ କଳାଶୈଳୀର ଅଟେ। ଏହାର ଲମ୍ବ ପ୍ରାୟ ୧ମିଟର ଓ ଉଚ୍ଚତା ପ୍ରାୟ ୦.୫୦ ମିଟର। ଏହାର କିଞ୍ଚିତ୍ ପୂର୍ବବର୍ତ୍ତୀ ସମୟର ଭୁବନେଶ୍ୱରର ଲିଙ୍ଗରାଜମନ୍ଦିର ଓ ଚିତ୍ରକାରିଣୀ ମନ୍ଦିରର ଗବାକ୍ଷ ଉପରେ ଥିବା କଲ୍ୟାଣସୁନ୍ଦର ମୂର୍ତ୍ତିଦ୍ୱୟ ମନ୍ଦିର ତୁଳନାରେ ଗୌଣ ମନେହୁଏ। ଅଧିକାଂଶ ପ୍ରାଚୀନ ଶିବମନ୍ଦିରରେ କଲ୍ୟାଣସୁନ୍ଦରମୂର୍ତ୍ତିକୁ ଗୁରୁତ୍ୱ ଦିଆଯାଇଥିବାବେଳେ ମଧ୍ୟଯୁଗୀୟ ମନ୍ଦିରଗୁଡ଼ିକରେ ଏହାର ଗୁରୁତ୍ୱ ହ୍ରାସପାଇଥିବା ଲକ୍ଷ୍ୟ କରାଯାଏ।

## ଶିବପାର୍ବତୀ: ଯୁଗଳମୂର୍ତ୍ତି

ପ୍ରକୃତି ଓ ପୁରୁଷଙ୍କ ଏହି ଯୁଗଳମୂର୍ତ୍ତିକୁ ବିଭିନ୍ନ ଭାବରେ ନାମିତ କରାଯାଇଛି। ଯଥା; ଶିବପାର୍ବତୀ, ହରଗୌରୀ, ଗୌରୀଶଙ୍କର, ଉମାମହେଶ୍ୱର, ଉମାସହିତଶିବ ଇତ୍ୟାଦି। ସ୍ଥୂଳତଃ ଏହି ରଚନାଗୁଡ଼ିକୁ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇପାରେ। ଯଥା: ସ୍ଥାନକମୂର୍ତ୍ତି ଓ ଆସନମୂର୍ତ୍ତି। ଆସନମୂର୍ତ୍ତିଗୁଡ଼ିକୁ ପୁନଶ୍ଚ ଦୁଇଶ୍ରେଣୀର ଯଥା: ଅର୍ଦ୍ଧପରାୟଣିକ ଓ ଲଳିତଆସନ ମୂର୍ତ୍ତି। ଲଳିତଆସନ ମୂର୍ତ୍ତିଗୁଡ଼ିକ ତା'ର ଭାବ ଓ ଭଙ୍ଗୀକୁ ନେଇ ପୁନଶ୍ଚ ଦୁଇ ପ୍ରକାର। ଯଥା: ଆଲିଙ୍ଗନମୂର୍ତ୍ତି ଓ ଚିବୁକସ୍ପର୍ଶମୂର୍ତ୍ତି। ଏହା ବ୍ୟତୀତ ଯୁଗଳ ରଚନା ମଧ୍ୟରେ ଶିବ, ପାର୍ବତୀଙ୍କ ବୃଷଭାରୂଢ଼ମୂର୍ତ୍ତି, ଦ୍ୱିତକ୍ରୀଡ଼ାମୂର୍ତ୍ତି ଓ ପାର୍ବତୀଙ୍କ ମନୋରଞ୍ଜନ ନିମନ୍ତେ ଶିବ ବୀଣାବାଦନ କରୁଥିବା ଦୃଶ୍ୟ ମଧ ଦେଖିବାକୁମିଳେ। ଓଡ଼ିଶାର ମୂର୍ତ୍ତିକଳାରେ ଶିବପାର୍ବତୀଙ୍କ ସ୍ଥାନକମୂର୍ତ୍ତି କ୍ୱଚିତ୍ ରହିଥିବାବେଳେ 'ଲଳିତଆସନ-ଆଲିଙ୍ଗନମୂର୍ତ୍ତି'ର ସଂଖ୍ୟା ସର୍ବାଧିକ।

ହରପାର୍ବତୀଙ୍କ ଏହି ଲୋକପ୍ରିୟ ମୂର୍ତ୍ତିଗୁଡ଼ିକ ସବୁସମୟର ମନ୍ଦିରରେ ପାର୍ଶ୍ୱଦେବତା, ଆବରଣ ଦେବତା, କିମ୍ବା ପୂଜିତ ପ୍ରତିମାଭାବେ ଦେଖିବାକୁମିଳେ। ଖ୍ରୀଷ୍ଟୀୟ ୬ଷ-୯ମ ଶତାବ୍ଦୀ ମଧ୍ୟର ଅଧିକାଂଶ ରଚନାରେ ହରପାର୍ବତୀ ଏକ ସମତଳ ଆସନ ଉପରେ ଅର୍ଦ୍ଧପରାୟଣିକ ଭଙ୍ଗୀରେ ବସିଥିବା ଦେଖାଯାଏ। ମୂର୍ତ୍ତିଗୁଡ଼ିକରେ ଶିବ ସାଧାରଣଭାବେ ବସିଥିବାବେଳେ ଶିବଙ୍କ ପ୍ରତି ପାର୍ବତୀଙ୍କ ଅନୁରାଗଭାବ ସ୍ପଷ୍ଟ ହୁଏ। ଅର୍ଥାତ୍, ସ୍ୱାମୀ-ସୁହାଗିନୀ,ପାର୍ବତୀ ଶିବଙ୍କ କାନ୍ଧ ଉପରେ ଦୁଇହସ୍ତ ଛନ୍ଦି, ଭରାଦେଇ ବସିଥାଆନ୍ତି। କେତେକ ମୂର୍ତ୍ତିରେ ଶିବ ଦ୍ୱିଭୁଜ ଓ ଅନ୍ୟକେତେକରେ, ଚର୍ତୁଭୁଜ ହୋଇଥିବାବେଳେ ପାର୍ବତୀଙ୍କ ମୂର୍ତ୍ତି ସର୍ବତ୍ର ଦ୍ୱିଭୁଜ ଅଟେ। ଭୁବନେଶ୍ୱରର ଶତ୍ରୁଘ୍ନେଶ୍ୱରମନ୍ଦିର ସମ୍ମୁଖ ବାଡ଼ର ଏକ ରଚନାରେ ଶିବପାର୍ବତୀ ତା'ଙ୍କ ଗଣ ଓ ବାହନଙ୍କ ସହିତ ଦେଖାଯାଆନ୍ତି। ଏଠାରେ ଉଭୟ ଦେବଦେବୀ ଦ୍ୱିଭୁଜ ଅଟନ୍ତି। ପରଶୁରାମେଶ୍ୱର ମନ୍ଦିରଗଣ୍ଡିର ସମ୍ମୁଖ ରାହାପାଗ ଉପର ରାବଣାନୁଗ୍ରହମୂର୍ତ୍ତି ସହିତ ଥିବା ଅର୍ଦ୍ଧପରାୟଣିକ ଭଙ୍ଗୀର ଶିବପାର୍ବତୀ ମଧ ଦ୍ୱିଭୁଜ ଅଟନ୍ତି। ଏହି ମନ୍ଦିର ଜଗମୋହନର ଆବରଣଦେବତା ମଧ୍ୟର ମୂର୍ତ୍ତି, ଭବାନୀଶଙ୍କର ମନ୍ଦିର ଜଗମୋହନର ପାର୍ଶ୍ୱଦେବତା ଓ ବିନ୍ଦୁସାଗରରୁ ପଙ୍କୋଦ୍ଧାରବେଳେ ପ୍ରାପ୍ତ, ରାଜ୍ୟ ସଂଗ୍ରହାଳୟରେ ଥିବା ଶିବପାର୍ବତୀଙ୍କ ଅର୍ଦ୍ଧପରାୟଣିକ ଭଙ୍ଗୀର ଯୁଗଳ ରଚନାରେ ଶିବ ଚର୍ତୁଭୁଜ ଅଟନ୍ତି। ଏହି ମୂର୍ତ୍ତିଗୁଡ଼ିକରେ ପାର୍ବତୀ କୌଣସି ବସ୍ତୁ ଧାରଣ କରିନଥିବାସ୍ଥଳେ ଶିବଙ୍କ ହସ୍ତରେ ତା'ଙ୍କ ଆୟୁଧ ତ୍ରିଶୂଳ, ଅନ୍ୟ କେତେକ ସ୍ଥଳେ ଜପମାଳା ଏବଂ ମୁଖ୍ୟ ଦକ୍ଷିଣହସ୍ତ ଅଭୟମୁଦ୍ରାରେ ଦେଖାଯାଏ। ଏହା ବ୍ୟତୀତ ଆସନର ନିମ୍ନରେ ଉଭୟ ଦେବଦେବୀଙ୍କ ବାହନ ସିଂହ ଓ ବୃଷଭ ଉପସ୍ଥିତ ଥାଆନ୍ତି।



ଶିବପାର୍ବତୀ,(ଆସନ ମୂର୍ତ୍ତି) ଶତ୍ରୁଘ୍ନେଶ୍ୱର ମନ୍ଦିର, ଭୁବନେଶ୍ୱର

ଖ୍ରୀଷ୍ଟୀୟ ୯ମ ଶତାବ୍ଦୀଠାରୁ ଉମାମହେଶ୍ୱରଙ୍କ ଲଳିତାସନ ମୂର୍ତ୍ତିଗୁଡ଼ିକ ଲୋକପ୍ରିୟ ହୋଇଥିବା ଲକ୍ଷ୍ୟ କରାଯାଏ। ଏହି ପ୍ରକାର ରଚନାରେ ମହେଶ୍ୱର ଚଉକି ଉଚ୍ଚର ଏକ ଆସନ ଉପରେ ବସିଥିବାବେଳେ ଉମା ତା'ଙ୍କ ବାମଜାନୁ ଉପରେ ଆସନ ଗ୍ରହଣ କରିଥାଆନ୍ତି। ଏଥିରେ ମହେଶ୍ୱରଙ୍କ ଦକ୍ଷିଣପାଦ ଓ ଉମାଙ୍କ ବାମପାଦ ଆସନ ଉପରୁ ତଳକୁ ଲମ୍ୱିଥାଏ। ମହେଶ୍ୱର ପୂର୍ବ ପ୍ରକାରେ ଆୟୁଧ ଧାରଣ କରିବା ସହିତ ମୁଖ୍ୟ ଦକ୍ଷିଣହସ୍ତରେ ଅଭୟମୁଦ୍ରା ପ୍ରଦର୍ଶନକରି ବାମହସ୍ତରେ ଉମାଙ୍କୁ ଆଲିଙ୍ଗନ କରିବା ସହିତ ଦେବୀଙ୍କ ବାମ କୁଚକୁ ଧାରଣ କରିଥିବା ଦେଖାଯାଏ। ଏଠାରେ ଦେବୀ ଦକ୍ଷିଣହସ୍ତରେ ମହେଶ୍ୱରଙ୍କୁ ଆଲିଙ୍ଗନ କରୁଥିବାବେଳେ ବାମହସ୍ତରେ ଏକ ଦର୍ପଣ ଧାରଣ କରିଥାଆନ୍ତି। କ୍ୱଚିତ୍ ମୂର୍ତ୍ତିରେ ଉମାଙ୍କ ହସ୍ତରେ ଦର୍ପଣ ପରିବର୍ତ୍ତେ ଏକ ଚମ୍ପକ କିମ୍ୱା କେତକୀ ପୁଷ୍ପ ଥାଏ। ଏହା ଉମାମହେଶ୍ୱରଙ୍କ 'ଆଲିଙ୍ଗନମୂର୍ତ୍ତି' ଅଟେ। ଏହି ପ୍ରକାର ଆବରଣ ଦେବତା ମୂର୍ତ୍ତିଗୁଡ଼ିକ ଆକାରରେ ଛୋଟ ହୋଇଥିବାବେଳେ ଅଧିକାଂଶ ପାର୍ଶ୍ୱଦେବତା ଓ ଅର୍ଚ୍ଚାବିଗ୍ରହ ଅପେକ୍ଷାକୃତ ବଡ଼। ପ୍ରାଚୀନଦୀ ଅବବାହିକାର ଅମରେଶ୍ୱର, ପିତାପଡ଼ା ଓ ସିଦ୍ଧେଶ୍ୱର ସମେତ ଚୌଦ୍ୱାର, ବଡ଼ମ୍ୱା ନିକଟ ଚମ୍ପେଶ୍ୱର, ପଶ୍ଚିମଓଡ଼ିଶାର ରାଣୀପୁର-ଝରିଆଲ୍, ଚଣ୍ଡୀତାଲ୍ ଓ ବେଲ୍‌ଖଣ୍ଡିଠାରେ ଥିବା ଉମାମହେଶ୍ୱରଙ୍କ ଏହି ପ୍ରକାର ଆଲିଙ୍ଗନ ମୂର୍ତ୍ତିଗୁଡ଼ିକ ଉଲ୍ଲେଖଯୋଗ୍ୟ।

ଶୈବ ଓ ଶାକ୍ତକ୍ଷେତ୍ର ଭୁବନେଶ୍ୱରରୁ ବହୁ ଉମାମହେଶ୍ୱର ମୂର୍ତ୍ତି ସ୍ଥାନାନ୍ତରିତ ହୋଇଥିବା ଅନୁମାନ କରାଯାଏ। ଏଠାର ଅଳ୍ପ କେତୋଟି ମୂର୍ତ୍ତି ମଧ୍ୟରେ ମେଘେଶ୍ୱର ମନ୍ଦିର, ଜଗମୋହନରେ ଥିବା ଖୋଲା ମୂର୍ତ୍ତିଟିରେ କେତେକ ବିଶେଷତ୍ୱ ରହିଛି। ଏଥିରେ ମହେଶ୍ୱର ତ୍ରିମୁଖ ଓ ଷଡ଼ଭୁଜ ଅଟନ୍ତି। ସେ ବିଶ୍ୱପଦ୍ମ ଉପରେ ବସିଥିବାବେଳେ ଉମା ତା'ଙ୍କ ବାମଜାନୁ ଉପରେ ସେହି ଭଙ୍ଗୀରେ ଆସନ ଗ୍ରହଣ କରିଛନ୍ତି। ମହେଶ୍ୱର ତା'ଙ୍କ ମୁଖ୍ୟ ଦକ୍ଷିଣହସ୍ତରେ ବରଦମୁଦ୍ରା ପ୍ରଦର୍ଶନ କରୁଥିବାବେଳେ ବାମହସ୍ତରେ ଉମାଙ୍କୁ ଆଲିଙ୍ଗନ କରିଛନ୍ତି। ତ୍ରିଶୂଳଟି ତା'ଙ୍କ ଦକ୍ଷିଣ ପାର୍ଶ୍ୱରେ ରହିଛି ଓ ଅନ୍ୟ ଦୁଇ ହସ୍ତରେ ସେ କୌଣସି ଏକ ଅସ୍ପଷ୍ଟ ବସ୍ତୁ ଓ ଜପମାଳା ଏବଂ ବାମହସ୍ତ ଦ୍ୱୟରେ ପଦ୍ମ ଓ କପାଳପାତ୍ର ଧାରଣ କରିଥିବାଦେଖାଯାଏ। ଦ୍ୱିଭୁଜା ଉମା ମହେଶ୍ୱରଙ୍କୁ ଦକ୍ଷିଣହସ୍ତରେ ଆଲିଙ୍ଗନ

କରିଥିବାବେଳେ ତା'ଙ୍କ ବାମହସ୍ତଟି ଭଗ୍ନ। ବସ୍ତ୍ରାଳଙ୍କାର ବ୍ୟତୀତ ଉମା ଓ ମହେଶ୍ୱରଙ୍କ ଯଥାକ୍ରମେ, ଯୁଡ଼ାମୁକୁଟ ଓ ଜଟାମୁକୁଟର ଶୈଳୀ ଓଡ଼ିଶାର ସମସାମୟିକ ଅନ୍ୟ ମୂର୍ତ୍ତିଠାରୁ ଭିନ୍ନ। ଏହା ବ୍ୟତୀତ ମୂର୍ତ୍ତିଗୁଡ଼ିକ ସହିତ ପାଦାସନ, ଆସନନିମ୍ନରେ ଏକ କୁମ୍ଭ ଓ ପୂଜାସାମଗ୍ରୀ ସହିତ କେତେଜଣ ଭକ୍ତଙ୍କ ପିତୁଳା ସ୍ଥାନିତ ହୋଇଛି। ସାମଗ୍ରିକ ଭାବେ ମୂର୍ତ୍ତିଟିର କଳାଶୈଳୀରେ ମଧ୍ୟଭାରତୀୟ ପ୍ରଭାବ ପରିଲକ୍ଷିତ ହୁଏ। ପ୍ରଚ୍ଛଦ ପଥରର ଉପର ଅଂଶ ଭଗ୍ନ, ମୂର୍ତ୍ତିଟିର ଉଚ୍ଚତାପ୍ରାୟ ୧.୬୦ ମିଟର ଅଟେ।

ବିଦେଶରେ ଥିବା ଓଡ଼ିଶାର ଦୁଇଟି ଉଚ୍ଚକୋଟୀର କଳାଶୈଳୀର ମୂର୍ତ୍ତି ମଧ୍ୟରୁ ସୁଇଜରଲ୍ୟାଣ୍ଡର କୌଣସି ଜଣେ କଳାସଂଗ୍ରାହକଙ୍କ ନିକଟରେ ଏକ କୃତିରେ ଲଳିତାସନରେ ବସିଥିବା ଉମା, ମହେଶ୍ୱର ଦ୍ୱିଭୁଜ ଅଟନ୍ତି। ଏଠାରେ ମହେଶ୍ୱର ଦକ୍ଷିଣହସ୍ତରେ ଏକ ଚମ୍ପକପୁଷ୍ପ ଧାରଣକରି ବାମହସ୍ତରେ ଉମାଙ୍କୁ ଆଲିଙ୍ଗନ କରିଛନ୍ତି। ଦେବୀ ତା'ଙ୍କ ଦକ୍ଷିଣ ହସ୍ତକୁ ଶିବଙ୍କ ସ୍କନ୍ଧ ଉପରେ ରଖିଥିବାବେଳେ ବାମହସ୍ତରେ ଏକ ଦର୍ପଣ ଧାରଣ କରିଥିବାଦେଖାଯାଏ। ଉମା, ମହେଶ୍ୱରଙ୍କ ମସ୍ତକରେ ଯଥାକ୍ରମେ, ମୁକୁଟଚୂଡ଼ା ଓ ଜଟାମୁକୁଟ ସହିତ ଦେହରେ ବିଭିନ୍ନ ବସ୍ତ୍ରାଳଙ୍କାର ଶୋଭାପାଉଛି। ବିଶ୍ୱପଦ୍ମ ଆସନର ନିମ୍ନରେ ବାହନ ବୃଷଭ ଓ ସିଂହ ଏବଂ ପୂଜା ସାମଗ୍ରୀ ସହିତ କେତେକ ଭକ୍ତଙ୍କ ପିତୁଳା ଉତ୍କୀର୍ଣ୍ଣ ହୋଇଛି। ମୂର୍ତ୍ତିଟିର ଅନ୍ୟଏକ ବିଶେଷତ୍ୱ ହେଉଛି ପ୍ରଚ୍ଛଦରେ ଥିବା ସୁନ୍ଦର ମକରତୋରଣର ଦୁଇପାଶ୍ୱରେ ଗନ୍ଧର୍ବ, ଅପସରାଙ୍କ ପିତୁଳା ବ୍ୟତୀତ ପଦ୍ମାସନରେ ବସିଥିବା ବ୍ରହ୍ମା ଓ ବିଷ୍ଣୁଙ୍କ ଦୁଇ କ୍ଷୁଦ୍ରମୂର୍ତ୍ତି ରହିଛି। କଳା ମୁଗୁନିପଥରରେ ନିର୍ମିତ, ମସୃଣ ମୂର୍ତ୍ତିଟି ଖ୍ରୀ: ୧୧ଶତାବ୍ଦୀର ହୋଇଥିବା ସମ୍ଭବ। ଅନୁମାନ କରାଯାଏ ଯେ, ପୂର୍ବେ ଏହା ଭୁବନେଶ୍ୱରର କୌଣସି ମନ୍ଦିର ଦେହରେ ପାର୍ଶ୍ୱଦେବତା ଭାବେ ସ୍ଥାନ ପାଇଥିଲା।


ଉମାମହେଶ୍ୱର ମୂର୍ତ୍ତି, ବ୍ରିଟିଶ୍ ମିୟୁଜିୟମ୍

ଉତ୍କୃଷ୍ଟ କଳାଶୈଳୀର ଅନ୍ୟଏକ କୃତି ବ୍ରିଟିଶ୍ ମିୟୁଜିୟମରେ ସଂରକ୍ଷିତ। ଏଥିରେ ଆଡ଼ମ୍ବରପୂର୍ଣ୍ଣ ପରିଶେ ମଧ୍ୟରେ ସହାସବଦନ, ଉମାମହେଶ୍ୱର ବିଶ୍ୱପଦ୍ମଉପରେ ଲଳିତ ଭଙ୍ଗୀରେ ଆସନ ଗ୍ରହଣ କରିଛନ୍ତି। ଉମାଙ୍କ ମସ୍ତକରେ କିରୀଟ-ଗଭା, ମହେଶ୍ୱରଙ୍କ ମସ୍ତକରେ ସୁଉଚ୍ଚ ଜଟାମୁକୁଟ ଓ ଉଭୟଙ୍କ ଶରୀରରେ ସ୍ୱଚ୍ଛବସ୍ତ୍ର ଏବଂ କାରୁକଳାପୂର୍ଣ୍ଣ ଅଳଙ୍କାରମାନ ଶୋଭାପାଉଛି। ଚର୍ତୁଭୁଜ ମହେଶ୍ୱରଙ୍କ ଦକ୍ଷିଣହସ୍ତ ଦ୍ୱୟରେ ଜପମାଳା ଓ ପଦ୍ମ,ଏକ ବାମହସ୍ତରେ ତ୍ରିଶୂଳ ରହିଥିବାବେଳେ ଅନ୍ୟହସ୍ତରେ ପାରମ୍ପରିକ ରୀତିରେ ସେ ଉମାଙ୍କୁ ଆଲିଙ୍ଗନ କରିବା ସହିତ ତା'ଙ୍କ ବାମ ବକ୍ଷୋଜକୁ ସ୍ପର୍ଶ କରୁଛନ୍ତି। ଦକ୍ଷିଣହସ୍ତରେ ମହେଶ୍ୱରଙ୍କୁ ଆଲିଙ୍ଗନ କରିଥିବା ଉମାଙ୍କ ବାମହସ୍ତରେ ଦର୍ପଣ ରହିଛି। ବହୁ କାରୁକାର୍ଯ୍ୟ ଓ ମୂର୍ତ୍ତିକଳା ପରିପୂର୍ଣ୍ଣ କୃତିଟିର ପଦ୍ମାସନ ନିମ୍ନରେ ବୃଷଭ ଓ ସିଂହକୁ

... ମୂର୍ତ୍ତି ... ଦେଖିବାକୁମିଳେ। ଏହା ବ୍ୟତୀତ ସେହି ସ୍ଥାନର ଦକ୍ଷିଣପାର୍ଶ୍ୱରେ ଗଣେଶ ଓ ଏକ ଶଙ୍ଖ ଏବଂ ବାମପାର୍ଶ୍ୱରେ ବୃଷଭ ଉପରେ ଜଣେ ନନ୍ଦିକ, ମୃଦଙ୍ଗ ସହିତ ନୃତ୍ୟରତ ଜଣେ ଗନ୍ଧର୍ବ ଓ ପୂଜା ଉପକରଣ ସହିତ କେନତେକ ପୂଜକ ଉପସ୍ଥିତ ଅଛନ୍ତି। ଯୁଗଳ ମୂର୍ତ୍ତିର ଦୁଇପାର୍ଶ୍ୱରେ ଅଷ୍ଟସହଚରୀ ହସ୍ତରେ ଚାମର, ପୂର୍ଣ୍ଣକୁମ୍ଭ ଓ ଅନ୍ୟ ସାମଗ୍ରୀ ଧାରଣ କରି ଦଣ୍ଡାୟମାନ ହୋଇଥିବା ଦେଖାଯାଏ। ଊର୍ଦ୍ଧ୍ୱଭାଗର କୀର୍ତ୍ତିମୁଖତୋରଣ ଦୁଇପାର୍ଶ୍ୱରେ ପୁଷ୍ପମାଳା ଧାରଣ କରିଥିବା ଉଡ୍ଡୀୟମାନ ଗନ୍ଧର୍ବ, ଅପ୍ସରାଙ୍କ ସମେତ ବିଭିନ୍ନ ବାଦ୍ୟଯନ୍ତ୍ର ବାଦନକରି ନୃତ୍ୟ କରୁଥିବା ବହୁ ଗନ୍ଧର୍ବ, ଅପ୍ସରା ଓ କିନ୍ନରଙ୍କ ପିଢ଼ୁଳା ସ୍ଥାନିତ ହୋଇଛି। କଳାମୁଗୁନି ପଥରରେ ନିର୍ମିତ, କମନୀୟ ମୂର୍ତ୍ତିଟିର ଉଚ୍ଚତା ପ୍ରାୟ ୧.୮୫ ମିଟର ଅଟେ। ଏହା ଖ୍ରୀ:୧୨ଶ ଶତାବ୍ଦୀର କୃତି ହୋଇଥିବା ସମ୍ଭବ। ସୂଚନାଯୋଗ୍ୟଯେ, ପ୍ରାଚୀନଦୀ ଅବବାହୀକାର ଚଉରାଶି ଗ୍ରାମରେ ଥିବା ଲକ୍ଷ୍ମୀନାରାୟଣ ମୂର୍ତ୍ତି ଓ ଚମ୍ପେଶ୍ୱରଠାରେ ଥିବା ଉମାମହେଶ୍ୱର ମୂର୍ତ୍ତିର କଳାଶୈଳୀ ସହିତ ଏହାର ବହୁ ସାମଞ୍ଜସ୍ୟ ରହିଛି। ଏହି ପୂଜିତ ପ୍ରତିମାଗୁଡ଼ିକ କୌଣସି ଜଣେ ଦକ୍ଷ ଶିଳ୍ପୀଙ୍କ କୃତି ହୋଇଥିବା ସମ୍ଭବ। ଏହା ଓଡ଼ିଶା କାହିଁକି, ଭାରତୀୟ ମୂର୍ତ୍ତିକଳାରେ ଏକ ଉଲ୍ଲେଖଯୋଗ୍ୟ ସ୍ଥାନ ଅଧିକାର କରେ।

## ଶିବପାର୍ବତୀ: ଅନ୍ୟ ଯୁଗଳମୂର୍ତ୍ତି

ଉପରୋକ୍ତ ମୂର୍ତ୍ତି ବ୍ୟତୀତ ଉମାମହେଶ୍ୱରଙ୍କର ଅନ୍ୟ କେତେକ ଯୁଗଳ ମୂର୍ତ୍ତି ମଧ୍ୟ ଦେଖିବାକୁ ମିଳେ। ଓଡ଼ିଶାର ମନ୍ଦିରଗାତ୍ରରେ ଶିବପାର୍ବତୀଙ୍କ ବୃଷଭାରୂଢ଼ ମୂର୍ତ୍ତି ସଂଖ୍ୟା ଯଥେଷ୍ଟ କମ୍। ମୁଖଲିଙ୍ଗମ୍, ମଧୁକେଶ୍ୱର ମନ୍ଦିର ପରିସରର ଏକ ଛୋଟ ଦେଉଳ ଦେହରେ ଏହିପରି ଏକ ମୂର୍ତ୍ତି ରହିଛି। ଶିବପାର୍ବତୀଙ୍କ ଦ୍ୟୁତକ୍ରୀଡ଼ା ବା ପଶାଖେଳ ମୂର୍ତ୍ତି ଅଳ୍ପ କେତେକ ପ୍ରାଚୀନ ମନ୍ଦିର ଗାତ୍ରରେ ଦେଖିବାକୁମିଳେ। ଏହି ରଚନାରେ ପଶାପାଲିର ଦୁଇପାର୍ଶ୍ୱରେ ଶିବ ଓ ପାର୍ବତୀ ଅର୍ଦ୍ଧପରାୟଣିକ ଭଙ୍ଗୀରେ ଆସନ ଗ୍ରହଣ କରି ପଶା ଖେଳୁଛନ୍ତି। ଏଠାରେ ପଶାପାଲିଟି ଏକ କବାଟ କିମ୍ବା ସିଡ଼ି ସଦୃଶ ପ୍ରତିୟମାନ ହୁଏ। ଭୁବନେଶ୍ୱରର ସୁବର୍ଣ୍ଣଜଳେଶ୍ୱର ମନ୍ଦିର ବାଡ଼ର ଏହି ପ୍ରକାର ରଚନାର ପଶାପାଲିରେ ୨୪ଗୋଟି ଘର ଥିବାବେଳେ ଶୁକ୍ଳେଶ୍ୱରର ମାଣିକେଶ୍ୱର ମନ୍ଦିରର ଏକ ଖଣ୍ଡିତ ଅଂଶରେ ଥିବା ଏହି ଦୃଶ୍ୟର ପଶାପାଲିରେ ମାତ୍ର ୧୨ଗୋଟି ଘର ଦେଖିବାକୁମିଳେ। ଏହା ବ୍ୟତୀତ କୁଣ୍ଡେଶ୍ୱରର ତ୍ରିଲୋଚନେଶ୍ୱର ମନ୍ଦିର ପରିସର, ସିଂହନାଥର ଶିବମନ୍ଦିର ଓ ମୁଖଲିଙ୍ଗମ୍, ମଧୁକେଶ୍ୱର ମନ୍ଦିରରେ ଶିବପାର୍ବତୀଙ୍କ ପଶାଖେଳମୂର୍ତ୍ତି ରହିଛି। ପୌରାଣିକ ଆଖ୍ୟାନ ଅନୁଯାୟୀ ଏହି ଖେଳରେ



ଶିବପାର୍ବତୀଙ୍କ ପଶାଖେଳ,
ସୁବର୍ଣ୍ଣଜଳେଶ୍ୱର ମନ୍ଦିର,
ଭୁବନେଶ୍ୱର



ଶିବପାର୍ବତୀ, ବୃଷଭାରୂଢ଼ ଯୁଗଳମୂର୍ତ୍ତି, ଯାଜପୁର



ବୀଣାଧର ଶିବଙ୍କ ସହିତ ପାର୍ବତୀ (ଓଡ଼ିଶା)
ଭାରତୀୟ ସଂଗ୍ରହାଳୟ, କଲିକତା

ଶିବ,ପାର୍ବତୀଙ୍କ ନିକଟରେ ପରାଜିତ ହୋଇ ତା'ଙ୍କର ଅଳଙ୍କାର, ଆୟୁଧ, ବାହନ ଏପରିକି ନିଜର ପିନ୍ଧିବା କୌପୂନୀ ଖଣ୍ଡିକ ମଧ୍ୟ ହରାଇଥିଲେ। ଏହି କୌତୂହଳପୂର୍ଣ୍ଣ ଘଟଣାର ସଂକ୍ଷିପ୍ତ ସୁନ୍ଦର ଉପସ୍ଥାପନା ମଧୁକେଶ୍ୱର ମନ୍ଦିରରେ ଦେଖିବାକୁମିଳେ।

ପାର୍ବତୀଙ୍କ ମନୋରଞ୍ଜନ ନିମନ୍ତେ ଶିବ ବୀଣାବାଦନ କରୁଥିବା ଦୃଶ୍ୟ ପ୍ରଥମେ ଭୁବନେଶ୍ୱରର ପରଶୁରାମେଶ୍ୱର ମନ୍ଦିରଗାତ୍ରରେ ଉତ୍କୀର୍ଣ୍ଣ ହୋଇଛି। ମନ୍ଦିର ଗଣ୍ଡିର ପୂର୍ବପାର୍ଶ୍ୱ ଏକ ଚୈତ୍ୟପଦକ ମଧ୍ୟରେ ଶିବପାର୍ବତୀ ଏକ ଚକ୍ରାକାର କୁସନଆସନ ଉପରେ ଅର୍ଦ୍ଧପରାୟଣିକ ଭଙ୍ଗୀରେ ବସିଥିବାବେଳେ ଶିବ ମୁଖ୍ୟ ଦୁଇହସ୍ତରେ ବୀଣାବାଦନ କରୁଛନ୍ତି। ତା'ଙ୍କ ଅନ୍ୟ ଦୁଇହସ୍ତରୁ ଦକ୍ଷିଣହସ୍ତରେ ଏକ ପଦ୍ମ ରହିଛି ଏବଂ ବାମହସ୍ତରେ ସେ ପାର୍ବତୀଙ୍କୁ ଆଲିଙ୍ଗନ କରିଛନ୍ତି। ପାର୍ବତୀ ନିଜ ଦକ୍ଷିଣହସ୍ତକୁ ଶିବଙ୍କ ଜାନୁଉପରେ ରଖିଥିବାବେଳେ ବାମହସ୍ତରେ ପଦ୍ମକଳିକା ସଦୃଶ ଏକ ପଦାର୍ଥ ଧାରଣ କରିଥିବା ଦେଖାଯାଏ। ଏହା ବ୍ୟତୀତ ପଦକ ମଧ୍ୟରେ ଗଣେଶଙ୍କ ଏକ କ୍ଷୁଦ୍ରପିତୁଳା, ପୁଷ୍ପମାଳା ଧାରଣ କରିଥିବା ଜଣେ ପରିଚାରିକା ଏବଂ ପଦକ ଉପରେ ପୁଷ୍ପମାଳା ସହିତ ଅବତରଣ ଭଙ୍ଗୀରେ ଥିବା ଜଣେ ଗନ୍ଧର୍ବ, ଦକ୍ଷିଣ ପାର୍ଶ୍ୱରେ ବୃଷଭ ଓ ବାମ ପାର୍ଶ୍ୱରେ ଜଣେ ଗଣଙ୍କ ପ୍ରତିମା ସ୍ଥାନିତ ହୋଇଛି। ଭୁବନେଶ୍ୱରର ବୈତାଳଦେଉଳ, ବୈଦ୍ୟେଶ୍ୱରର ସିଂହନାଥମନ୍ଦିର, ଭଦ୍ରକ ନିକଟ କାଉପୁର, ଗଞ୍ଜାମର ବଡ଼ଗାଁର ଶିବମନ୍ଦିରର ଆବରଣଦେବତା ସମେତ କଲିକତା, ଭାରତୀୟ ସଂଗ୍ରହାଳୟରେ ଓଡ଼ିଶାର ଏକ ସୁନ୍ଦର ବୀଣାଧରଶିବଙ୍କ ସହିତ ପାର୍ବତୀଙ୍କ ମୂର୍ତ୍ତି ଦେଖିବାକୁମିଳେ। ଏହା ବ୍ୟତୀତ ଶିବପାର୍ବତୀଙ୍କ ଅନ୍ୟ କେତେକ ଗୌଣ ଯୁଗଳମୂର୍ତ୍ତି ରହିଛି। ଏହା ମଧ୍ୟରେ ପାର୍ବତୀ ଶିବଙ୍କ ପାଦ ମଖାଳୁଥିବା ଦୃଶ୍ୟ ଅନ୍ୟତମ। ଏହି ପ୍ରକାର ଏକ ମୂର୍ତ୍ତିର ଭଗ୍ନାବଶେଷ ନିମାପଡ଼ା ନିକଟ ବିଷ୍ଣୁପୁରର ଭଗ୍ନଶିବ ମନ୍ଦିର ପରିସରରେ ଦେଖିବାକୁମିଳେ। ଓଡ଼ିଶା ସମେତ ଭାରତର ସର୍ବତ୍ର ଶିବପାର୍ବତୀଙ୍କ ଯୁଗଳମୂର୍ତ୍ତି ଲୋକପ୍ରିୟ ଅଟେ। ଦକ୍ଷିଣଭାରତୀୟ ମିଶ୍ରିତଧାତୁ ବା ବ୍ରୋଞ୍ଜରେ ମଧ୍ୟ ଏହି ପ୍ରକାର ବିଭିନ୍ନ ରଚନା ଦେଖାଯାଏ।

## ଶିବ: ଭିକ୍ଷାଟନମୂର୍ତ୍ତି

ଅନେକ ପୁରାଣରେ ଶିବ ଭିକ୍ଷୁକ ହୋଇଥିବା ଆଖ୍ୟାନମାନ ଉଲ୍ଲେଖ ଅଛି। ତାହା ମଧ୍ୟରୁ ଏକ ସୁବିଦିତ ଆଖ୍ୟାନ ହେଉଛି; ପାର୍ବତୀ ଶିବଙ୍କୁ ପତିରୂପେ ପାଇବା ନିମନ୍ତେ ଘୋର ତପସ୍ୟା କରିଥିଲେ। ଏହି ସମୟରେ ଶିବ ଦେବୀଙ୍କ ମନୋବଳ ପରୀକ୍ଷା ନିମନ୍ତେ ଭିକ୍ଷୁକରୂପ ଧାରଣକରି ତା'ଙ୍କ ସମ୍ମୁଖରେ ଉଭାହେବା ସହିତ ଶିବଙ୍କ ବଦ୍‌ଗୁଣମାନ ବର୍ଣ୍ଣନା କରିଥିଲେ। ଅନ୍ୟ ଏକ ଆଖ୍ୟାନରୁ ଜଣାଯାଏ ଯେ, ଏକଦା ବ୍ରହ୍ମା ଓ ଶିବଙ୍କ ମଧ୍ୟରେ କୌଣସି କାରଣରୁ କଳହ ହେଲା। ଏଥିରେ ଶିବ ଉତ୍‌କ୍ଷିପ୍ତ ହୋଇ ବ୍ରହ୍ମାଙ୍କ ପଞ୍ଚମ ମସ୍ତକ ଛେଦନ କଲେ। ଏହାଦ୍ୱାରା ଶିବଙ୍କୁ ବ୍ରହ୍ମହତ୍ୟା ଦୋଷ ଲାଗିଲା। ଏଥିରୁ ମୁକ୍ତିପାଇବା ନିମନ୍ତେ ସେ ବ୍ରହ୍ମାଙ୍କ ସେହି କପାଳକୁ ଭିକ୍ଷାପାତ୍ର କରି ବାରବର୍ଷ କାଳ ଭ୍ରମଣ କରିବାପରେ କାଶୀଧାମରେ ଭିକ୍ଷାକରି ସେହି ପାପରୁ ମୁକ୍ତି ପାଇଲେ। ପୁରାଣର ଅନ୍ୟ ଏକ ବର୍ଣ୍ଣନା ଅନୁଯାଇ ଶିବ ପାର୍ବତୀଙ୍କ ସହିତ କଳହ କରି ବାରବର୍ଷ କାଳ ଭିକ୍ଷାବୃତ୍ତି କଲେ। ଶେଷରେ ପାର୍ବତୀ, ଅନ୍ନପୂର୍ଣ୍ଣା ରୂପରେ କାଶୀକ୍ଷେତ୍ରରେ ଶିବଙ୍କୁ ଅନ୍ନଦାନ କରିବାପରେ ଶିବ ଭିକ୍ଷୁକରୂପ ତ୍ୟାଗକରି ପୁନର୍ବାର ପାର୍ବତୀଙ୍କ ସହିତ କୈଳାସରେ ଅବସ୍ଥାନ କଲେ। ଅନ୍ୟଏକ ବିବରଣୀରୁ ଜଣାଯାଏ ଯେ, ଦେବଦାରୁ ବନରେ କେତେକ ଋଷି ସପତ୍ନୀକ ବସବାସକରି ଧର୍ମାଚରଣ କରୁଥିଲେ। ତେବେ, ଏହି ଋଷିମାନେ ନିଜ ପତ୍ନୀମାନଙ୍କର ଇଚ୍ଛାପ୍ରତି ଦୃଷ୍ଟିପାତ କରୁନଥିଲେ। ଶିବ ସେମାନଙ୍କୁ ଉଚିତ୍ ଶିକ୍ଷା ଦେବାନିମନ୍ତେ ଉପାୟ ପାଞ୍ଚିଲେ। ଏକଦା ଋଷିମାନେ ଯଜ୍ଞସମିଧ ସଂଗ୍ରହ ନିମନ୍ତେ ବନ ମଧ୍ୟକୁ ଯାଇଥିବାବେଳେ ଶିବ ଉଲଗ୍ନ ଭିକ୍ଷୁକରୂପେ ଋଷିପତ୍ନୀମାନଙ୍କ ସମ୍ମୁଖରେ ଉଭାହେଲେ। ଏଥିରେ ରମଣୀମାନେ କାମାତୁର ହୋଇ ଉଠୁଥିବାବେଳେ ଋଷିମାନେ ଆସି ଶିବଙ୍କ ଏହି ପ୍ରକାର କାର୍ଯ୍ୟନିମନ୍ତେ ତା'ଙ୍କୁ ତିରସ୍କାର କରିବା ସହିତ ଅଭିଶାପ ଦେଇଥିଲେ। ଓଡ଼ିଶାର ପ୍ରାଚୀନ ମନ୍ଦିର ଗାତ୍ରରେ ଉତ୍‌କୀର୍ଣ୍ଣ ହୋଇଥିବା ଶିବଙ୍କ ବର୍ଣ୍ଣନାତ୍ମକ 'ଭିକ୍ଷାଟନମୂର୍ତ୍ତି'ରେ ଏହି ଋରିଆଖ୍ୟାନର ସଂକ୍ଷିପ୍ତ, ସମନ୍ୱୟ ସୂଚନା ଦେଖିବାକୁମିଳେ। ଅନ୍ୟ କେତେକ ସ୍ଥଳେ ଭିକ୍ଷୁକ-ଶିବ ଓ ଅନ୍ନପୂର୍ଣ୍ଣାଙ୍କୁ



ଭିକ୍ଷାଟନ ଶିବଙ୍କୁ ଅନ୍ନପୂର୍ଣ୍ଣା (ପାର୍ବତୀ) ଭିକ୍ଷାଦାନ ଦୃଶ୍ୟ, ପରଶୁରାମେଶ୍ୱର ମନ୍ଦିର, ଭୁବନେଶ୍ୱର

ଗୁରୁତ୍ୱଦିଆଯାଇ ଏହାର ସଂକ୍ଷିପ୍ତ ଉପସ୍ଥାପନ ମଧ୍ୟ କରାଯାଇଛି । ତେବେ, ଶିବଙ୍କ ଭିକ୍ଷାଟନମୂର୍ତ୍ତି ସହିତ ଅନ୍ୟକେତେକ ଶୈବତତ୍ତ୍ୱ ସମ୍ପର୍କୀୟ ମୂର୍ତ୍ତିକଳା ତତ୍‌କାଳୀନ ଓଡ଼ିଶାରେ କାପାଳିକ ଧର୍ମାଚରଣର ପ୍ରଚାର ବିଷୟ ସୂଚିତ କରେ ।

ଭିକ୍ଷାଟନମୂର୍ତ୍ତିରେ ଭିକ୍ଷୁକରୂପୀ ଶିବ ସର୍ବଦା ଦ୍ୱିଭୁଜ ଏବଂ ସାବଲୀଳ ଗମନ ଭଙ୍ଗୀରେ ଥାଆନ୍ତି । ସେ ଦକ୍ଷିଣହସ୍ତରେ ମୟୂରପୁଚ୍ଛରେ ନିର୍ମିତ ଏକ ଛତ୍ର ଓ ବାମ ହସ୍ତରେ କପାଳର ଭିକ୍ଷାପାତ୍ର ଧାରଣ କରିଥିବା ଦେଖାଯାଏ । ତା'ଙ୍କ ସମ୍ମୁଖରେ ଅନ୍ନପୂର୍ଣ୍ଣା ନମ୍ରତାର ସହିତ ଅନ୍ନଦାନ କରୁଥିବାବେଳେ ଅନ୍ୟ ଆନୁସଙ୍ଗିକ ମୂର୍ତ୍ତିଗୁଡ଼ିକ ଛୋଟ ଆକାରରେ, ବିଭିନ୍ନ ଭାବରେ ଉତ୍‌କୀର୍ଣ୍ଣ ହୋଇଥାଏ । କେତେକ ମନ୍ଦିରର ଆବରଣ ଦେବତା ଓ ଅନ୍ୟ କେତେକ ସ୍ଥଳେ ପାର୍ଶ୍ୱଦେବତା ଭାବେ ଏହି ମୂର୍ତ୍ତି ଦେଖିବାକୁମିଳେ । ଭୁବନେଶ୍ୱର, ପରଶୁରାମେଶ୍ୱର ଦେଉଳ ଗଣ୍ଡିର ସମ୍ମୁଖ ରାହାପାଗରେ ଥିବା ଏକ ଚୈତ୍ୟପଦକ ମଧ୍ୟରେ ଶିବଙ୍କ ଭିକ୍ଷାଟନମୂର୍ତ୍ତିର ଏକ ସୁନ୍ଦର ରଚନା ରହିଛି । ଏହା ମଧ୍ୟଭାଗରେ ଥିବା ସ୍ଥାନରେ ଜଣେ ଗଣଙ୍କ କ୍ଷୁଦ୍ରମୂର୍ତ୍ତି ଦେଖାଯାଏ । ଗଣଜଣକ ହସ୍ତରେ ଏକ ଯଷ୍ଟି ଧରି ଶିବଙ୍କ ଊର୍ଦ୍ଧ୍ୱଲିଙ୍ଗ ସହିତଥିବା ଅଣ୍ଡକୋଷକୁ ଆଘାତ କରୁଛନ୍ତି । ବିଦ୍ୱାନମାନଙ୍କ ମତରେ ଏହା ସୃଷ୍ଟିକ୍ରିୟାର ବୀଜକୋଷକୁ ସକ୍ରିୟ କରିବା ସଂକେତ ମାତ୍ର । ମୁଖଲିଙ୍ଗମ୍, ମଧୁକେଶ୍ୱର ମନ୍ଦିରର ଏକ ଚକ୍ରାକାର ପଦକରେ ଥିବା ଏହି ବିଷୟର ଉପସ୍ଥାପନା ଶୈଳୀ ଭିନ୍ନ ହୋଇଥିବାବେଳେ ଏଠାରେ ଋଷିମାନଙ୍କର କୌଣସି ମୂର୍ତ୍ତି ଉତ୍‌କୀର୍ଣ୍ଣ ହୋଇନାହିଁ । ତେବେ, ଏଥିରେ ଅନେକ ଋଷିପତ୍ନୀ କାମାତୁର ହୋଇ ପରସ୍ପରକୁ ଆଲିଙ୍ଗନ କରୁଥିବା ଦୃଶ୍ୟ ରହିଛି । ମହାନଦୀ ଟାପୁରେ ଥିବା ସିଂହନାଥମନ୍ଦିର ସନ୍ଧିସ୍ଥଳର ଉପରଭାଗରେ ଓ ଜଗମୋହନର ଉତ୍ତରପାର୍ଶ୍ୱରେ ଥିବା ବରାହମୂର୍ତ୍ତିର ଉପର ଲମ୍ବଅଂଶରେ ଭିକ୍ଷାଟନମୂର୍ତ୍ତିର ବର୍ଣ୍ଣନାତ୍ମକ ଚିତ୍ର ଦେଖିବାକୁମିଳେ । ଏହା ବ୍ୟତୀତ ଭୁବନେଶ୍ୱରର ବୈତାଳ ଦେଉଳ, ବରଣ୍ଡରେ ଏହି ବିଷୟର କେତାକାଂଶ ଉତ୍‌କୀର୍ଣ୍ଣ ହୋଇଛି ।

ଶିବଙ୍କ ଭିକ୍ଷାଟନ ମୂର୍ତ୍ତିର ସଂକ୍ଷିପ୍ତ ଉପସ୍ଥାପନା ଯାଜପୁରର କେତେକ ମନ୍ଦିରରେ, ଭୁବନେଶ୍ୱର ମାର୍କଣ୍ଡେଶ୍ୱର, ଶିଶିରେଶ୍ୱର ଓ ମୁକ୍ତେଶ୍ୱର ମନ୍ଦିର ସମେତ ମୁଖଲିଙ୍ଗମ୍‌ର ସୋମେଶ୍ୱର ମନ୍ଦିର, ଖିଚିଂର କୁଟେଇଚଣ୍ଡି ମନ୍ଦିର, ସିଂହନାଥ ଓ ଶୁକ୍ଳେଶ୍ୱରର ମାଣିକେଶ୍ୱର ମନ୍ଦିରରେ ଦେଖିବାକୁମିଳେ । ଅନ୍ୟ କେତେକ ସ୍ଥାନରେ ଏହାର ଭଗ୍ନାବଶେଷ ମାତ୍ର ରହିଛି । ଏହା ମଧ୍ୟରେ କୁଆଲୋର କନକେଶ୍ୱର ମନ୍ଦିର, ଶୁକ୍ଳେଶ୍ୱରର ମାଣିକେଶ୍ୱର ମନ୍ଦିର,ସିଂହନାଥର ଜଗମୋହନ ଓ ଲେଣ୍ଟୁରା-ଭଗବାନପୁରର ଅନନ୍ତେଶ୍ୱର ମନ୍ଦିରରେ ଭିକ୍ଷାଟନ ମୂର୍ତ୍ତି ପାର୍ଶ୍ୱଦେବତା ଭାବେ ସ୍ଥାନିତ ହୋଇଛି । ଯାଜପୁରର ବ୍ରହ୍ମକୁଣ୍ଡ, ବରାହମନ୍ଦିର ଓ ତ୍ରିଲୋଚନେଶ୍ୱର ମନ୍ଦିର ମୂର୍ତ୍ତି ଏବଂ ମୁଖଲିଙ୍ଗମ୍ ସୋମେଶ୍ୱର ମନ୍ଦିରର ଭିକ୍ଷାଟନମୂର୍ତ୍ତିରେ ଶିବଙ୍କ ସହିତ ପାର୍ବତୀଙ୍କ ଉପଯୁକ୍ତ ଉଚ୍ଚତାର ମୂର୍ତ୍ତି ରହିଥିବାବେଳେ ' ମାର୍କଣ୍ଡେଶ୍ୱର ., ଶୁକ୍ଳେଶ୍ୱର, ସିଂହନାଥ ଓ ଖିଚିଂର ରଚନାରେ ପାର୍ବତୀଙ୍କ ମୂର୍ତ୍ତିକୁ ଗୌଣ କରିଦିଆଯାଇ, ତା'ଙ୍କ କ୍ଷୁଦ୍ରପ୍ରତିମା ସ୍ଥାନିତ ହୋଇଛି । ଖ୍ରୀଷ୍ଟୀୟ ୭ମ ରୁ ୧୦ମ ଶତାବ୍ଦୀ ମଧ୍ୟରେ ଓଡ଼ିଶାର ମନ୍ଦିର ଗାତ୍ରରେ ପୁରାଣ ବର୍ଣ୍ଣିତ ଶିବଙ୍କ ଭିକ୍ଷାଟନମୂର୍ତ୍ତିଗୁଡ଼ିକ ଲୋକପ୍ରିୟ ହୋଇଥିବା ସୂଚନାମିଳେ ।



# ଶିବ: ଯୁଗ୍ମମୂର୍ତ୍ତି

## ଶିବ: ଅର୍ଦ୍ଧନାରୀଶ୍ୱର

ଦୁଇ ଭିନ୍ନ ଭିନ୍ନ ଦେବଦେବୀ କିମ୍ବା ଦେବତାଙ୍କ ଏକତ୍ରୀକରଣ ରଚନାକୁ 'ଯୁଗ୍ମମୂର୍ତ୍ତି' କୁହାଯାଏ। ଏହି ଭାବରେ ଶିବପାର୍ବତୀଙ୍କ ମିଳିତ ରୂପ ଅର୍ଦ୍ଧନାରୀଶ୍ୱର ଭାବେ ଖ୍ୟାତ। ପୌରାଣିକ ଆଖ୍ୟାନ ଅନୁଯାୟୀ ବ୍ରହ୍ମା ପ୍ରଜାପତିମାନଙ୍କୁ ସୃଷ୍ଟକରି ତା'ଙ୍କ ଦ୍ୱାରା ପ୍ରଜାସୃଷ୍ଟି କରାଇବାକୁ ଚେଷ୍ଟାକଲେ। କିନ୍ତୁ, ପ୍ରଜାପତିମାନେ ଏହି କାର୍ଯ୍ୟକରିବାକୁ ଅକ୍ଷମ ହେଲେ। ଏଥିରେ ବ୍ରହ୍ମା ଚିନ୍ତିତ ଥିବାବେଳେ ଶିବ, ଅର୍ଦ୍ଧପୁରୁଷ ଓ ଅର୍ଦ୍ଧନାରୀ ରୂପରେ ତା'ଙ୍କ ସମ୍ମୁଖରେ ଉଭାହୋଇଥିଲେ। ଏଥିରୁ ବ୍ରହ୍ମା ବୁଝିପାରିଲେ ଯେ, ପ୍ରକୃତି ଓ ପୁରୁଷଙ୍କ ମିଳନରେହିଁ 'ପ୍ରଜାସୃଷ୍ଟି' ସମ୍ଭବ। ଏଣୁ ପ୍ରଜାପତିମାନେ ଦକ୍ଷଙ୍କ କନ୍ୟାମାନଙ୍କୁ ବିବାହକରି ପ୍ରଜାସୃଷ୍ଟି କଲେ। ଦକ୍ଷିଣଭାରତୀୟ ଆଗମଶାସ୍ତ୍ର ଓ ବିଭିନ୍ନ ପୁରାଣରେ ଅର୍ଦ୍ଧନାରୀଶ୍ୱରଙ୍କ ବିଷୟରେ ଭିନ୍ନ ଭିନ୍ନ ଆଖ୍ୟାନମାନ ଉଲ୍ଲେଖ ଅଛି। ତେବେ, ଏହି ପରିକଳ୍ପନାର ଭିତ୍ତିଭୂମି ହେଉଛି, ପ୍ରକୃତି ଓ ପୁରୁଷ ଏକ ଓ ଅଭିନ୍ନ ତଥା ଏହା ସୃଷ୍ଟିକ୍ରିୟାର ସଂକେତ। ଅନେକ ପୁରାଣ ଆଗମ ଓ ଶିଳ୍ପଶାସ୍ତ୍ରରେ ଅର୍ଦ୍ଧନାରୀଶ୍ୱର ରୂପର ବର୍ଣ୍ଣନା ବିଭିନ୍ନ ପ୍ରକାରେ ଦେଖିବାକୁମିଳେ। ତେବେ, ଏହା ଶିବ ଓ ପାର୍ବତୀଙ୍କ ଏକାଙ୍ଗଯୁଗଳ ରୂପ ମାତ୍ର। ଏହି ରଚନାର ଦକ୍ଷିଣପାର୍ଶ୍ୱ ଶିବ ଏବଂ ବାମରେ ପାର୍ବତୀଙ୍କ ଶରୀର ଏକତ୍ର ଦେଖାଯାଏ। ଶିବଙ୍କ ଊର୍ଦ୍ଧ୍ୱଲିଙ୍ଗ ଓ ପାର୍ବତୀଙ୍କ ଏକ ପାର୍ଶ୍ୱକୁଚ ଏହାର ସ୍ପଷ୍ଟ ସୂଚନା ଦେଉଥିବାବେଳେ ଦକ୍ଷିଣପାର୍ଶ୍ୱ ହସ୍ତଗୁଡ଼ିକରେ ଶିବ ଏବଂ ବାମପାର୍ଶ୍ୱ ହସ୍ତଗୁଡ଼ିକରେ ପାର୍ବତୀ ନିଜ ନିଜର ଆୟୁଧମାନ ଧାରଣ କରିଥାଆନ୍ତି। ଏହା ବ୍ୟତୀତ ଉଭୟଙ୍କ ବସନଭୂଷଣରେ ମଧ୍ୟ ପାର୍ଥକ୍ୟ ରହିଥାଏ। କେତେକ ସ୍ଥଳେ ଉଭୟଙ୍କ ବାହନ ନିଜନିଜ ପାର୍ଶ୍ୱରେ ଉପସ୍ଥିତଥିବା ଦେଖାଯାଏ।

ଓଡ଼ିଶାର ମନ୍ଦିର ଗାତ୍ରରେ ଅର୍ଦ୍ଧନାରୀଶ୍ୱରଙ୍କ ଦ୍ୱିଭୁଜ କିମ୍ବା ଚତୋଧିକଭୁଜ ଦଣ୍ଡାୟମାନ, ଆସନ ତଥା ନୃତ୍ୟଭଙ୍ଗୀର ମୂର୍ତ୍ତି ଦେଖିବାକୁମିଳେ। କେତେକ ପ୍ରାଚୀନ ମନ୍ଦିର ଗାତ୍ରର ଚୈତ୍ୟପଦକ ନକ୍ସା ମଧ୍ୟରେ ଦ୍ୱିଭୁଜ, ସରଳ କ୍ଷୁଦ୍ରପ୍ରତିମା ରହିଛି। କିଞ୍ଚିତ୍ ପରବର୍ତ୍ତୀ ସମୟରେ ମନ୍ଦିର ଗାତ୍ରରେ ଆକାର ବୃଦ୍ଧି ସହିତ ଏହି ମୂର୍ତ୍ତିଗୁଡ଼ିକ ଆବରଣଦେବତା ଭାବେ ସ୍ଥାନିତ ହୋଇଥିବା ଦେଖାଯାଏ। ଏହା ମଧ୍ୟରେ ଦଣ୍ଡାୟମାନ ବା ସ୍ଥାନକ ମୂର୍ତ୍ତିର ସଂଖ୍ୟା ଅଧିକ। ଏହିପରି ଏକ ପ୍ରାଚୀନମୂର୍ତ୍ତି ଯାଜପୁରର ଅଠରନଳା ଦେହରେ ସ୍ଥାନିତ ହୋଇଛି। ଏଥିରେ ଦକ୍ଷିଣପାର୍ଶ୍ୱ ଶିବ ଉପର ହସ୍ତରେ ତ୍ରିଶୂଳ ଧାରଣ କରିଥିବାବେଳେ ତଳହସ୍ତରେ ବୀଜପୂରକ ସହ ବରଦମୁଦ୍ରା ପ୍ରଦର୍ଶନ କରୁଛନ୍ତି। ବାମପାର୍ଶ୍ୱ ଅର୍ଦ୍ଧାଙ୍ଗୀ,ପାର୍ବତୀ ଉପର ହସ୍ତରେ ଦର୍ପଣ ଓ ତଳ ହସ୍ତରେ ଜପମାଳା ଧାରଣ କରିଛନ୍ତି। ବେଶପୋଷାକର ଭିନ୍ନତା ମଧ୍ୟରେ ଶିବଙ୍କ କର୍ଣ୍ଣରେ ସର୍ପକୁଣ୍ଡଳ ଓ ପାର୍ବତୀଙ୍କ କର୍ଣ୍ଣରେ ରତ୍ନକୁଣ୍ଡଳ, ଶିବଙ୍କ ପରିଧେୟ ବ୍ୟାଘ୍ରଚର୍ମ ଓ ପାର୍ବତୀଙ୍କ ବସ୍ତ୍ର ସ୍ପଷ୍ଟ ହେଉଥିବାବେଳେ ମୂର୍ତ୍ତିର ପୃଷ୍ଠଭାଗରେ କେବଳ ବୃଷଭ ଓ ଦୁଇ ପାର୍ଶ୍ୱରେ ଦୁଇ ଅନୁଚର ଦେଖାଯାଆନ୍ତି। ଏହା ଏକ ପ୍ରାଚୀନ କୃତି ଅଟେ।

ଭୁବନେଶ୍ୱର, ବୈତାଳଦେଉଳର ପଶ୍ଚିମପାର୍ଶ୍ୱ ବାଡ଼ରେ ପାର୍ଶ୍ୱଦେବତା ଭାବେ ସ୍ଥାନିତ ହୋଇଥିବା ସୁଉଚ୍ଚ ଅର୍ଦ୍ଧନାରୀଶ୍ୱର ପ୍ରତିମାଟିର କଳାଶୈଳୀ ଉନ୍ନତ। ଏହା ଏକ ମଧ୍ୟଯୁଗୀୟ ଅର୍ଥାତ୍ ଖ୍ରୀ:୯ମ ଶତାବ୍ଦୀର କୃତି ଅଟେ। ଏଠାରେ ତା'ଙ୍କ ଉପର ଦକ୍ଷିଣହସ୍ତରେ ଜପମାଳା ଓ ତଳ ହସ୍ତରେ ବୀଜପୂରକ ଏବଂ ବାମ ଉପର ହସ୍ତରେ ଦର୍ପଣ ରହିଥିବାବେଳେ ତଳହସ୍ତଟି ସାବଲୀଳ ଭଙ୍ଗୀରେ



ଅର୍ଦ୍ଧନାରୀଶ୍ୱର, ବୈତାଳ ମନ୍ଦିର
ଭୁବନେଶ୍ୱର

ଛୁଉଁ ସ୍ପର୍ଶ କରୁଛି। ମୂର୍ତ୍ତିର ପୃଷ୍ଠଭାଗରେ ପୂର୍ବଭଳି କେବଳ ବୃଷଭର ମୂର୍ତ୍ତିହିଁ ଦେଖିବାକୁମିଳେ। ଏହି ମୂର୍ତ୍ତିଟିର ଉଚ୍ଚତା ପ୍ରାୟ ୦.୬୭ ମିଟର ଓ ପ୍ରସ୍ଥ ପ୍ରାୟ ୦.୨୫ ମିଟର ଅଟେ। ଲିଙ୍ଗରାଜଙ୍କ ଦେଉଳ, ଦକ୍ଷିଣପୂର୍ବ କନିକପାଗର ଉପର ଜଂଘର ବିକଶିତ କଳାଶୈଳୀର ଏକ ସୁନ୍ଦର ଅର୍ଦ୍ଧନାରୀଶ୍ୱର ପ୍ରତିମା ଉତ୍କୀର୍ଣ୍ଣ ହୋଇଛି। ବିଶ୍ୱପଦ୍ମ ଉପରେ, ତ୍ରିଭଙ୍ଗରେ ଦଣ୍ଡାୟମାନ ଦ୍ୱିଭୁଜ ମୂର୍ତ୍ତିର ଦକ୍ଷିଣହସ୍ତରେ ଏକ ଲମ୍ବ ତ୍ରିଶୂଳ ଓ ବାମହସ୍ତରେ ପଦ୍ମ ଦେଖାଯାଏ। ଏହା ବ୍ୟତୀତ ମୂର୍ତ୍ତିର ଦୁଇପାର୍ଶ୍ୱରେ କେତେକ ନାରୀ ବିଭିନ୍ନ ବାଦ୍ୟଯନ୍ତ୍ର ବାଦନ କରୁଥିବାବେଳେ ଊର୍ଦ୍ଧ୍ୱର ଦୁଇକୋଣରେ ଉଡ୍ଡୀୟମାନ ଭଙ୍ଗୀରେ ଗନ୍ଧର୍ବ ଓ ଅପ୍ସରାଙ୍କ ଚିତ୍ରଣ ରହିଛି। ଅର୍ଦ୍ଧନାରୀଶ୍ୱରଙ୍କ ଅନ୍ୟ ଦଣ୍ଡାୟମାନ ପ୍ରତିମା ମାର୍କଣ୍ଡେଶ୍ୱର, ବ୍ରହ୍ମେଶ୍ୱର, ବାଲୁକେଶ୍ୱର ସମେତ ବୈଦ୍ୟେଶ୍ୱରର ସିଂହନାଥମନ୍ଦିର, ଖେଲାରର ଖିଲ୍ଲେଶ୍ୱରମନ୍ଦିର, ପାଟଣାଗଡ଼ର କୋଶଳେଶ୍ୱରମନ୍ଦିର ଏବଂ ଖିଚିଂ ସଂଗ୍ରହାଳୟରେ ଦେଖିବାକୁମିଳେ। ତେବେ, ସମୟାନୁକ୍ରମ ଏହାର କଳାଶୈଳୀରେ ପାର୍ଥକ୍ୟ ରହିଛି।

ଆସନମୂର୍ତ୍ତି ଓ ନୃତ୍ୟଭଙ୍ଗୀର ଅର୍ଦ୍ଧନାରୀଶ୍ୱର ମୂର୍ତ୍ତି ସଂଖ୍ୟା ଯଥେଷ୍ଟ କମ୍। ପଦ୍ମାସନରେ ବସିଥିବା ଏହି ପ୍ରକାର ମୂର୍ତ୍ତି ପାଇକପଡ଼ାର ପାତାଳେଶ୍ୱର ମନ୍ଦିର ପରିସର ଓ ଭୁବନେଶ୍ୱରର ଲିଙ୍ଗରାଜଙ୍କ ଭୋଗମଣ୍ଡପ ଭିତର ପାଖ ବାଡ଼ରେ ଦେଖିବାକୁମିଳେ। ଭୁବନେଶ୍ୱର, ପରଶୁରାମେଶ୍ୱର ମନ୍ଦିର ଜଗମୋହନ ବାଡ଼ରେ ଅଷ୍ଟଭୁଜ ନୃତ୍ୟ-ଅର୍ଦ୍ଧନାରୀଶ୍ୱର ଏବଂ ଶତ୍ରୁଘ୍ନେଶ୍ୱର ମନ୍ଦିର ଗାତ୍ରରେ ଷଡ଼ଭୁଜ ପ୍ରତିମା ଉତ୍କୀର୍ଣ୍ଣ ହୋଇଥିବା ଦେଖାଯାଏ। ଏହି ଉଭୟପ୍ରତିମା ପ୍ରାଚୀନ କାଳର ଅଟେ।

### ହରିହର

ହରିହର ଶିବଙ୍କର ଏକ ଯୁଗ୍ମରୂପ। ଏଥିରେ ଶିବଙ୍କ ସହିତ ବିଷ୍ଣୁ ଯୁକ୍ତ ହୋଇଥାଆନ୍ତି। ବୈଦିକ ରଚନାର ଅନ୍ତିମ ଚରଣ ବେଳକୁ ଏହି ପରିକଳ୍ପନା ସୃଷ୍ଟି ହୋଇସାରିଥିବା ସତ୍ତ୍ୱେ ହରିବଂଶ ପୁରାଣରେ ଏହା ଅଧିକ ସ୍ପଷ୍ଟ ହୋଇଛି। ବିଭିନ୍ନ ପୁରାଣରେ ଶିବ ଓ ବିଷ୍ଣୁଙ୍କ ଏକତ୍ରୀକରଣର ଆଖ୍ୟାନମାନ ରହିଥିବାବେଳେ ଏହି ଦୁଇ ମୁଖ୍ୟ ଦେବତା ଏକ ଓ ଅଭିନ୍ନ ବୋଲି କୁହାଯାଇଛି। କେତେକ ପୁରାଣରେ ବିଷ୍ଣୁ ମୋହିନୀ ରୂପ ଧାରଣ କରିବା ଆଖ୍ୟାନମାନ ଦେଖିବାକୁମିଳେ। ଏହି ପରିପ୍ରେକ୍ଷୀରେ ଜଳତତ୍ତ୍ୱର ଦେବତା 'ବିଷ୍ଣୁ' ନାରୀଅଂଶ, ବାମପାର୍ଶ୍ୱରେ ଏବଂ ଶିବ, 'ଅଗ୍ନିତତ୍ତ୍ୱ'ର ଦେବତା ପୁରୁଷଭାଗ ଦକ୍ଷିଣ ପାର୍ଶ୍ୱରେ ରହନ୍ତି। ଅର୍ଥାତ୍, ହରିହରଙ୍କ ରୂପ ପରିକଳ୍ପନାରେ ଦକ୍ଷିଣାଂଶରେ ଶିବଙ୍କ ଅର୍ଦ୍ଧଶରୀର ଓ ବାମପାର୍ଶ୍ୱରେ ବିଷ୍ଣୁଙ୍କ ଅର୍ଦ୍ଧଶରୀର ଏକତ୍ର ଦୃଷ୍ଟିଗୋଚର ହୁଏ। ଏହି ପ୍ରକାର

ମୂର୍ତ୍ତି ସାଧାରଣତଃ ଚର୍ତୁଭୁଜ ହୋଇଥିବାବେଳେ ଦକ୍ଷିଣପାର୍ଶ୍ୱର ଦୁଇହସ୍ତରେ ଶିବ ତା'ଙ୍କ ଆୟୁଧ ତ୍ରିଶୂଳ ସହିତ ଜପମାଳା, କମଣ୍ଡଳୁ ଇତ୍ୟାଦି ଧାରଣ କରିଥିବା ଦେଖାଯାଏ। ବାମପାର୍ଶ୍ୱର ଦୁଇହସ୍ତରେ ବିଷ୍ଣୁ ତା'ଙ୍କ ମୁଖ୍ୟ ଆୟୁଧ ଶଙ୍ଖ,ଚକ୍ର,ଗଦା ଓ ପଦ୍ମ ମଧ୍ୟରୁ ଯେ କୌଣସି ଦୁଇଟି ଆୟୁଧ ଧାରଣ କରିଥାଆନ୍ତି। ଦୁହିଁଙ୍କ ନିଜସ୍ୱ ବେଶପୋଷାକର ଭିନ୍ନତା ବ୍ୟତୀତ ଶିବଙ୍କ ଊର୍ଦ୍ଧ୍ୱଲିଙ୍ଗ ଦେଖିବାକୁମିଳେ। କେତେକ ମୂର୍ତ୍ତିରେ ଶିବଙ୍କ ନିକଟରେ ବୃଷଭ ଓ ବିଷ୍ଣୁଙ୍କ ନିକଟରେ ତା'ଙ୍କ ବାହନ ଗରୁଡ଼ ଉପସ୍ଥିତ ଥାଆନ୍ତି।

ଓଡ଼ିଶାରେ ହରିହରଙ୍କ ପୂଜା ପରମ୍ପରା ଅତିପ୍ରାଚୀନ। ଭୁବନେଶ୍ୱରର ପ୍ରଖ୍ୟାତ ଲିଙ୍ଗରାଜଙ୍କୁ ହରିହରଭାବେ ଗ୍ରହଣ କରାଯାଇଛି। ଅନେକ ମନ୍ଦିର ଗାତ୍ରରେ ହରିହରଙ୍କ ପ୍ରତିମା ଉତ୍‌କୀର୍ଣ୍ଣ ହୋଇଥିବାବେଳେ କେତେକ ମନ୍ଦିର ପରିସରରେ ତା'ଙ୍କର ମଧ୍ୟମ ଉଚ୍ଚତାର ଖୋଲାମୂର୍ତ୍ତି ମଧ ଦେଖିବାକୁମିଳେ। ଚର୍ତୁଭୁଜ ହରିହର ଅଧିକାଂଶ କ୍ଷେତ୍ରରେ ଦଣ୍ଡାୟମାନ ଭଙ୍ଗୀରେ ଦେଖାଯାଉଥିବାବେଳେ ଉପବିଷ୍ଟ ଭଙ୍ଗୀର ଅଳ୍ପକେତେକ ରଚନା ରହିଛି। ଭୁବନେଶ୍ୱର, ଶତ୍ରୁଘ୍ନେଶ୍ୱର ମନ୍ଦିରଗାତ୍ରରେ ସେ ସମଭଙ୍ଗରେ ଦଣ୍ଡାୟମାନ ହୋଇଥିବାବେଳେ ଅନ୍ୟ ସ୍ଥାନମାନଙ୍କରେ ସାବଲୀଳ ତ୍ରିଭଙ୍ଗରେ ଉଭା ହୋଇଥିବା ଦେଖାଯାଏ। ଅଧିକାଂଶ ପ୍ରାଚୀନ ରଚନାରେ ସେ ମୁଖ୍ୟ ଦକ୍ଷିଣହସ୍ତରେ ଏକ ବୀଜପୁରକ ସହ ବରଦମୁଦ୍ରା ପ୍ରଦର୍ଶନ କରିଥାଆନ୍ତି। ପରବର୍ତ୍ତୀ ସମୟର କେତେକ ମୂର୍ତ୍ତିରେ ବୀଜପୁରକ ପରିବର୍ତ୍ତେ ଏକ ପଦ୍ମଚିହ୍ନ ଦେଖାଯାଉଥିବାବେଳେ ଉପର ହସ୍ତରେ ତ୍ରିଶୂଳ କିମ୍ବା ଜପମାଳା ରହିଥାଏ। ବାମ ପାର୍ଶ୍ୱର ମୁଖ୍ୟ ହସ୍ତଟି ସାବଲୀଳ ଭଙ୍ଗୀରେ ଜଂଘ ନିକଟରେ କିମ୍ବା ସେହି ପାର୍ଶ୍ୱରେ ନିମ୍ନମୁଖ ହୋଇ ରହିଥିବା ଗଦା ଉପରେ ଦେଖିବାକୁମିଳେ। ଏହି ସମୟରେ ବାମ ଉପର ହସ୍ତରେ ପଦ୍ମ,ଚକ୍ର କିମ୍ବା ଶଙ୍ଖ ଧାରଣ କରିଥାଆନ୍ତି। ଅଧିକାଂଶ ସ୍ଥଳେ ଶଙ୍ଖଟି ପରବର୍ତ୍ତୀ ସମୟର ମୂର୍ତ୍ତିମାନଙ୍କରେ ଦେଖାଯାଏ ନାହିଁ। ଅଧିକାଂଶ ପ୍ରାଚୀନ ମୂର୍ତ୍ତିର ଦୁଇ ପାର୍ଶ୍ୱରେ ପରିଚାରକ, ପରିଚାରିକାଙ୍କ କ୍ଷୁଦ୍ରପିତୁଳା ସ୍ଥାନିତ ହୋଇଥିବାବେଳେ ପରବର୍ତ୍ତୀ ସମୟର କେତେକ କୃତିରେ କେବଳ ଶିବଙ୍କ ବାହନ ବୃଷଭ ଏବଂ ଅନ୍ୟ କେତେକରେ ବୃଷଭ ଓ ଗରୁଡ଼ ଉଭୟଙ୍କ ମୂର୍ତ୍ତି ଦେଖିବାକୁମିଳେ। ବିକଶିତ ରଚନାମାନଙ୍କରେ କେତେକ ସ୍ଥଳେ ଏହାସହିତ ପରିଚାରକ, ପରିଚାରିକା ଭକ୍ତଜନ ଏବଂ ଊର୍ଦ୍ଧ୍ୱ କୋଣମାନଙ୍କରେ ଗନ୍ଧର୍ବ, ବିଦ୍ୟାଧର ଓ ଅପ୍‌ସରାଙ୍କ ପିତୁଳା ସ୍ଥାନିତ ହୋଇଥାଏ।

କେତୋଟି ପ୍ରାଚୀନ ଶୈଳୀ ହରିହରମୂର୍ତ୍ତି ମଧ୍ୟରେ ଭୁବନେଶ୍ୱରର ଶତ୍ରୁଘ୍ନେଶ୍ୱର ମନ୍ଦିର ଗାତ୍ରର ମୂର୍ତ୍ତିଟି ବହୁଭାବରେ ଭଗ୍ନ। ପରଶୁରାମେଶ୍ୱର ଓ ଶିଶିରେଶ୍ୱର ମନ୍ଦିରର ମୂର୍ତ୍ତିଦ୍ୱୟ ମସ୍ତକ ବିହୀନ। ଗଞ୍ଜାମର ବଡ଼ଗାଁ, ରାୟଗଡ଼ା ନିକଟ ପାଇକପଡ଼ା ଓ ସିଂହନାଥର ମୂର୍ତ୍ତିଗୁଡ଼ିକ ବହୁଭାବରେ ନିଖୁଣ ରହିଛି। ଏହିସବୁ ପ୍ରତିମା ବାହନ ବିହୀନ। ମୁଖଲିଙ୍ଗମ୍‌ର ମଧୁକେଶ୍ୱର ମନ୍ଦିର ପରିସରରେ ଥିବା ତିନିଗୋଟି ପ୍ରତିମା ମଧ୍ୟରୁ ଗୋଟିକରେ ହରଙ୍କ ହସ୍ତରେ ପଦ୍ମଚିହ୍ନ ଓ ନାଗ,ହରିଙ୍କ ଗୋଟିଏ ହସ୍ତ କଟି ନିକଟରେ ଓ ଅନ୍ୟହସ୍ତରେ ଗଦା ଦେଖାଯାଏ। ଅନ୍ୟଏକ ମୂର୍ତ୍ତିରେ ହରିଙ୍କ ହସ୍ତରେ ଶଙ୍ଖ ଓ ଉପର ହସ୍ତରେ ଚକ୍ର ରହିଛି। ଉଭୟ ମୂର୍ତ୍ତିର ଦୁଇପାର୍ଶ୍ୱରେ ପରିଚାରିକାଙ୍କ ପିତୁଳା ସ୍ଥାନିତ ହୋଇଛି। ଏହାର ତୃତୀୟ ପ୍ରତିମାଟି ସୋମେଶ୍ୱର ମନ୍ଦିର ଗାତ୍ରର। ଏଥିରେ ହରଙ୍କ ଉପରହସ୍ତରେ ତ୍ରିଶୂଳ ଓ ପଦ୍ମସହିତ ତଳହସ୍ତ ବରଦମୁଦ୍ରା ପ୍ରଦର୍ଶନ କରୁଥିବା ଦେଖାଯାଏ। ଅର୍ଦ୍ଧଭାଗରେ ଥିବା ହରି ଉପର ହସ୍ତରେ ଶଙ୍ଖ ଓ ତଳ ହସ୍ତରେ ଗଦା ଧାରଣ କରିଛନ୍ତି। ଏହା ବ୍ୟତୀତ ହରଙ୍କ ପାର୍ଶ୍ୱରେ

ତା'ଙ୍କ ବାହନ ବୃଷଭ ଓ ହରିଙ୍କ ପାର୍ଶ୍ୱରେ ଗରୁଡ଼ଙ୍କ ଯୋଡ଼ହସ୍ତ ମୂର୍ତ୍ତି ସ୍ଥାନିତ ହୋଇଛି। ଅଧିକନ୍ତୁ ହରିଙ୍କ ମୂର୍ତ୍ତିର ଉପର କୋଣରେ ଏକ ପଦ୍ମ ଦେଖିବାକୁମିଳେ। ଏହା ସୂର୍ଯ୍ୟ ତଥା ବ୍ରହ୍ମର ସଙ୍କେତ ଅଟେ। ଏଠାରେ ସୂଚନାଯୋଗ୍ୟ ଯେ, ବିଭିନ୍ନ ସମୟର ଶିଳ୍ପୀଙ୍କ ଦ୍ୱାରା ନିର୍ମିତ କୃତିଗୁଡ଼ିକର ଉପସ୍ଥାପନାରେ ଭିନ୍ନତା ପରିଲକ୍ଷିତ ହୁଏ।



ହରିହର,
ସୋମେଶ୍ୱରମନ୍ଦିର,
ମୁଖଲିଙ୍ଗମ୍



ହରିହର,
ଲିଙ୍ଗରାଜ ମନ୍ଦିର
ପରିସର

ଭୁବନେଶ୍ୱର, ଲିଙ୍ଗରାଜମନ୍ଦିର ପରିସରରେ ଖ୍ରୀ: ୧୧ଶ ଶତାବ୍ଦୀର ଏକ ସୁନ୍ଦର ହରିହର ମୂର୍ତ୍ତି ରହିଛି। ଦୁର୍ଭାଗ୍ୟ ବଶତଃ ଏହାର ତିନୋଟି ହସ୍ତ ଭଗ୍ନ। କେବଳ ଦକ୍ଷିଣପାର୍ଶ୍ୱର ଉପର ହସ୍ତରେ ଜପମାଳାଟି ଦେଖିବାକୁମିଳେ। ନିମ୍ନର ତିନୋଟି ବିଶ୍ୱପଦ୍ମ ମଧ୍ୟରୁ ମଧ୍ୟଭାଗର ମୁଖ୍ୟ ପଦ୍ମଟିରେ ହରିହର ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଥିବାବେଳେ ଦକ୍ଷିଣପାର୍ଶ୍ୱରେ ଜଣେ ଶିବଗଣ ନୃତ୍ୟଭଙ୍ଗୀରେ ଓ ବାମପାର୍ଶ୍ୱରେ ଦ୍ୱିଭୁଜା ଲକ୍ଷ୍ମୀ, ବାମହସ୍ତରେ ଏକ ପଦ୍ମ ଧାରଣ କରି ଦୁଇପାର୍ଶ୍ୱରେ ଥିବା ଦୁଇଟି ଛୋଟ ପଦ୍ମ ଉପରେ ଦଣ୍ଡାୟମାନ ହୋଇଛନ୍ତି। ଦୁଇ ଦେବତାଙ୍କ ଦେହରେ ନିଜସ୍ୱ ବେଶଭୂଷଣ ରହିଥିବାବେଳେ ମୂର୍ତ୍ତିର ପ୍ରଚ୍ଛଦରେ ଏକ ଚକ୍ରାକାର ପ୍ରଭାମଣ୍ଡଳ ଓ ଊର୍ଦ୍ଧ୍ୱର ଦୁଇକୋଣରେ ପୁଷ୍ପମାଳା ଧାରଣ କରିଥିବା, ଉଡ୍ଡୀୟମାନ ଅପ୍ସରା ଓ ଗନ୍ଧର୍ବଙ୍କ ପିତୁଳା ଉତ୍‌କୀର୍ଣ୍ଣ ହୋଇଛି। ଆସନର ନିମ୍ନ ଦକ୍ଷିଣପାର୍ଶ୍ୱରେ ଶିବଙ୍କ ବାହନ ବୃଷଭ ଓ ଜଣେ ପରିଚାରିକା ଏବଂ ବାମପାର୍ଶ୍ୱରେ ଗରୁଡ଼ ଉପସ୍ଥିତ ଅଛନ୍ତି। ପରିଚାରିକା ଓ ଗରୁଡ଼ ଉଭୟେ ନତଜାନୁ ହୋଇ ନମସ୍କାର ମୁଦ୍ରାରେ ରହିଥିବା ଦେଖାଯାଏ। କଳା ମୁଗୁନିପଥରରେ ନିର୍ମିତ ମସୃଣ ମୂର୍ତ୍ତିଟିର ଉଚ୍ଚତା ପ୍ରାୟ ୧.୦୦ ମିଟର ଓ ଚଉଡ଼ା ପ୍ରାୟ ୦.୫୦ ମିଟର ଅଟେ। ଦକ୍ଷିଣଓଡ଼ିଶାର ବାଲିମେଳାଠାରୁ ସଂଗୃହୀତ ଏକ ହରିହର ମୂର୍ତ୍ତି ରାଜ୍ୟ ସଂଗ୍ରହାଳୟରେ ରହିଛି। ଏହା ବ୍ୟତୀତ ହରିହରଙ୍କ ପ୍ରତିମା ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଦେଖିବାକୁମିଳେ, ଯାହାକି ପ୍ରାଚୀନକାଳରୁ ଏହି ରାଜ୍ୟରେ ହରିହରଙ୍କ ପୂଜା ଲୋକପ୍ରିୟ ଥିବା ସୂଚିତ କରେ।



# ରୁଦ୍ରଶିବ: ଭୈରବ

## ଶିବ: ଭୈରବ

ଭୟଙ୍କର ରବ କରୁଥିବା ଶିବଙ୍କ ଉଗ୍ର ବା ଭୟଙ୍କର ରୂପ 'ଭୈରବ' ଭାବେ ପରିଚିତ। ପୁରାଣ ଓ ତନ୍ତ୍ରଶାସ୍ତ୍ରମାନଙ୍କରେ ବହୁବିଧ ଭୈରବଙ୍କ ବର୍ଣ୍ଣନା ଦେଖିବାକୁମିଳେ। ତେବେ, ବୈଦିକ ରୁଦ୍ର; ଭୈରବଙ୍କ ମୂଳରୂପ ଅଟେ। ସ୍ଥଳ ବିଶେଷରେ ପଞ୍ଚ କିମ୍ବା ଅଷ୍ଟଭୈରବଙ୍କ ନାମ ରହିଥିବାବେଳେ ଦକ୍ଷିଣଭାରତୀୟ ଆଗମ ଶାସ୍ତ୍ରରେ ମୁଖ୍ୟ ଅଷ୍ଟଭୈରବ, ପୁନଶ୍ଚ ପ୍ରତ୍ୟେକଙ୍କର ଅଷ୍ଟରୂପର ବର୍ଣ୍ଣନା ଉଲ୍ଲେଖ ଥିବାରୁ ଏମାନଙ୍କ ସଂଖ୍ୟା ଚଉଷଠି ହୁଏ। କେତେକ ପୁରାଣ ବର୍ଣ୍ଣିତ ଅଷ୍ଟଭୈରବ ହେଉଛନ୍ତି: ଅସିତାଙ୍ଗ, ରୁଷ, ଚଣ୍ଡ, କ୍ରୁଦ୍ଧ, ଉନ୍ମତ୍ତ, କୁପିତ, ଭିଷଣ ଓ ସଂହାର। ଅନ୍ୟକେତେକ ସ୍ଥଳେ ଅଷ୍ଟଭୈରବଙ୍କ ନାମ: ମହାଭୈରବ, ସଂହାର, ଅସିତାଙ୍ଗ, ରୁରୁ, କାଳ, କ୍ରୋଧ, ତାମ୍ରଚୂଡ଼ ଓ ଚନ୍ଦ୍ରଚୂଡ଼। ମୂର୍ତ୍ତିକଳାରେ ଭୈରବ ଉଭୟ ସାଧାରଣ ଓ କଙ୍କାଳସାର ଶରୀରରେ ଦେଖାଯାଆନ୍ତି। ମସ୍ତକରେ ରୁକ୍ଷକେଶ କିମ୍ବା ଅଗ୍ନିଶିଖା, ରୁକ୍ଷମୁଖରେ ଦନ୍ତ ଓ ଦାଢ଼ି, ଅଧିକାଂଶ ସ୍ଥଳେ ଊର୍ଦ୍ଧ୍ୱଲିଙ୍ଗ ହୋଇଥିବାବେଳେ କେତେକସ୍ଥଳେ ନମନୀୟ ଲିଙ୍ଗ ମଧ୍ୟ ଦେଖାଯାଏ। ଭୈରବ ସର୍ବଦା ଭୂତବାହନ କିମ୍ବା ଭୂତଆସୀନ। ଏହି ଭୂତକୁ ଅପସ୍ମାରପୁରୁଷ ମଧ୍ୟ କୁହାଯାଏ। ସମୟେ ସମୟେ ଭୂତ ଉପର ଏକ ପଦ୍ମରେ ସେ ଆସନ ଗ୍ରହଣ କରିଥାଆନ୍ତି। ଦ୍ୱିଭୁଜ କିମ୍ବା ତତୋଧିକଭୁଜ ବିଶିଷ୍ଟ ଭୈରବମୂର୍ତ୍ତି ରହିଥିବାବେଳେ ତାଙ୍କ ମୁଖ୍ୟ ଆୟୁଧ ହେଉଛି; ତ୍ରିଶୂଳ, ଖଟ୍ୱାଙ୍ଗ, ଖପୁରିପାତ୍ର, ଖଡ଼୍ଗ, ଡ଼ମ୍ବରୁ ଓ ମନୁଷ୍ୟର ଛେଦିତ ମସ୍ତକ ଓ ଅଙ୍ଗ। ତାଙ୍କ ଶ୍ମଶାନ ପରିବେଶର ସୂଚନା ଦେବାନିମନ୍ତେ ମୂର୍ତ୍ତି ସହିତ ଶ୍ୱାନ,ଶୃଗାଳ ଓ ପେଚକ ମଧ୍ୟ ଦେଖିବାକୁମିଳେ।

ଓଡ଼ିଶାରେ ଭୈରବମୂର୍ତ୍ତି ମନ୍ଦିରଗାତ୍ର ବ୍ୟତୀତ ଖୋଲାଭାବେ ମଧ୍ୟ ରହିଛି। ତେବେ, ଅଧିକାଂଶ ସ୍ଥଳେ ଏଗୁଡ଼ିକର ଉପସ୍ଥାପନା ବା ମୂର୍ତ୍ତିତତ୍ତ୍ୱ ଏକ ଅନ୍ୟଠାରୁ ଭିନ୍ନ। ଏଣୁ ଏଗୁଡ଼ିକର ସଠିକ୍ ଶାସ୍ତ୍ରୀୟ ନାମ ନିର୍ଦ୍ଧାରଣ କରିବା ଦୂରୁହ ବ୍ୟପାର। ତେବେ, ସାଧାରଣ ଭାବେ ଓଡ଼ିଶାରେ ଦେଖାଯାଉଥିବା କେତେକ ଭୈରବ ମୂର୍ତ୍ତିର ବର୍ଣ୍ଣନା ନିମ୍ନରେ ପ୍ରଦତ୍ତ ହେଲା।

## ଶିବ: ଅଜୈକପାଦ ଭୈରବ

ଅନେକ ପୁରାଣ ଓ ତନ୍ତ୍ର ଶାସ୍ତ୍ରରେ ଉଲ୍ଲେଖଥିବା ଭୈରବ ଗୋଷ୍ଠୀର ନାମ ମଧ୍ୟରେ 'ଅଜୈକପାଦ' ବା ଏକପାଦ ଭୈରବଙ୍କ ନାମ ଅନ୍ୟତମ। ତେବେ, ଶୈବତନ୍ତ୍ରରେ ତାଙ୍କ ସ୍ୱତନ୍ତ୍ରମୂର୍ତ୍ତି ଓ ପୂଜାର ବର୍ଣ୍ଣନା ରହିଛି। 'ଶିଳ୍ପରତ୍ନ' ଗ୍ରନ୍ଥରେ ଏହି ପ୍ରକାର ଭୈରବଙ୍କ ଷୋଡ଼ଶଭୁଜ ବିଷୟରେ ଉଲ୍ଲେଖ ଥିଲେହେଁ ମୂର୍ତ୍ତିକଳାରେ ଏହିପ୍ରକାର ରଚନା ବିରଳ। ଓଡ଼ିଶାର ଶିବ ଓ ଶକ୍ତିମନ୍ଦିର ଗାତ୍ରରେ ଏବଂ କେତେକ ମନ୍ଦିର ପରିସରରେ ଅଜୈକପାଦ ଭୈରବଙ୍କ ଖୋଲା ମୂର୍ତ୍ତି ଦେଖିବାକୁମିଳେ। କେତେକ ସ୍ଥାନରେ ଭୈରବଙ୍କ ସ୍ୱତନ୍ତ୍ର ମନ୍ଦିର ମଧ୍ୟ ରହିଛି। ଓଡ଼ିଶାର ମୂର୍ତ୍ତିକଳାରେ ଅଳ୍ପ କେତୋଟି ଦ୍ୱିଭୁଜ ମୂର୍ତ୍ତି ବ୍ୟତୀତ ଅଧିକାଂଶ କ୍ଷେତ୍ରରେ ସେ ଚର୍ତୁଭୁଜ ଅଟନ୍ତି। ତାଙ୍କ ଦନ୍ତ ଓ ସ୍ୱଳ୍ପ ଦାଢ଼ି ଥିବା ଉଗ୍ର ମୁଖମଣ୍ଡଳ, ଊର୍ଦ୍ଧ୍ୱଲିଙ୍ଗ ଓ ବଳିଷ୍ଠ ଶରୀରରେ କଟିଠାରୁ ନିମ୍ନକୁ ଥିବା ଏକପାଦରେ ସେ ସ୍ତମ୍ଭ ସଦୃଶ, ସମଭଙ୍ଗରେ ଦଣ୍ଡାୟମାନ ହୋଇଥିବା ଦେଖାଯାଏ। ତନ୍ତ୍ରମତରେ ଶିବଙ୍କର ଏହି ରୂପ କଠୋର ନିଷ୍ଠା ଓ ସାଧନାର ପ୍ରତୀକ। ଭୈରବ ଏଠାରେ ଏକପାଦ ବିଶିଷ୍ଟ ହୋଇଥିବାରୁ 'ଅଜୈକପାଦ' ଭାବେ ପରିଚିତ ହୁଅନ୍ତି।

ଓଡ଼ିଶାର ଅନେକ ପ୍ରାଚୀନ ମନ୍ଦିରର ଉତ୍ତର ପାର୍ଶ୍ୱ ବାଡ଼, ଆବରଣଦେବତାଙ୍କ ମଧ୍ୟରେ ଅଜୈକପାଦ ବା ଏକପାଦ ଭୈରବଙ୍କ ମୂର୍ତ୍ତି ଦେଖିବାକୁମିଳେ। ମସ୍ତକରେ ଜଟାଭାର କିମ୍ବା ଜଟାମୁକୁଟ, ଶରୀରରେ ସ୍ୱଳ୍ପ ଅଳଙ୍କାର ଓ ବ୍ୟାଘ୍ରଚର୍ମ ପରିଧେୟ ଏହାଙ୍କ ଭୂଷଣ ଅଟେ। ସାଧାରଣତଃ ଏହି ପ୍ରକାର ଦ୍ୱିଭୁଜମୂର୍ତ୍ତିର ଦକ୍ଷିଣହସ୍ତରେ ଜପମାଳା ସହିତ ବରଦମୁଦ୍ରା ପ୍ରଦର୍ଶନ କରୁଥିବାବେଳେ ବାମହସ୍ତରେ କମଣ୍ଡଳୁ କିମ୍ବା ବୀଜପୂରକ ରହିଥାଏ। ଅନେକ ସ୍ଥାନରେ ବରଦମୁଦ୍ରା ହସ୍ତରେ ଜପମାଳା ପରିବର୍ତ୍ତେ ଏକ ପଦ୍ମଚିହ୍ନ ଥାଏ। ଅନେକ ଚର୍ତୁଭୁଜ ପ୍ରତିମାରେ ଉପରୋକ୍ତ ଆୟୁଧ ସମେତ ଉପର ଦକ୍ଷିଣହସ୍ତରେ ଜପମାଳା ଓ ବାମହସ୍ତରେ ତ୍ରିଶୂଳ ଧାରଣ କରିଥାଆନ୍ତି। ମଧ୍ୟଯୁଗ ପ୍ରାରମ୍ଭର କେତେକ ମୂର୍ତ୍ତିରେ ଉପର ହସ୍ତଦ୍ୱୟରେ ଯଥାକ୍ରମେ; ତ୍ରିଶୂଳ ଓ ମୃଗ କିମ୍ବା ନାଗ ଦେଖାଯାଏ। ଅଧିକାଂଶ ସ୍ଥଳେ ମୂର୍ତ୍ତିର ଦୁଇପାର୍ଶ୍ୱରେ ଯୋଡ଼ହସ୍ତରେ ଜଣେ ଭକ୍ତ, ଗଣ କିମ୍ବା ପରିଚାରିକାଙ୍କ ପିତୁଳା ରହିଥାଏ। ଅଳ୍ପ କେତେକ ସ୍ଥଳେ ମୂର୍ତ୍ତିର ହସ୍ତରେ ଏହି ଆୟୁଧଗୁଡ଼ିକର ସ୍ଥାନ ପରିବର୍ତ୍ତନ ହୋଇଥିବା ଦେଖାଯାଏ।



ଅଜୈକପାଦ,
ମୁଖଲିଙ୍ଗମ୍



ଅଜୈକପାଦ,
ସଠକପୁର

ଏହିପ୍ରକାର ଅଜୈକପାଦ ଭୈରବଙ୍କ ଦ୍ୱିଭୁଜମୂର୍ତ୍ତି ଯାଜପୁର, ସିଂହନାଥ ଓ ବାଲେଶ୍ୱର ଜିଲ୍ଲାର ସେରଗଡ଼ଠାରେ ରହିଛି। ତେବେ, ସେରଗଡ଼, ମୂର୍ତ୍ତିର ବାମହସ୍ତରେ କମଣ୍ଡଳୁ ପରିବର୍ତ୍ତେ ତ୍ରିଶୂଳ ଦେଖିବାକୁମିଳେ। ମୁଖଲିଙ୍ଗମ୍, ମଧୁକେଶ୍ୱର ମନ୍ଦିରର ଚର୍ତୁଭୁଜ ମୂର୍ତ୍ତିର ଦକ୍ଷିଣହସ୍ତ ଦ୍ୱୟରେ ମାଳା ଓ ତ୍ରିଶୂଳ ଏବଂ ବାମହସ୍ତ ଦ୍ୱୟରେ ବୀଜପୂରକ ଓ ମୃଗ ଦେଖାଯାଉଥିବାବେଳେ ସେହି ସ୍ଥାନର ସୋମେଶ୍ୱର ମନ୍ଦିର ମୂର୍ତ୍ତିର ଦକ୍ଷିଣପାର୍ଶ୍ୱ ହସ୍ତଦ୍ୱୟରେ ଜପମାଳା ଓ ତ୍ରିଶୂଳ ଏବଂ ବାମପାର୍ଶ୍ୱ ହସ୍ତଦ୍ୱୟରେ କମଣ୍ଡଳୁ ଓ ନାଗ ଦେଖାଯାଏ। ପ୍ରଥମ ଚର୍ତୁଭୁଜ ମୂର୍ତ୍ତିର ଦୁଇପାର୍ଶ୍ୱରେ ଦୁଇଜଣ ଭକ୍ତ ଆଣ୍ଠୁମାଡ଼ି ଯୋଡ଼ହସ୍ତରେ ରହିଥିବାବେଳେ ଦ୍ୱିତୀୟ ମୂର୍ତ୍ତିର ଦକ୍ଷିଣପାର୍ଶ୍ୱରେ ଯୋଡ଼ହସ୍ତରେ ଦଣ୍ଡାୟମାନ ଜଣେ ପରିଚାରିକାଙ୍କ ପିତୁଳା ସ୍ଥାନିତ ହୋଇଛି। ପାଇକପଡ଼ାର ଅନୁରୂପ ଏକ ମୂର୍ତ୍ତିର ବାମ ଉପର ହସ୍ତରେ ପଦ୍ମ ଦେଖାଯାଏ। ଏହି ମୂର୍ତ୍ତି ଓ ଗଞ୍ଜାମ ବଡ଼ଗାଁରେ ଥିବା ଏହି ପ୍ରକାର ଭୈରବମୂର୍ତ୍ତି ପ୍ରଚ୍ଛଦରେ ବୃଷଭ ବିଦ୍ୟମାନ୍। ଅନ୍ୟ ଚର୍ତୁଭୁଜ, ଏକପାଦ ଭୈରବମୂର୍ତ୍ତି ଭୁବନେଶ୍ୱରର ତାଳେଶ୍ୱର, ମାର୍କଣ୍ଡେଶ୍ୱର ଓ ଶିଶିରେଶ୍ୱର ମନ୍ଦିର ଗାତ୍ରରେ ରହିଛି। ସାମାନ୍ୟ ଭିନ୍ନ ଶୈଳୀର ଅନ୍ୟ ଏକ ଭଗ୍ନ ପ୍ରତିମା ଭୁବନେଶ୍ୱର, ପାପନାଶିନୀ ମନ୍ଦିର ପରିସରରେ ଦେଖାଯାଏ। ଭୁବନେଶ୍ୱର ନିକଟ ହୀରାପୁରର ଚଉଷଠି ଯୋଗିନୀ ପୀଠରେ ଏହି ପ୍ରକାର ଏକ ମୂର୍ତ୍ତି ରହିଛି।

ଖ୍ରୀଷ୍ଟୀୟ ୯ମ-୧୦ମ ଶତାବ୍ଦୀ ଓ ତା'ର ପରବର୍ତ୍ତୀ ସମୟରେ ବୌଦ୍ଧତନ୍ତ୍ର ସହିତ ହିନ୍ଦୁତନ୍ତ୍ର ପୂଜାର ପ୍ରସାର ଘଟିଥିଲା। ଏହି ସମୟରେ ଅଜୈକପାଦ-ଭୈରବଙ୍କ କେତେକ ସ୍ୱତନ୍ତ୍ର ମୂର୍ତ୍ତି ପୂଜା ନିମନ୍ତେ ନିର୍ମିତ ହୋଇଥିବା ଜଣାଯାଏ। ଏହି କୃତିଗୁଡ଼ିକ ମନ୍ଦିରର ଆବରଣଦେବତା ମୂର୍ତ୍ତିଠାରୁ ଆକାରରେ ବଡ଼। ତେବେ, ଅଧିକାଂଶ ସ୍ଥଳେ ମୂର୍ତ୍ତିଗୁଡ଼ିକର ହସ୍ତ ଭଗ୍ନହୋଇଥିବାରୁ ଆୟୁଧଗୁଡ଼ିକ ସମ୍ପର୍କରେ ସମ୍ପୂର୍ଣ୍ଣ ଧାରଣା କରିହୁଏନାହିଁ। ବିକଶିତ କାଳାଶୈଳୀର ଦୁଇଟି ମୂର୍ତ୍ତି ମଧ୍ୟରୁ ଗୋଟିଏ ଜଗତ୍‌ସିଂହପୁର ନିକଟ ଷଠଳପୁରର ଭୈରବ ମନ୍ଦିରରରେ ଓ ଅନ୍ୟଟି କଂସାରୀ ଗଡ଼ଠାରୁ ସଂଗୃହୀତହୋଇ ବାରିପଦା ସଂଗ୍ରହାଳୟରେ ରଖାଯାଇଛି। ବାରିପଦା ସଂଗ୍ରହାଳୟ ମୂର୍ତ୍ତିଟିର ଦକ୍ଷିଣପାର୍ଶ୍ୱ ମୁଖ୍ୟହସ୍ତରେ, ବକ୍ଷ ନିକଟରେ କପାଳର ରକ୍ତପାତ୍ର ଓ ଉପର ହସ୍ତରେ ଡ଼ମରୁ ରହିଥିବାବେଳେ ତା'ଙ୍କ ବାମ ଉପର ହସ୍ତର ଜପମାଳାଟି ସ୍ପଷ୍ଟହୁଏ। କିନ୍ତୁ, ତଳହସ୍ତଟି ଭଗ୍ନଯୋଗୁଁ ଆୟୁଧଟି ଅସ୍ପଷ୍ଟ। ବାରିପଦା ଓ ଷଠଳପୁରର ଉଭୟ ମୂର୍ତ୍ତି ବିଶ୍ୱପଦ୍ମ ଉପରେ ଦଣ୍ଡାୟମାନ ତଥା ବିଭିନ୍ନ ବସ୍ତ୍ରାଳଙ୍କାର ବିଭୂଷିତ। ଉଭୟ ମୂର୍ତ୍ତିର ପ୍ରଚ୍ଛଦରେ କାରୁକଳାଯୁକ୍ତ ତୋରଣ, ଊର୍ଦ୍ଧ୍ୱ କୋଣମାନଙ୍କରେ ଉଡ୍ଡୀୟମାନ ଭଙ୍ଗୀରେ ଗନ୍ଧର୍ବ ଓ ଅପ୍‌ସରାଙ୍କ ପିତୁଳା ଏବଂ ନିମ୍ନରେ ପରିଚାରକ, ପରିଚାରିକାମାନେ ପଦ୍ମଉପରେ ଉଭା ହୋଇଥିବା ଦେଖାଯାଏ। ସବୁ ସମୟରେ ଓଡ଼ିଶାରେ ଅଜୈକପାଦ ଭୈରବଙ୍କ ପୂଜା ଶୈବ ତାନ୍ତ୍ରିକମାନଙ୍କ ଦ୍ୱାରା ପ୍ରଚଳିତଥିବା ସୂଚନାମିଳେ। ଏହି ପରିପ୍ରେକ୍ଷୀରେ ପାଦବିହୀନ, ସ୍ତମ୍ଭ ସଦୃଶ ଜଗନ୍ନାଥଙ୍କୁ ମଧ ଭୈରବଭାବେ ଗ୍ରହଣ କରାଯାଏ।

## ବଟୁକଭୈରବ

କେତେକ ଶିବ ମନ୍ଦିର ପରିସରରେ ଖୋଲା ଭାବେ ଦେଖାଯାଉଥିବା ଏକ ପ୍ରକାର ଭୈରବ ମୂର୍ତ୍ତି ହେଉଛି 'ବଟୁକ ଭୈରବ' (?)। ଅଧିକାଂଶ ସ୍ଥଳେ ଭୈରବ ଓ ଶିବଙ୍କ ଊର୍ଦ୍ଧ୍ୱଲିଙ୍ଗ ଦେଖାଯାଉଥିବା ବେଳେ ଏଠାରେ ଲିଙ୍ଗ ନମନୀୟ। ଏହି ପ୍ରକାର ମୂର୍ତ୍ତି ଅପସ୍ମାରପୁରୁଷ ଉପରେ ବୀରଭଙ୍ଗୀରେ ଦଣ୍ଡାୟମାନ ହୋଇଥିବା ଦେଖାଯାଏ। ମୂର୍ତ୍ତିର ମସ୍ତକରେ ଚକ୍ରାକାର କୁଞ୍ଚିତକେଶ ସହିତ କପାଳରେ ଅଳକାମୁକୁଟ, ମୁଖରେ ତୀକ୍ଷ୍ଣଦନ୍ତ, କର୍ଣ୍ଣରେ ପତ୍ରକୁଣ୍ଡଳ, ଗଳାରେ ରତ୍ନହାର ସହିତ ଆଜାନୁଲମ୍ବିତ କପାଳମାଳା, ସ୍କନ୍ଧରେ ନାଗ-ଯଜ୍ଞୋପବୀତ, କଟିରେ କଟିବନ୍ଧ, ହସ୍ତ, ବାହୁ ଓ ପଦରେ ସର୍ପବଳୟ କିମ୍ବା ନୂପୁର ପରିଧାନ କରିଥିବା ଦେଖାଯାଏ। ସାଧାରଣତଃ ଏହି ପ୍ରକାର ମୂର୍ତ୍ତି ଚର୍ତୁଭୁଜ ହୋଇଥିବାବେଳେ ଦକ୍ଷିଣହସ୍ତରେ ତ୍ରିଶୂଳ ଓ ବାମହସ୍ତ ଦ୍ୱୟରେ କପାଳପାତ୍ର ଓ ଛିନ୍ନମସ୍ତକ ଥାଏ। ଅଧିକାଂଶ ସ୍ଥଳେ ମୂର୍ତ୍ତିର ହସ୍ତ ଭଗ୍ନହୋଇଥିବାରୁ ଅନ୍ୟ ଆୟୁଧ ସ୍ପଷ୍ଟ ହୁଏନାହିଁ। ପ୍ରାଚୀନ ମୂର୍ତ୍ତିଗୁଡ଼ିକରେ ପ୍ରଚ୍ଛଦ ସରଳ ହୋଇଥିବାବେଳେ ପରବର୍ତ୍ତୀ ସମୟର କୃତିଗୁଡ଼ିକ ପ୍ରଚ୍ଛଦରେ ମକରତୋରଣ ଓ ନିମ୍ନଭାଗରେ ଡ଼ାକିନୀ, ଯୋଗିନୀ ତଥା ତାନ୍ତ୍ରିକମାନଙ୍କ ପିତୁଳା ସ୍ଥାନିତ ହୋଇଥାଏ। ଏହି ମୂର୍ତ୍ତିକୁ କେତେକ ବିଦ୍ୱାନ 'ବଟୁକଭୈରବ' ବୋଲି ଚିହ୍ନିତ କରିଥାଆନ୍ତି।



ବଟୁକଭୈରବ, କପିଳାସ, ଢ଼େଙ୍କାନାଳ

ଜୟଦେବଙ୍କ ଜନ୍ମପୀଠ କେନ୍ଦୁଲିର ଚଣ୍ଡୀ ଓ ଶିବମନ୍ଦିର ପରିସରରେ କଦାପଥରରେ ନିର୍ମିତ ଖ୍ରୀ:୮ମ-୯ମ ଶତାବ୍ଦୀର ଏକ ବଟୁକଭୈରବମୂର୍ତ୍ତି ରହିଛି। ଭୁବନେଶ୍ୱରର କେଦାରଗୌରୀ ମନ୍ଦିର ପରିସରରେ ଥିବା ଏହି ପ୍ରକାର ଏକ ମୂର୍ତ୍ତିକୁ ଖ୍ରୀ: ୧୦ମ ଶତାବ୍ଦୀ ତଥା ଢେଙ୍କାନାଳର କପିଳାସ ପର୍ବତ ଉପର ଶିବମନ୍ଦିର ପରିସରରେ ଥିବା ଉଚ୍ଚକୋଟୀର କଳା ଶୈଳୀର ଏକ ରଚନାକୁ ଖ୍ରୀ: ୧୨ଶ ଶତାବ୍ଦୀର ବୋଲି ଅନୁମାନ କରାଯାଏ।

## ଭୈରବ: ବାମଦେବ ମୂର୍ତ୍ତି

ଚାମୁଣ୍ଡାଙ୍କ ଭଳି ଶିବଙ୍କର ଅସ୍ଥି-କଙ୍କାଳସାର, ଭୟଙ୍କର ରୂପ 'ବାମଦେବ ଭୈରବ' ଭାବେ ଖ୍ୟାତ। ଏହି ପ୍ରକାର ମୂର୍ତ୍ତି ଅର୍ଦ୍ଧପର୍ଯ୍ୟଙ୍କ ଆସନ, ଗମନ, ଧାବମାନ କିମ୍ବା ନୃତ୍ୟଭଙ୍ଗୀରେ ଦେଖିବାକୁ ମିଳେ। ଚର୍ତୁଭୁଜ କିମ୍ବା ଷଡ଼ଭୁଜ ମୂର୍ତ୍ତିଗୁଡ଼ିକ ହସ୍ତରେ ସାଧାରଣତଃ ତ୍ରିଶୂଳ, ଖଟ୍ୱାଙ୍ଗ, ଜପମାଳା, କପାଳପାତ୍ର ତଥା ଛିନ୍ନମସ୍ତକ ରହିଥାଏ। ଅନ୍ୟ ଭୈରବ ପ୍ରତିମା ଭଳି ମୂର୍ତ୍ତି ଶବାସନ। ଯାଜପୁରଠାରେ ଅର୍ଦ୍ଧପର୍ଯ୍ୟଙ୍କ ଭଙ୍ଗୀର, ରାୟଗଡ଼ା ନିକଟ ପାଇକପଡ଼ାରେ ଗମନ ଭଙ୍ଗୀର, ହୀରାପୁର ଓ ଷଠଳପୁର ଠାରେ ଧାବମାନ ଭଙ୍ଗୀର ଓ ଯାଜପୁର ବରାହମନ୍ଦିର ପରିସର, ଖେଲାର ଶିବମନ୍ଦିର, ଗାରଡ଼ିପାଞ୍ଚଣ, ଭୁବନେଶ୍ୱରର ବ୍ରହ୍ମେଶ୍ୱରମନ୍ଦିର, ପ୍ରାଚୀନଦୀ ଅବବାହିକାର ନିଆଳି, ସୋମେଶ୍ୱର ଓ ବାଲୁଙ୍କେଶ୍ୱର ମନ୍ଦିରରେ ବାମଦେବ ଭୈରବଙ୍କ ନୃତ୍ୟମୂର୍ତ୍ତି ଦେଖିବାକୁ ମିଳେ।



ବାମଦେବ ଭୈରବ, ଯାଜପୁର



ନୃତ୍ୟମୂର୍ତ୍ତି - ବାମଦେବ, ଗାରଡ଼ିପାଞ୍ଚଣ

## ଭୈରବ: କେତେକ ଆସନ ଓ ସ୍ଥାନକ ମୂର୍ତ୍ତି

ଓଡ଼ିଶାର ମଧ୍ୟଯୁଗୀୟ ମୂର୍ତ୍ତିକଳାରେ ଆସନ ଓ ଦଣ୍ଡାୟମାନ ଭଙ୍ଗୀର କେତେକ ଭୈରବମୂର୍ତ୍ତି ଦେଖିବାକୁ ମିଳେ। ଅଧିକାଂଶ ସ୍ଥଳେ ଏମାନେ ଶବ କିମ୍ବା ଅପସ୍ମାର ପୁରୁଷ ଉପରେ ଉଭା ହୋଇଥିବାବେଳେ କେତେକ ସ୍ଥଳେ ବିଶ୍ୱପଦ୍ମ ଆସନ ମଧ୍ୟ ଦେଖାଯାଏ। ଏହି ମୂର୍ତ୍ତିଗୁଡ଼ିକ ଚର୍ତୁଭୁଜଠାରୁ ଦଶଭୁଜ ପର୍ଯ୍ୟନ୍ତ।

ଅଧିକାଂଶ କୃତିରେ ମୁଖ ଓ ହସ୍ତଗୁଡ଼ିକ ଭଗ୍ନ ଓ ବିକୃତ। ଏଣୁ ଏହାର ଆୟୁଧ ଓ ଭାବ ସ୍ପଷ୍ଟ ହୁଏନାହିଁ। ଏହି ପ୍ରକାର ମୂର୍ତ୍ତି ଭୁବନେଶ୍ୱର ନିକଟ ହୀରାପୁରର ଚଉଷଠୀ ଯୋଗିନୀ ମନ୍ଦିର ପରିସର, ଯାଜପୁର ଜିଲ୍ଲାର ଧର୍ମଶାଳା, ମୟୂରଭଞ୍ଜ ଜିଲ୍ଲାର ଖିଚିଂ ଓ ଜଗତସିଂହପୁର ନିକଟ କୁଣ୍ଡେଶ୍ୱର ସମେତ ଅନ୍ୟ କେତେକଠାରେ ଦେଖିବାକୁମିଳେ।

## ତ୍ରିକାଳଭୈରବ

ତିନିମୁଖ ଥିବା ଶିବ 'ତ୍ରିକାଳ ଭୈରବ' ଭାବେ ପରିଚିତ ହୁଅନ୍ତି। ତାଙ୍କରି ଏହି ତିନିମୁଖ ସଂସାରର ସୃଷ୍ଟି, ସ୍ଥିତି ଓ ପ୍ରଳୟକୁ ସଂକେତ କରେ। ତେବେ, ଓଡ଼ିଶାରେ ଏହି ପ୍ରକାରର ରଚନାର ସଂଖ୍ୟା ଯଥେଷ୍ଟ କମ୍। ବାଲୁକେଶ୍ୱର ମନ୍ଦିରର ଏକ କୃତିରେ ତ୍ରିମୁଖ, ଉର୍ଦ୍ଧ୍ୱଲିଙ୍ଗ ଭୈରବ ବିଶ୍ୱପଦ୍ମ ଉପରେ ଯୋଗାସନରେ ବସିଥିବାବେଳେ ତାଙ୍କ ଆସନ ତଳେ ଶାୟିତ ଭଙ୍ଗୀରେ ଅପସ୍ମାରପୁରୁଷଟି ରହିଛି। ଏହି ଅଷ୍ଟଭୁଜ ମୂର୍ତ୍ତିର ଅଧିକାଂଶ ହସ୍ତ ଭଗ୍ନ ହୋଇଥିବାସ୍ଥଳେ ଦକ୍ଷିଣହସ୍ତର ଖଡ୍ଗ, ତ୍ରିଶୂଳ ଓ ବାମହସ୍ତର ଏକ ଢ଼ାଲ ସ୍ପଷ୍ଟ ହୁଏ। ବୋଧହୁଏ ଅନ୍ୟ ହସ୍ତଗୁଡ଼ିକରେ ଭୈରବଙ୍କ ସାଧାରଣ ଆୟୁଧ ସମେତ କେତେକ ଯୁଦ୍ଧାସ୍ତ୍ର ଧାରଣ କରିଥିଲେ। ଏହା ଏକ ମଧ୍ୟଯୁଗୀୟ କୃତି। କୋଣାର୍କ ସଂଗ୍ରହାଳୟରେ ତ୍ରିମୁଖ ଭୈରବଙ୍କ ଏକ ଭଗ୍ନ ଆବକ୍ଷୟ ପ୍ରତିମା ରହିଛି। କଳାଶୈଳୀରୁ ଏହା କୋଣାର୍କ ସୂର୍ଯ୍ୟମନ୍ଦିରର ପୂର୍ବବର୍ତ୍ତୀ ସମୟର ବୋଲି ପ୍ରତୀୟମାନ ହୁଏ।

## କୋଣାର୍କ ସୂର୍ଯ୍ୟମନ୍ଦିରର ଚର୍ତୁମୁଖ ଭୈରବ

ସୂର୍ଯ୍ୟମନ୍ଦିର ଜଗମୋହନ ଛାତ କାଣ୍ଡିର ଚାରିଦିଗରେ ଚାରିଗୋଟି ଚର୍ତୁମୁଖ ଓ ଷଡ଼ଭୁଜ ଭୈରବ ପ୍ରତିମା ସ୍ଥାନିତ ହୋଇଥିବା ଅନୁମାନ କରାଯାଏ। ତାହା ମଧ୍ୟରୁ କେତୋଟି ମୂର୍ତ୍ତି ଭାଙ୍ଗିପଡ଼ିଥିବାବେଳେ ପୂର୍ବ ଦିଗର କୃତିଟି କେତକାଂଶରେ ଭଗ୍ନ ହେଲେହେଁ ସ୍ୱସ୍ଥାନରେ ଦଣ୍ଡାୟମାନ ହୋଇଛି। ପ୍ରାୟ ମନୁଷ୍ୟ ଉଚ୍ଚତାର ଏହି ପ୍ରତିମା ଏକ ଚକ୍ରଯୁକ୍ତ ନୌକା ଉପରେ ଲଳିତ-ନୃତ୍ୟଭଙ୍ଗୀରେ ଠିଆ ହୋଇଛନ୍ତି। ବିକଟ ହସ ପ୍ରଦର୍ଶନ କରୁଥିବା ତାଙ୍କ ଚାରିମୁଖ ଚାରିଦିଗକୁ ଚାହିଁଥିବାବେଳେ ମସ୍ତକରେ ଅଗ୍ନିଶିଖା ସଦୃଶ ଊର୍ଦ୍ଧ୍ୱଗଭା, ଗଳାରେ ରତ୍ନହାର ସମେତ ନାଗ-ଯଜ୍ଞୋପବୀତ, ଆଜାନୁଲମ୍ବିତ କପାଳମାଳା, କଟିରେ ଝରାଯୁକ୍ତ ମେଖଳା, ହସ୍ତରେ କଙ୍କଣ ବାହୁରେ ବାଜୁବନ୍ଧ, ପାଦରେ ନୂପୁର ପରିଧାନ କରିଥିବା ଦେଖାଯାଏ। ମୂର୍ତ୍ତିର ଷଡ଼ଭୁଜରୁ ବାମ ଦୁଇହସ୍ତ ଭଗ୍ନ। ଅନ୍ୟ ଚାରି ହସ୍ତରୁ ମୁଖ୍ୟ ଦକ୍ଷିଣହସ୍ତରେ ସେ କପାଳପାତ୍ର ଓ ସେହି ପାର୍ଶ୍ୱର ଅନ୍ୟ ହସ୍ତରେ ଯଥାକ୍ରମେ ଅଗ୍ନିଶିଖା ଓ ତ୍ରିଶୂଳ ଧାରଣ କରିଛନ୍ତି। ବାମପାର୍ଶ୍ୱ ଉପର ହସ୍ତରେ ଡ଼ମ୍ବରୁ ରହିଛି। ପାଦାସନ ନୌକାକୁ ଦୁଇଜଣ ନାବିକ ଆହୁଲା ଧରି ଚାଳନା କରୁଛନ୍ତି।



ତ୍ରିକାଳଭୈରବ, ସୂର୍ଯ୍ୟ ମନ୍ଦିର, କୋଣାର୍କ

ମନ୍ଦିରର ସୁରକ୍ଷା ନିମନ୍ତେ ଏହିପ୍ରକାର ଭୈରବମୂର୍ତ୍ତି ଉଦ୍ଦିଷ୍ଟବୋଲି କେତେକ ବିଦ୍ୱାନ ମତ ଦେଉଥିବାବେଳେ ତାଙ୍କ ନାମ 'ଘୋର, ମାର୍ତ୍ତଣ୍ଡ-ଭୈରବ, ଘଣ୍ଟାକର୍ଣ୍ଣ' ବୋଲି ଅନୁମାନ କରନ୍ତି। ମାର୍ତ୍ତଣ୍ଡ ବା ସୂର୍ଯ୍ୟଙ୍କ ସହିତ ସମ୍ପର୍କିତ ଭୈରବଙ୍କ ହସ୍ତରେ ପଦ୍ମ ରହିବା ବିଧେୟ। କିନ୍ତୁ ଏଠାରେ ପଦ୍ମର ସୂଚନା

ନଥିବାରୁ ଏହି ନାମ ଉପରେ ପ୍ରଶ୍ନବାଚୀ ସୃଷ୍ଟିହୁଏ। ଏହା ବ୍ୟତୀତ ମୂର୍ତ୍ତି ସହିତ ଘଣ୍ଟ ନଥିବାବେଳେ ତାଙ୍କ 'ଘଣ୍ଟାକର୍ଣ୍ଣ' ନାମର ମଧ୍ୟ ଯଥାର୍ଥତା ନାହିଁ। ଚକ୍ରଯୁକ୍ତନୌକା ଚଳନ ଶକ୍ତିକୁ ସଂକେତ କରୁଥିବାବେଳେ ମୂର୍ତ୍ତିର ପ୍ରତ୍ୟେକ ପାର୍ଶ୍ୱରୁ ତିନିମୁଖ ଦୃଶ୍ୟମାନ ହୁଏ, ଯାହାକି ତ୍ରିକାଳକୁ ସୂଚୀତ କରେ। ଏଣୁ କୃତିଟିକୁ 'ତ୍ରିକାଳଭୈରବ' କହିବା ସମୀଚୀନ ହେବ। କହିବା ବାହୁଲ୍ୟ ଯେ, ଭାରତୀୟ ମୂର୍ତ୍ତିକଳାରେ ଏହା ଏକ ବିରଳ ରଚନା।

## ଶିବ: ସଂହାରମୂର୍ତ୍ତି

ବୈଦିକ ରୁଦ୍ର କୌଣସି ଅସୁରକୁ ବଧ କରିନଥିବାବେଳେ ପୌରାଣିକ ଶିବ ଅନେକ ଅସୁରକୁ ସଂହାର କରିଥିବା ଆଖ୍ୟାନମାନ ଉଲ୍ଲେଖ ଅଛି। ବିଭିନ୍ନ ଅସୁର ବଧ ଉପରେ ଆଧାରିତ ରଚନା ଶିବଙ୍କ 'ସଂହାରମୂର୍ତ୍ତି' ବା 'ଶିବ-ଅସୁରହନ୍ତା' ମୂର୍ତ୍ତିଭାବେ ଖ୍ୟାତ। ଶିବଙ୍କ ଦ୍ୱାରା ବଧ ହୋଇଥିବା କେତେକ ଅସୁର ହେଲେ; ତ୍ରିପୁରାସୁର, ଅନ୍ଧକାସୁର, ନୈଋତାସୁର ଓ ଗଜାସୁର ଇତ୍ୟାଦି। ଏହି ସଂହାର ରୂପରେ ଶିବ ବିଭିନ୍ନ ଯୁଦ୍ଧାସ୍ତ୍ରମାନ ଧାରଣ କରିବା ସହିତ ନିଜ ତ୍ରିଶୂଳର ଅଗ୍ରଭାଗରେ ଅସୁରକୁ ଉତ୍ତୋଳନକରି ବଧ କରୁଥିବାର ଦେଖାଯାଏ। ତେବେ, କେତେକ ସ୍ଥଳେ ମୂର୍ତ୍ତିରେ ନିର୍ଦ୍ଦିଷ୍ଟ ସଂକେତର ଅଭାବରେ ଶିବ ପ୍ରକୃତରେ କେଉଁ ଅସୁରକୁ ବଧ କରୁଛନ୍ତି ତାହା ଜାଣିବା କଷ୍ଟକର ହୁଏ। ଭାରତର ବିଭିନ୍ନ ପ୍ରାନ୍ତର ମନ୍ଦିରମାନଙ୍କରେ ଶିବଙ୍କ ଭିନ୍ନ ଭିନ୍ନ ଅସୁରହନ୍ତାମୂର୍ତ୍ତି ରହିଥିବାବେଳେ ଓଡ଼ିଶାରେ ସେଥିରୁ ଅଳ୍ପ କେତେକହିଁ ରୂପାୟିତ ହୋଇଛି। ଏହା ସାଧାରଣତଃ ଗଜାସୁରବଧ ଓ ଅନ୍ଧକାସୁରବଧ ମୂର୍ତ୍ତି। ସୂଚନାଯୋଗ୍ୟ ଯେ, ଶିବ ଗଜାସୁରକୁ ବଧ କରିବାପରେ, ସେହି ଗଜଚର୍ମକୁ ଧାରଣ କରିଥିଲେ। ଓଡ଼ିଶାରେ ଶିବଙ୍କ ଅଧିକାଂଶ ସଂହାରମୂର୍ତ୍ତିରେ ଗଜଚର୍ମର ସଂକେତ ଦେଖିବାକୁ ମିଳିବାସହିତ ଶିବ ଆଲୀଢ଼ ଭଙ୍ଗୀରେ, ନିଜ ତ୍ରିଶୂଳରେ ଅନ୍ୟଏକ ଅସୁରକୁ ବଧ କରୁଥିବା ଦେଖାଯାଏ। ଏହା ବ୍ୟତୀତ ମୂର୍ତ୍ତି ସହିତ ଶିବଙ୍କ ବାହନ ବୃଷଭ, ଗଣ, ଯୋଗିନୀ ଏବଂ ସମୟ ସମୟେ ପାର୍ବତୀଙ୍କ ମୂର୍ତ୍ତି ସ୍ଥାନିତ ହୋଇଥାଏ। ପ୍ରାୟ ପ୍ରତ୍ୟେକ ମୂର୍ତ୍ତିରେ ଶିବଙ୍କ ବିଶ୍ୱପଦ୍ମ ପାଦାସନ ତଳେ ଏକ ଅପସ୍ମାରପୁରୁଷ ଶାୟିତ ଅବସ୍ଥାରେ ଥାଏ।



ଶିବ-ସଂହାରମୂର୍ତ୍ତି : ଗଜାସୁର ବଧ, ମୁଖଲିଙ୍ଗମ୍

ବୈଦ୍ୟେଶ୍ୱର, ଦୁର୍ଗାମନ୍ଦିରର ଏକ ମୂର୍ତ୍ତିକଳାରେ ଆଲୀଢ଼ଭଙ୍ଗୀରେ ଶିବ ଦୁଇହସ୍ତରେ ମସ୍ତକ ଉପରେ ଗଜଚର୍ମ ଉତ୍ତୋଳିତ କରି ଧରିବା ସହିତ ମୁଖ୍ୟ ଦୁଇ ହସ୍ତର ତ୍ରିଶୂଳରେ ଅନ୍ଧକାସୁରକୁ ବଧକରୁଛନ୍ତି। ଷଡ଼ଭୁଜ ମୂର୍ତ୍ତିଟି ଭଗ୍ନ ଓ ଅବକ୍ଷୟଯୋଗୁଁ ଅନ୍ୟ ଦୁଇହସ୍ତର, ଆୟୁଧ ଏବଂ ଅନ୍ୟକେତେକ ଚିତ୍ର ଅସ୍ପଷ୍ଟ। ତେବେ, ତା'ଙ୍କ ପୃଷ୍ଠଭାଗରେ ଜଣେ ଗଣ ଉଭାହୋଇଥିବା ଦେଖାଯାଏ। ଏକ ଚୈତ୍ୟପଦକ ମଧ୍ୟରେ ଥିବା ଏହି କୃତିଟି ଖ୍ରୀ: ୮ମ ଶତାବ୍ଦୀର ବୋଲି ଜଣାଯାଏ। ମୁଖଲିଙ୍ଗମ୍, ମଧୁକେଶ୍ୱର ମନ୍ଦିରର ଏକ ବକ୍ରମସ୍ତକରେ ଥିବା ଅନୁରୂପ ରଚନାଟି ଅଧିକ ସ୍ପଷ୍ଟ ଓ ବର୍ଣ୍ଣନାତ୍ମକ। ଏଥିରେ ଶିବଙ୍କ ଭାବ ଓ ଭଙ୍ଗୀ ଉପରୋକ୍ତ ପ୍ରକାରରେ ରହିଥିବାବେଳେ ତା'ଙ୍କର ଅନ୍ୟ ଦୁଇ ହସ୍ତରେ ଯଥାକ୍ରମେ ଜପମାଳା ଓ କପାଳପାତ୍ର ରହିଛି। ଏଠାରେ ଊର୍ଦ୍ଧ୍ୱଲିଙ୍ଗ ଶିବଙ୍କ ମସ୍ତକରେ ଜଟା, ମୁଖରେ ଦାଢ଼ିସହ କର୍ଣ୍ଣରେ ସର୍ପକୁଣ୍ଡଳ, ହସ୍ତରେ ବଳୟ ଓ କଟିରେ ରତ୍ନମେଖଳା ଦେଖାଯାଏ। ଶିବଙ୍କ ପୃଷ୍ଠଭାଗରେ ତ୍ରିଶୂଳ ଧାରଣକରି ଜଣେ ଗଣ, ଦୁଇପାଦର ମଧ୍ୟଭାଗରେ ବାହନ ବୃଷଭ, ସମ୍ମୁଖଭାଗରେ ଭୂତ ଓ ଜଣେ ଯୋଗିନୀଙ୍କ ସମେତ ପାର୍ବତୀ ଏକ ଆସନ ଉପରେ ବସି ଶିବଙ୍କ ଏହି ଲୀଳା ଦର୍ଶନ କରୁଛନ୍ତି। ଏହା ଖ୍ରୀ: ୯ମ ଶତାବ୍ଦୀର କୃତିବୋଲି ଅନୁମାନ କରାଯାଏ। କେତେକ ପ୍ରାଚୀନ ମନ୍ଦିରମାନଙ୍କ ରାହାପାଗର ବକ୍ରମସ୍ତକ ଭଳି ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନଙ୍କରେ ଶିବଙ୍କ ସଂହାର ମୂର୍ତ୍ତିଗୁଡ଼ିକ ସ୍ଥାନ ପାଇଥାଏ।



ଶିବ: ସଂହାରମୂର୍ତ୍ତି (ଓଡ଼ିଶା)
ଭାରତୀୟ ସଂଗ୍ରହାଳୟ, କଲିକତା



ଶିବ: ଅନ୍ଧକାସୁରବଧ ମୂର୍ତ୍ତି
ଲିଙ୍ଗରାଜ ମନ୍ଦିର, ଭୁବନେଶ୍ୱର

ଖ୍ରୀଷ୍ଟୀୟ ୧୦ମ ଶତାବ୍ଦୀ ଓ ତା'ର ପରବର୍ତ୍ତୀ ସମୟରେ ସଂହାରମୂର୍ତ୍ତିଗୁଡ଼ିକର ମହତ୍ତ୍ୱ ହ୍ରାସ ପାଇଥିବାରୁ ଏଗୁଡ଼ିକୁ ମନ୍ଦିରର ଅନ୍ୟ ପାଗମାନଙ୍କରେ ସ୍ଥାନିତ କରାଯାଇଥିବା ଦେଖାଯାଏ। ଅଧିକାଂଶସ୍ଥଳେ ମୂର୍ତ୍ତିଗୁଡ଼ିକର ଉପସ୍ଥାପନା ମଧ୍ୟ ସଂକ୍ଷିପ୍ତ। ପାଇକପଡ଼ା, ପାତାଳେଶ୍ୱରମନ୍ଦିର ପରିସରର ଏକ କୃତିରେ ଅଷ୍ଟଭୁଜ ସଂହାରମୂର୍ତ୍ତି ଶିବ ହସ୍ତରେ ବିଭିନ୍ନ ଯୁଦ୍ଧାସ୍ତ୍ର ସମେତ ଡ଼ମରୁ ଓ

କପାଳପାତ୍ର ଧାରଣକରି, ମୁଖ୍ୟ ଦୁଇହସ୍ତର ଊର୍ଦ୍ଧ୍ୱମୁଖ ତ୍ରିଶୂଳରେ ଅନ୍ଧକାସୁରକୁ ବଧ କରୁଛନ୍ତି। ଓଡ଼ିଶାର କୌଣସି ମନ୍ଦିରଗାତ୍ରରୁ ଅପସାରିତ ହୋଇଥିବା ଭିନ୍ନ କଳାଶୈଳୀର ଏକ 'ସଂହାରମୂର୍ତ୍ତି' କଲିକତାସ୍ଥିତ ଭାରତୀୟ ସଂଗ୍ରହାଳୟରେ ରହିଛି। ଏଠାରେ ଶିବଙ୍କ ମସ୍ତକ ଉପରେ ହସ୍ତୀଚର୍ମ ଓ ମୂର୍ତ୍ତିର ନିମ୍ନରେ ଗଣ, ଯୋଗିନୀ ଏବଂ ପାର୍ବତୀଙ୍କ ମୂର୍ତ୍ତି ଦେଖିବାକୁମିଳେ। ସରଳ ଉପସ୍ଥାପନାରେ ଦ୍ୱିଭୁଜ ଏବଂ ଚର୍ତୁଭୁଜ 'ସଂହାରମୂର୍ତ୍ତି' ଘୋରଡ଼ିଆ, ବେରବୋଇ ଷଠଳପୁର, ଖିଚିଂ, ବେଲ୍‌ଖଣ୍ଡି ସମେତ ଅନ୍ୟ କେତେକ ମନ୍ଦିରଗାତ୍ରରେ ଦୃଷ୍ଟିଗୋଚର ହୁଏ।

ଭୁବନେଶ୍ୱରର ଲିଙ୍ଗରାଜମନ୍ଦିର, ମୁଖ୍ୟଦେଉଳ ଦକ୍ଷିଣପାର୍ଶ୍ୱ, ଉପରଭାଗରେ ଶିବଙ୍କ ଅନ୍ଧକାସୁରବଧର ଏକ ସୁନ୍ଦର ପ୍ରତିମା ରହିଛି। ଏଠାରେ ପଞ୍ଚମୁଖ ଓ ଦ୍ୱାଦଶଭୁଜ, ରୁଦ୍ରଶିବ ଏକ ଅପସ୍ମାରପୁରୁଷ ଉପରେ ଆଲୀଢ଼ ଭଙ୍ଗୀରେ ରହିଛନ୍ତି। ମୂର୍ତ୍ତିର କେତେକ ହସ୍ତ ଭଗ୍ନହେଲେହେଁ ମୁଖ୍ୟ ଦୁଇହସ୍ତରେ ଧାରଣ କରିଥିବା ଉତ୍ତୋଳିତ ତ୍ରିଶୂଳର ଅଗ୍ରଭାଗରେ ଅସୁରର ଶରୀର ରହିଥିବାବେଳେ ଅନ୍ୟ ହସ୍ତଗୁଡ଼ିକରେ ବିଭିନ୍ନ ଯୁଦ୍ଧାସ୍ତ୍ର ଧାରଣ କରିଥିବା ସୂଚନାମିଳେ। ଶିବଙ୍କ ପଞ୍ଚମସ୍ତକରେ ଜଟାମୁକୁଟ, ଉଗ୍ରମୁଖରେ ଦାଢ଼ି ଓ ଦନ୍ତ ରହିଥିବାବେଳେ ଶରୀରରେ ବିଭିନ୍ନ ବସ୍ତ୍ରାଳଙ୍କାର ଓ ପାଦରେ ନାଗବଳୟ ପରିଧାନ କରିଥିବା ଦେଖାଯାଏ। ଏହା ବ୍ୟତୀତ ମୂର୍ତ୍ତିର ନିମ୍ନ ଦୁଇପାର୍ଶ୍ୱରେ ତିନିଗଣ ଅସ୍ତ୍ର ଧାରଣକରି ବିଭିନ୍ନ ଭଙ୍ଗୀରେ ରହିଛନ୍ତି। ବଳିଷ୍ଠ କଳାଶୈଳୀର ଏହି କୃତିଟି ଖ୍ରୀ: ୧୧ଶ ଶତାବ୍ଦୀ, ଦ୍ୱିତୀୟାର୍ଦ୍ଧର ବୋଲି ଜଣାଯାଏ।

**ଶିବ: ବୀରଭଦ୍ର**

ଦକ୍ଷ ଯଜ୍ଞରେ ସତୀ ଆତ୍ମାହୁତି ଦେବାପରେ, କ୍ରୋଧାନ୍ୱିତ ଶିବଙ୍କ ଶରୀରରୁ ଏକ ଭୟଙ୍କର ବୀରପୁରୁଷ ଜାତହେଲା। ସେ ଦକ୍ଷଯଜ୍ଞ ଭଙ୍ଗକରି ଦକ୍ଷପ୍ରଜାପତିଙ୍କ ମସ୍ତକ ଛେଦନ କଲା। ଏହା ବ୍ୟତୀତ ସେଠାରେ ଉପସ୍ଥିତ ଦେବତା ଓ ଋଷିମାନଙ୍କୁ ବିଭିନ୍ନ ଭାବରେ ଦଣ୍ଡିତ କରିଥିଲା। ଶିବଙ୍କର ଏହି ଉଗ୍ରରୂପ 'ବୀରଭଦ୍ର' ନାମରେ ପରିଚିତ। ପୁରାଣ ଓ କାବ୍ୟର ବର୍ଣ୍ଣନା ଅନୁଯାୟୀ ବୀରଭଦ୍ର ଶିବଙ୍କ ତ୍ରିଶୂଳ ସମେତ କେତେକ ଯୁଦ୍ଧାସ୍ତ୍ର ଧାରଣ କରନ୍ତି। ଅନ୍ୟ ଭାବରେ ବୀରଭଦ୍ର ସୁରକ୍ଷାର ଦେବତାଭାବେ ମାତୃକାଙ୍କ ସହିତ ରହିଥାଆନ୍ତି। କିନ୍ତୁ ଓଡ଼ିଶାର ସପ୍ତମାତୃକାଙ୍କ ସହିତ ଥିବା ଶିବ ଉଗ୍ର ନୁହଁନ୍ତି।

ଯୁଦ୍ଧାସ୍ତ୍ର ଧାରଣକରିଥିବା ଓଡ଼ିଶାର ଅଳ୍ପ କେତୋଟି ବୀରଭଦ୍ର ମୂର୍ତ୍ତି ମଧ୍ୟରୁ ବାଣପୁର ଦକ୍ଷପ୍ରଜାପତି ମନ୍ଦିର ଗାତ୍ରର ଦୁଇଟି କୃତି ଉଲ୍ଲେଖଯୋଗ୍ୟ। ବୀରୋଚିତ ଭଙ୍ଗୀରେ, ବିଶ୍ୱପଦ୍ମ ଉପରେ ଲଳିତାସନରେ ବସିଥିବା ଉଭୟମୂର୍ତ୍ତି ଚର୍ତୁଭୁଜ। ଗୋଟିଏ ମୂର୍ତ୍ତିର ଦକ୍ଷିଣପାର୍ଶ୍ୱର ଗୋଟିଏ ହସ୍ତ ଭଗ୍ନ ହୋଇଥିବାବେଳେ ଅନ୍ୟ ହସ୍ତରେ ଖଡ଼୍‌ଗ ଦେଖାଯାଏ। ବାମପାର୍ଶ୍ୱର ମୁଖ୍ୟ ହସ୍ତରେ କପାଳପାତ୍ର ଓ ଖଟ୍ୱାଙ୍ଗ ଅନ୍ୟ ହସ୍ତରେ ଛିନ୍ନମସ୍ତକ ରହିଛି। ଏହା ବ୍ୟତୀତ ମୂର୍ତ୍ତିର ନିମ୍ନରେ ଶୟନ ଭଙ୍ଗୀରେ ଏକ ଯକ୍ଷ ଦେଖାଯାଏ। ଅନ୍ୟ ମୂର୍ତ୍ତିଟିର କଳାଶୈଳୀ ଉଚ୍ଚକୋଟୀର। ଏଠାରେ ବୀରଭଦ୍ର ତାଙ୍କ ଦୁଇ ହସ୍ତରେ ଯଥାକ୍ରମେ ଅଭୟମୁଦ୍ରା ବ୍ୟତୀତ ଉଭୟ ମୂର୍ତ୍ତିର ମସ୍ତକରେ କିରୀଟମୁକୁଟ ଓ ଦେହରେ ବିଭିନ୍ନ ବସ୍ତ୍ରାଳଙ୍କାର ଦେଖିବାକୁ ମିଳେ। ଏହା ଖ୍ରୀ: ୧୨ଶ-୧୩ଶ ଶତାବ୍ଦୀର କୃତି ଅଟେ।



# ଶାକ୍ତ ମୂର୍ତ୍ତିକଳାର ପ୍ରାରମ୍ଭ

ଭାରତ କାହିଁକି ପୃଥିବୀର ବହୁ ପ୍ରାଚୀନ ସଂସ୍କୃତିସମ୍ପନ୍ନ ଦେଶରେ ମାତୃପୂଜା ବିଭିନ୍ନ ଭାବରେ ପ୍ରଚଳିତ ଥିବା ପ୍ରମାଣମିଳେ। ଭାରତରେ ମାତୃଶକ୍ତିକୁ 'ଆଦ୍ୟାଶକ୍ତି' ଭାବେ ଗ୍ରହଣ କରାଯାଇଥିବାରୁ ଏହି ଧାରା ଶକ୍ତି ପରମ୍ପରା ଶାକ୍ତ ପରମ୍ପରା ଭାବେ ପରିଚିତ। ଅନେକ ପ୍ରାଗୈତିହାସିକ ଗୁମ୍ଫାରେ ମାତୃଶକ୍ତିର ସଂକେତ ସ୍ୱରୂପ ଯୋନୀ ଚିତ୍ର ବା ଚିହ୍ନମାନ ଦେଖିବାକୁମିଳେ। ସିନ୍ଧୁ ସଭ୍ୟତାରେ ମଧ ଚକ୍ରାକାର ପ୍ରସ୍ତର ମଧ୍ୟରେ ଛିଦ୍ର ଥିବା ନାରୀପ୍ରତୀକ ଓ ନାରୀ ପିତୁଳାମାନ ପୂଜା କରାଯାଉଥିଲା। ସେଠାର ପ୍ରତ୍ନତାତ୍ତ୍ୱିକ ଖନନରୁ ଏହିପ୍ରକାର ବହୁ ପଦାର୍ଥ ପ୍ରାପ୍ତ ହୋଇଛି। ବୈଦିକ ଯୁଗରେ ନାରୀଶକ୍ତିକୁ ବିଭିନ୍ନ ଭାବରେ ପରିକଳ୍ପନା କରାଯାଇଥିବାବେଳେ ବ୍ରାହ୍ମଣ୍ୟ ଧର୍ମରେ ଶିବଲିଙ୍ଗ ସହିତ ଶକ୍ତିଚକ୍ରର ସଂଯୋଗକୁ ଶକ୍ତିପରମ୍ପରାର ପ୍ରାଧାନ୍ୟଭାବେ ଗ୍ରହଣ କରାଯାଇପାରେ। ଏହାର ସମାନ୍ତରାଳରେ ଜନଜାତିମାନେ ଅସ୍ୱାଭାବିକ ଆକାର ଧାରଣକରିଥିବା ଅନେକ ପ୍ରାକୃତିକ ଶିଳାପିଣ୍ଡ ଓ ସ୍ତମ୍ଭମାନଙ୍କୁ ଖମ୍ବେଶ୍ୱରୀ ବା ସ୍ତମ୍ଭେଶ୍ୱରୀ ବା ମାତୃଶକ୍ତି, ଦେବୀଭାବେ ଗ୍ରହଣ କରିଥିବା ପ୍ରମାଣମିଳେ। ଅନ୍ୟ କେତେକ ସ୍ଥଳେ ଶିଳାରେ ଯୋନୀ ସଂକେତ ନିର୍ମାଣ କରାଯାଇ ତନ୍ତ୍ରପୂଜାରେ ବିନିଯୋଗ କରାଯାଉଥିବା ଜଣାଯାଏ। ଏହାର ପରବର୍ତ୍ତୀ ପର୍ଯ୍ୟାୟରେ ବୈଦିକ ଓ ପୌରାଣିକ ଦେବତାଙ୍କ ଶକ୍ତି ବା ପତ୍ନୀମାନଙ୍କ ମୂର୍ତ୍ତି ନିର୍ମାଣ କରାଯାଇ ମାତୃକାପୂଜା ପ୍ରଚଳନ କରାଯାଇଥିଲା। କଳିଙ୍ଗର ଶିବମନ୍ଦିର ଗାତ୍ରରେ ଶିବଙ୍କ ପତ୍ନୀ ପାର୍ବତୀ ଓ ଦୁର୍ଗାଙ୍କ ମୂର୍ତ୍ତିକୁ ପାର୍ଶ୍ୱଦେବତା ଭାବେ ସ୍ଥାନିତ କରାଯାଇଥିବାବେଳେ ଆବରଣଦେବତା ମଧ୍ୟରେ ସପ୍ତମାତୃକା ଓ ଅନ୍ୟ ଦେବୀମାନଙ୍କ ମୂର୍ତ୍ତି ଦେଖିବାକୁମିଳେ। ତେବେ, ଚାମୁଣ୍ଡାଙ୍କ ମୂର୍ତ୍ତି ବହୁକାଳରୁ ବୁଢ଼ୀଠାକୁରାଣୀ ଓ ଅନ୍ୟ ନାମରେ ପୂଜା ପାଉଥିବା ଜଣାଯାଏ। ଏହାସହିତ ଦେବୀମାନଙ୍କ ନିମନ୍ତେ ସ୍ୱତନ୍ତ୍ର ମନ୍ଦିର ନିର୍ମିତ ହୋଇଥିବାବେଳେ ଉତ୍ତରଦେଶରେ ଅନେକ ସ୍ୱତନ୍ତ୍ର ଦେବୀଙ୍କ ମୂର୍ତ୍ତି ପରିକଳ୍ପନା କରାଯାଇଛି।



କଳାହାଣ୍ଡି ଜିଲ୍ଲା, ମାରାଗୁଡ଼ାରୁ ପ୍ରାପ୍ତ ପୂଜିତ ଯୋନୀ ସଂକେତ



# ପାର୍ବତୀ

ପର୍ବତରାଜନନ୍ଦିନୀ, ପାର୍ବତୀ ଶିବଙ୍କ ବାମା ଅଟନ୍ତି । ଏଣୁ ଶିବାଳୟର ବାମ ପାର୍ଶ୍ୱରେ ଦେବୀଙ୍କ ମୂର୍ତ୍ତିକୁ ପାର୍ଶ୍ୱଦେବତା ଭାବେ ସ୍ଥାନିତ କରାଯାଇଥାଏ । ଘୋର ତପସ୍ୟାରେ ଦେବୀ ଶିବଙ୍କୁ ସନ୍ତୁଷ୍ଟକରି ପତିରୂପେ ପ୍ରାପ୍ତ କରିଥିଲେ । ଏଣୁ ପ୍ରଥମ ପର୍ଯ୍ୟାୟରେ ସେ ଯୋଗେଶ୍ୱରୀ ହୋଇଥିବାବେଳେ ଯୋଗ ସମ୍ପର୍କୀୟ ବସ୍ତୁଗୁଡ଼ିକ ତା'ଙ୍କର ମୁଖ୍ୟ ଆୟୁଧ । ଦ୍ୱିତୀୟ ପର୍ଯ୍ୟାୟରେ ଦେବୀ ଶିବଙ୍କ ପତ୍ନୀଭାବେ ଶିବାନୀ ହୋଇଥିବାରୁ ସେ ଶିବଙ୍କ ମୁଖ୍ୟ ଆୟୁଧ ତ୍ରିଶୂଳ ସହ ଚମ୍ପକପୁଷ୍ପ ଧାରଣ କରିଥିବା ଦେଖାଯାଏ । ଏହି ପର୍ଯ୍ୟାୟରେ ଦେବୀ ଶଙ୍କରୀ,ଭବାନୀ ଇତ୍ୟାଦି ନାମରେ ମଧ୍ୟ ପରିଚିତ । ଅନ୍ତିମ ପର୍ଯ୍ୟାୟରେ ମହିଷାସୁରର ବିପ୍ଳବରୁ ତ୍ରିଲୋକକୁ ରକ୍ଷାକରି ଦେବୀ ଦୁର୍ଗା, ଭୁବନେଶ୍ୱରୀ, ରାଜେଶ୍ୱରୀ ଇତ୍ୟାଦି ନାମ ଗ୍ରହଣ କରିଥିବାବେଳେ ସେ ରାଜକୀୟ ବସ୍ତ୍ରଭୂଷଣରେ ମଣ୍ଡିତ ହେବା ସହିତ ଆୟୁଧ ଭାବେ ଯୁଦ୍ଧାସ୍ତ୍ରମାନ ଧାରଣ କରିଥିବା ଦେଖାଯାଏ । କୌତୁହଳର ବିଷୟ ଏହି କି, ଓଡ଼ିଶାର ସମୟାନୁକ୍ରମ ମୂର୍ତ୍ତିକଳାରେ ଦେବୀଙ୍କ ପର୍ଯ୍ୟାୟାନୁକ୍ରମ ରୂପର ଉପସ୍ଥାପନା ହୋଇଛି । ଅର୍ଥାତ୍, ପ୍ରାରମ୍ଭର ପ୍ରାଚୀନ ମୂର୍ତ୍ତିଗୁଡ଼ିକ ପାର୍ବତୀଙ୍କ ଯୋଗେଶ୍ୱରୀ ରୂପ, ମଧ୍ୟଯୁଗୀୟ ମୂର୍ତ୍ତିଗୁଡ଼ିକ ତାଙ୍କର ଶିବାନୀ, ଭବାନୀ ବା ଶିବପତ୍ନୀ ରୂପ ଏବଂ ଅନ୍ତିମ ପର୍ଯ୍ୟାୟ ରଚନାରେ ସେ ରାଜକୀୟ ପରିପାଟି ବସ୍ତ୍ରଭୂଷଣ ସହିତ ରାଜେଶ୍ୱରୀ, ଭୁବନେଶ୍ୱରୀ ରୂପରେ ଉପସ୍ଥାପିତ ହୋଇଛନ୍ତି । ଏହିସବୁ ମୂର୍ତ୍ତି ଉଭୟ ସ୍ଥାନକ ଓ ଆସନ ଭଙ୍ଗୀରେ ଦେଖିବାକୁମିଳେ । ପ୍ରଥମ ପର୍ଯ୍ୟାୟର ଯୋଗେଶ୍ୱରୀ ରୂପରେ ଦେବୀ ସମଭଙ୍ଗରେ ଦଣ୍ଡାୟମାନ ହୋଇଥିବାବେଳେ ପରବର୍ତ୍ତୀ ପର୍ଯ୍ୟାୟର ସ୍ଥାନକ ମୂର୍ତ୍ତିଗୁଡ଼ିକ ସାଧାରଣତଃ ସାବଲୀଳ, ତ୍ରିଭଙ୍ଗରେ ଦଣ୍ଡାୟମାନ ହୋଇଥିବା ଦେଖାଯାଏ । ଆସନଭଙ୍ଗୀରେ ଉଭୟ ପଦ୍ମାସନ ଓ ଲଳିତାସନ ମୂର୍ତ୍ତି ରହିଛି । ପାର୍ବତୀଙ୍କ ଏହିସବୁ ମୂର୍ତ୍ତି ପାର୍ଶ୍ୱଦେବତା ବ୍ୟତୀତ ଆବରଣଦେବତା ଓ ଅର୍ଚ୍ଚାବିଗ୍ରହ ଭାବେ ମଧ୍ୟ ଦେଖିବାକୁମିଳେ ।

ଭୁବନେଶ୍ୱରର କେତେକ ଅତି ପ୍ରାଚୀନ ଶିବମନ୍ଦିର ଭାଙ୍ଗିପଡ଼ିବାପରେ ତା'ଦେହର କେତେକ ପାର୍ଶ୍ୱଦେବତା ପାର୍ବତୀ ପ୍ରତିମା ସଂଗୃହୀତ ହୋଇଛି । ତାହା ମଧ୍ୟରୁ ଗୋଟିଏ ପ୍ରତିମା ଲିଙ୍ଗରାଜମନ୍ଦିର ପରିସରରେ ଥିବା ଏକ ଛୋଟ ମନ୍ଦିର ଦେହରେ ସଂଯୋଗ ହୋଇଥିବାବେଳେ ଅନ୍ୟଗୋଟିଏ ମୂର୍ତ୍ତି ବିନ୍ଦୁସାଗର କୂଳରେ ରହିଛି । ଏହି ଶୈଳୀର ଅନ୍ୟ ପ୍ରତିମା ଭୁବନେଶ୍ୱରର ସୁବର୍ଣ୍ଣଜଳେଶ୍ୱର ମନ୍ଦିର ପାର୍ଶ୍ୱଦେବତା ଓ ବାଣପୁର ନିକଟ ବଙ୍କାଡ଼ର ଭଗ୍ନ ଶିବମନ୍ଦିରରେ ଦେଖିବାକୁମିଳେ । ଆନୁମାନିକ ଖ୍ରୀ: ୫ମ-୭ମ ଶତାବ୍ଦୀ ମଧ୍ୟର ଏହି ରଚନାଗୁଡ଼ିକରେ ସମଭଙ୍ଗରେ ଦଣ୍ଡାୟମାନ ଦେବୀଙ୍କ ଶରୀର ଗଠନ ମାଂସଳ ଅର୍ଥାତ୍, ଗୋଲ୍ ବକ୍ଷ ଓ ପ୍ରଶସ୍ତ ନିତମ୍ବ ଏବଂ କଟି କ୍ଷୀଣ ଅଟେ । ଚତୁର୍ଭୁଜା ଦେବୀଙ୍କ ଉପର ଦକ୍ଷିଣହସ୍ତରେ ଜପମାଳା, ତଳ ଦକ୍ଷିଣହସ୍ତ ପଦ୍ମ ସହିତ ବରଦମୁଦ୍ରା ପ୍ରଦର୍ଶନ କରୁଥିବାବେଳେ ବାମଉପର ହସ୍ତରେ ଏକ ପୁଷ୍ପ ଏବଂ ତଳହସ୍ତରେ କମଣ୍ଡଳୁ ଧାରଣ କରିଥିବା ଦେଖାଯାଏ । ଦେବୀଙ୍କ ବେଶଭୂଷଣ ମଧ୍ୟରେ ମସ୍ତକରେ ଜଟା, ସ୍କନ୍ଧରେ ଲମ୍ବ ଯଜ୍ଞୋପବୀତ, ଆପାଦ ଲମ୍ବିତ ପରିଧେୟ ଓ କଟିରେ ରଜ୍ଜୁର କଟିବନ୍ଧ ରହିଛି । ଶୂନ୍ୟଥିବା ତାଙ୍କ ଲୋଳିତ କର୍ଣ୍ଣରୁ ସୂଚନା ମିଳେଯେ, ଦେବୀ ଅଳଙ୍କାର, ଭୂଷଣ ତ୍ୟାଗ କରିଛନ୍ତି । ଲିଙ୍ଗରାଜମନ୍ଦିର ପରିସର ଓ ସୁବର୍ଣ୍ଣଜଳେଶ୍ୱର ମନ୍ଦିରର ପାର୍ବତୀମୂର୍ତ୍ତି ମଣ୍ଡନକୃତି ବିହୀନ ଓ ଉପସ୍ଥାପନା ଶୈଳୀ ସରଳ । ଉଭୟ ମୂର୍ତ୍ତିର ମସ୍ତକ ପ୍ରଚ୍ଛଦରେ ଚକ୍ରାକାର ପ୍ରଭାମଣ୍ଡଳ ରହିଥିବାବେଳେ ନିମ୍ନ ଦୁଇ ପାର୍ଶ୍ୱରେ ଦୁଇ ପରିଚାରିକା

ପୁଷ୍ପଗୁଚ୍ଛ ଧାରଣକରି ଉଭା ହୋଇଥିବା ଦେଖାଯାଏ। ବଙ୍କାଡ଼ର ଏହି ଶୈଳୀର ପାର୍ବତୀଙ୍କ ଦୁଇ ପରିଚାରିକା ଚାମର ଧାରଣ କରିଛନ୍ତି। ଏହି ସମୟର ପାର୍ବତୀଙ୍କ ସହିତ ତାଙ୍କ ବାହନ ସିଂହ ଦେଖାଯାଉନଥିବାବେଳେ କେତେକ ମୂର୍ତ୍ତିର ନିମ୍ନରେ ମୃଗଯୁଗଳ ଦୃଷ୍ଟିଗୋଚର ହୁଏ। ଭୁବନେଶ୍ୱର, ମୋହିନୀ ମନ୍ଦିରର ପାର୍ଶ୍ୱଦେବୀ ପାର୍ବତୀ ଏହି ଶୈଳୀର ହେଲେହେଁ ଦେବୀଙ୍କ ସହିତ ଉଭୟ ସିଂହ ଓ ମୃଗ ରହିଛନ୍ତି। ପ୍ରାରମ୍ଭର ଏହି ପ୍ରାଚୀନ ମୂର୍ତ୍ତିଗୁଡ଼ିକ ପାର୍ବତୀଙ୍କ ବିବାହ ପୂର୍ବର ଯୋଗେଶ୍ୱରୀ ତଥା ଅପର୍ଣ୍ଣା ରୂପ ଅଟେ।



ପାର୍ବତୀ: ଯୋଗେଶ୍ୱରୀ (ପ୍ରାଚୀନ ମୂର୍ତ୍ତି)
ଲିଙ୍ଗରାଜମନ୍ଦିର ପରିସର



ପାର୍ବତୀ: ଯୋଗେଶ୍ୱରୀ ମୂର୍ତ୍ତି
ପଶ୍ଚିମେଶ୍ୱର ମନ୍ଦିର, ଭୁବନେଶ୍ୱର

ଖ୍ରୀଷ୍ଟୀୟ ୮ମ-୯ମ ଶତାବ୍ଦୀରେ ଭୌମକର ରାଜବଂଶ ଓଡ଼ିଶାର ଶାସନଭାର ଗ୍ରହଣ କରିଥିଲେ। ଏହି ଶାସକମାନେ ବୌଦ୍ଧତନ୍ତ୍ର ତଥା ହିନ୍ଦୁ ଶାକ୍ତ ପରମ୍ପରାପ୍ରତି ଅନୁରକ୍ତଥିବା ଜଣାଯାଏ। ଏମାନଙ୍କ ସମୟର କେତେକ କୀର୍ତ୍ତି ମଧ୍ୟରେ ଭୁବନେଶ୍ୱରରେ ଦେବୀ ଗୌରୀଙ୍କ ମୂର୍ତ୍ତି ପ୍ରତିଷ୍ଠା ଓ କପାଳିନୀ ବା ଚାମୁଣ୍ଡାଙ୍କ ବୈତାଳଦେଉଳ ଉଲ୍ଲେଖଯୋଗ୍ୟ। ତେବେ, ବର୍ତ୍ତମାନ ତିଷ୍ଠିରହିଥିବା ଗୌରୀଙ୍କ କାରୁକଳାପୂର୍ଣ୍ଣ ମନ୍ଦିରଟି ସୋମବଂଶକାଳୀନ ନିର୍ମାଣବୋଲି ଜଣାଯାଏ। ଗୌରୀ,ପାର୍ବତୀଙ୍କ ନାମାନ୍ତର ହୋଇଥିବାବେଳେ କଳିଙ୍ଗ କଳାକୃତିରେ ଏହି ମୂର୍ତ୍ତି ଏକ ସ୍ୱତନ୍ତ୍ର ପରିକଳ୍ପନା। ବିଶ୍ୱପଦ୍ମଉପରେ ସମଭଙ୍ଗରେ ଦଣ୍ଡାୟମାନ ଦେବୀ ଚତୁର୍ଭୁଜା ଅଟନ୍ତି। ସେ ଉପର ଦୁଇ ହସ୍ତରେ ପାଶ ଓ ଅଙ୍କୁଶ ଏବଂ ତଳ ଦୁଇ ହସ୍ତରେ ଅଞ୍ଜନପାତ୍ରୀ ଓ ଦର୍ପଣ ଧାରଣ କରିଥିବା ଦେଖାଯାଏ। ଦେବୀଙ୍କ ମସ୍ତକରେ କିରୀଟମୁକୁଟ ଓ ଦେହରେ ବିଭିନ୍ନ ସୁନ୍ଦର ବସ୍ତ୍ରାଳଙ୍କାର ରହିଥିବାବେଳେ ମସ୍ତକର ପ୍ରଚ୍ଛଦରେ ଏକ କମନୀୟ ପ୍ରଭାମଣ୍ଡଳ ମୂର୍ତ୍ତିଟିର ଶୋଭାବର୍ଦ୍ଧନ କରୁଛି। ଏହା ବ୍ୟତୀତ ମୂର୍ତ୍ତିର ନିମ୍ନରେ ଥିବା ଦୁଇ କ୍ଷୁଦ୍ରପଦ୍ମ ଉପରେ, ଦକ୍ଷିଣ ପାର୍ଶ୍ୱରେ ମୃଗଯୁଗଳ ଓ ବାମ ପାର୍ଶ୍ୱରେ ଦେବୀଙ୍କୁ ଅବଲୋକନ କରୁଥିବା ଊର୍ଦ୍ଧ୍ୱମୁଖ ସିଂହ ଏବଂ ଉଭୟ ପାର୍ଶ୍ୱର ପଦ୍ମବୃନ୍ତରେ ଦୁଇ ଅଗ୍ନିଶିଖାର

ସଙ୍କେତ ରହିଛି । କାଳିଦାସ ତାଙ୍କ କୁମାରସମ୍ଭବ କାବ୍ୟରେ ଶିବଙ୍କୁ ପ୍ରାପ୍ତ କରିବା ନିମନ୍ତେ ପାର୍ବତୀ ଚତୁଃପାର୍ଶ୍ୱରେ ଅଗ୍ନି ପ୍ରଜ୍ୱଳନକରି ଘୋର ତପସ୍ୟା କରିଥିବା ବିଷୟ ଉଲ୍ଲେଖ କରିଛନ୍ତି । ଏଠାରେ ଗୌରୀଙ୍କ ହସ୍ତର ଅଞ୍ଜନପାତ୍ରୀ, ଦର୍ପଣ ଓ ବେଶଭୂଷଣ ସଦ୍ୟ ବିବାହିତା ନାରୀର ସଂକେତ ହୋଇଥିବାବେଳେ ଉପରୋକ୍ତ ଅଗ୍ନିଶିଖା ଦୁଇଟି ଦେବୀଙ୍କ ପୂର୍ବ ତପସ୍ୟାର ସୂଚନା ଦିଏ । ଅର୍ଥାତ୍, ଗୌରୀ ଏଠାରେ ସଦ୍ୟ ବିବାହିତା, ସୁଲକ୍ଷଣ ସମ୍ପନ୍ନା ଦେବୀ ଅଟନ୍ତି ।

ଭୁବନେଶ୍ୱର, ବୈତାଳଦେଉଳର ପାର୍ଶ୍ୱଦେବୀ ପାର୍ବତୀ ଭୌମକର କାଳୀନ ଦ୍ୱିତୀୟାର୍ଦ୍ଧର କୃତି ଅଟେ । ଏଠାରେ ତ୍ରିଭଙ୍ଗରେ ଦଣ୍ଡାୟମାନ ଦେବୀଙ୍କ ମସ୍ତକରେ ଜଟାମୁକୁଟ, କଟିରେ ଆଲମ୍ବପରିଧେୟ ସହିତ ଅଙ୍ଗପ୍ରତ୍ୟଙ୍ଗରେ ବହୁବିଧ ଅଳଙ୍କାର ରହିଛି । ସେ ତା'ଙ୍କ ଚର୍ତୁଭୁଜରୁ ମୁଖ୍ୟ ଦୁଇ ହସ୍ତରେ ଶିବଙ୍କ ଆୟୁଧ ତ୍ରିଶୂଳ ଓ ବୀଜପୂରକ ଏବଂ ଅନ୍ୟ ଦୁଇହସ୍ତରେ ଜପମାଳା ଓ ଶିବଙ୍କ ପ୍ରିୟ କେତକୀ ପୁଷ୍ପ ଧାରଣ କରିଛନ୍ତି । ଏଠାରେ ପାର୍ବତୀ ଶିବପତ୍ନୀ 'ଶିବାନୀ' ବା 'ମାହେଶ୍ୱରୀ' ଅଟନ୍ତି । ଏହି ରଚନାରେ ଦେବୀଙ୍କ ନିକଟରେ ତା'ଙ୍କ ବାହନ ସିଂହ ନଥିବାବେଳେ ନିମ୍ନଭାଗ ଉଭୟ ପାର୍ଶ୍ୱରେ ପରିଚାରିକା ଓ ଉର୍ଦ୍ଧ୍ୱକୋଣ ଦ୍ୱୟରେ ଉଡ୍ଡୀୟମାନ ଭଙ୍ଗୀରେ ପୁଷ୍ପମାଳ ଧାରଣ କରିଥିବା ଗନ୍ଧର୍ବ ଓ ଅପସରାଙ୍କ ପିଚୁଳା ଦେଖିବାକୁମିଳେ ।

ଭୌମକର କାଳୀନ ମନ୍ଦିରର ଶୈଳୀ ଅନୁଯାଇ ପାର୍ଶ୍ୱଦେବତା ମୂର୍ତ୍ତିର ଆକାର ହ୍ରାସ ପାଇଥିବା ଲକ୍ଷ୍ୟ କରାଯାଏ । ଏହି ସମୟର ଅଧିକାଂଶ ରଚନାରେ ପାର୍ବତୀଙ୍କ ଭଙ୍ଗୀ ଓ ଆୟୁଧରେ ପରିବର୍ତ୍ତନ ଘଟିଥିବାବେଳେ ମୂର୍ତ୍ତିର ନିମ୍ନରେ ଦେବୀଙ୍କ ବାହନ ସିଂହ ଓ ଉର୍ଦ୍ଧ୍ୱ ଭାଗରେ ଗନ୍ଧର୍ବ, ଅପସରାଙ୍କ



ପାର୍ବତୀ: ଶିବାନୀମୂର୍ତ୍ତି
ବୈତାଳ ଦେଉଳ, ଭୁବନେଶ୍ୱର



ଗୌରୀ: ଗୌରୀ ମନ୍ଦିର,
ଭୁବନେଶ୍ୱର

ପିଢ଼ୁଳା ଓ କେତେକ ମଣ୍ଡନକୃତି ସଂଯୋଗ ହୋଇଥିବା ଏକ ସାଧାରଣ ଲକ୍ଷଣ। ଏହା ବ୍ୟତୀତ ପରିଚାରିକାଙ୍କ ଭାବଭଙ୍ଗୀରେ ମଧ୍ୟ ପରିବର୍ତ୍ତନ ଘଟିଛି। ଏହି ପ୍ରକାର କୃତିର ଉଦାହରଣ ଭୁବନେଶ୍ୱରର କପିଳେଶ୍ୱର ମନ୍ଦିର ପରିସରର ଏକ ମୂର୍ତ୍ତି, କୁଆଳୋ କନକେଶ୍ୱର ମନ୍ଦିରର ପାର୍ଶ୍ୱଦେବତା ପାର୍ବତୀ, ସେରଗଡ଼ର ପାର୍ବତୀ, ମାହାଙ୍ଗା ନିକଟ ଶୁକ୍ଳେଶ୍ୱରମନ୍ଦିର ପରିସରର ମୂର୍ତ୍ତି, ପଶ୍ଚିମଓଡ଼ିଶା ବେଲଖଣ୍ଡିର ପାର୍ବତୀ ମୂର୍ତ୍ତି ଓ ଓଡ଼ିଶା ଉପକଣ୍ଠ ମଧ୍ୟପ୍ରଦେଶର ପୂଜାରୀପାଲ୍ଲୀର ପାର୍ବତୀ ମୂର୍ତ୍ତିରେ ଦେଖିବାକୁମିଳେ।

ମଧ୍ୟଯୁଗୀୟ ବିକଶିତ କଳାଶୈଳୀର ପାର୍ଶ୍ୱଦେବତା ପାର୍ବତୀ ମୂର୍ତ୍ତିଗୁଡ଼ିକରେ ବହୁବିଧ ପରିବର୍ତ୍ତନ ଲକ୍ଷ୍ୟ କରଯାଏ। ଅଧିକାଂଶ ସ୍ଥଳେ ଦେବୀ ତ୍ରିଭଙ୍ଗରେ ଦଣ୍ଡାୟମାନ ହୋଇଥିବାବେଳେ ସମଭଙ୍ଗରେ ଦଣ୍ଡାୟମାନ ମୂର୍ତ୍ତିର ସଂଖ୍ୟା ଯଥେଷ୍ଟ କମ୍। ଚତୁର୍ଭୁଜା ଦେବୀ ହସ୍ତରେ ପୂର୍ବର ଜପମାଳା ଓ ପଦ୍ମ ବ୍ୟତୀତ ପାଶ ଓ ଅଙ୍କୁଶ କିମ୍ବା ପାଶ ଓ ତ୍ରିଶୂଳ ଧାରଣ କରିଥିବା ଦେଖାଯାଏ। ଦେବୀଙ୍କ ବେଶ ଭୂଷଣର ପରିବର୍ତ୍ତନ ମଧ୍ୟରେ ମସ୍ତକରେ ଜଟାମୁକୁଟ ପରିବର୍ତ୍ତେ କିରୀଟମୁକୁଟ ଏବଂ ପୂର୍ବର ସରଳ ବସ୍ତାଳଙ୍କାର ସ୍ଥାନରେ ରାଜକୀୟ ପରିଧାନ ଦେଖିବାକୁମିଳେ। ମଣ୍ଡନକୃତି ମଧ୍ୟରେ ଅଧିକାଂଶ ମୂର୍ତ୍ତି ପ୍ରଚ୍ଛଦରେ ମକରତୋରଣ, ନିମ୍ନରେ ଲତାଡ଼ାଳିଯୁକ୍ତ ବିଶ୍ୱପଦ୍ମାସନ, ଦୁଇ ପାର୍ଶ୍ୱରେ ବିଭିନ୍ନ ଭଙ୍ଗୀରେ ପରିଚାରିକା ଓ ବାଦକ, ବାଦିକାଙ୍କ ସହିତ, ଉର୍ଦ୍ଧ୍ୱରେ ଗନ୍ଧର୍ବ, ଅପ୍ସରାଙ୍କ ପିଢ଼ୁଳା ଏବଂ ସ୍ୱତନ୍ତ୍ର ଭଙ୍ଗୀର ଏକ ସିଂହମୂର୍ତ୍ତି ସ୍ଥାନିତ ହୋଇଥାଏ। ଏହି ପ୍ରକାର ଉଚ୍ଚକୋଟୀର ମୂର୍ତ୍ତି ମଧ୍ୟରେ ଭୁବନେଶ୍ୱର, ଲିଙ୍ଗରାଜ ମନ୍ଦିରର ପାର୍ଶ୍ୱଦେବୀ ନିଶା-ପାର୍ବତୀ ଓ ମନ୍ଦିର ପରିସରର ଅନ୍ୟ ଦୁଇଟି ମୂର୍ତ୍ତି। ଭୁବନେଶ୍ୱର ବାହାର ଅଳଗୁମ୍, ମଣିନାଗେଶ୍ୱର, ଗାରଡ଼ିପାଞ୍ଚଣର ବୃଦ୍ଧନାଥ ମନ୍ଦିର ପରିସର, ସାଲେପୁର ନିକଟ ବଟେଶ୍ୱର, ପ୍ରାଚୀନଦୀ ଅବବାହିକାର ଲତାହରଣ, ସୋମେଶ୍ୱର, ବୀରପ୍ରତାପପୁର, ଟାଙ୍ଗି ନିକଟ ଚଣ୍ଡେଶ୍ୱର ଓ ମୟୂରଭଞ୍ଜ ଜିଲ୍ଲା, ଖିଚିଂରେ ଦେଖିବାକୁ ମିଳେ। ଏହା ବ୍ୟତୀତ ବହୁ ମଧ୍ୟଯୁଗୀୟ ମୂର୍ତ୍ତି ବିଭିନ୍ନ ମନ୍ଦିର ଗାତ୍ରରେ ଓ ସ୍ଥାନରେ ରହିଛି।



ପାର୍ବତୀ: ରାଜେଶ୍ୱରୀମୂର୍ତ୍ତି
ଲିଙ୍ଗରାଜ ମନ୍ଦିର, ଭୁବନେଶ୍ୱର

ଲିଙ୍ଗରାଜ ମନ୍ଦିରର ପାର୍ଶ୍ୱଦେବୀ, ନିଶା-ପାର୍ବତୀଙ୍କ ପ୍ରତିମା ଅତ୍ୟନ୍ତ କମନୀୟ। ତ୍ରିଭଙ୍ଗରେ ଦଣ୍ଡାୟମାନ ଦେବୀଙ୍କ କ୍ଷୀଣ ତନୁରେ ଉଚ୍ଚକୋଟୀର କାରୁକଳାପୂର୍ଣ୍ଣ ବସ୍ତାଳଙ୍କାର ସମେତ ମୂର୍ତ୍ତିର ଉପସ୍ଥାପନାରେ ପୂର୍ବବର୍ଣ୍ଣିତ ସମସ୍ତ ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ। କ୍ଷୋଭର ବିଷୟ ଏହିକି, ଚତୁର୍ଭୁଜା ଦେବୀଙ୍କ ସମସ୍ତ ହସ୍ତ ଭଗ୍ନ। କଳା ମୁଗୁନିପଥରରେ ନିର୍ମିତ, ମସୃଣ ମୂର୍ତ୍ତିଟିର ଉଚ୍ଚତା ପ୍ରାୟ ୨.୮୦ମିଟର ଓ ପ୍ରସ୍ତ ପ୍ରାୟ ୧.୪୦ ମିଟର ଅଟେ। ପୂର୍ବ ସୂଚିତ ପାର୍ବତୀଙ୍କ ଦୁଇ ଶ୍ରେଣୀର ମୂର୍ତ୍ତି ଯଦି ତାଙ୍କର ଯୋଗେଶ୍ୱରୀ ଓ ମାହେଶ୍ୱରୀ ରୂପ ହୁଏ; ତେବେ, ଏହି ପ୍ରକାର ରାଜକୀୟ ପରିପାଟିର ପାର୍ବତୀଙ୍କୁ 'ରାଜେଶ୍ୱରୀ' କହିବା ସମୀଚୀନ ହେବ।

ପାର୍ବତୀଙ୍କ ଆସନମୂର୍ତ୍ତି ସାଧାରଣତଃ ବୃହଦାକାର ପୂଜିତ ପ୍ରତିମା କିମ୍ବା ମନ୍ଦିରଗାତ୍ରର ଆବରଣ ଦେବତାଙ୍କ ମଧ୍ୟର କ୍ଷୁଦ୍ର ପିଢ଼ୁଳା। ଲିଙ୍ଗରାଜମନ୍ଦିର ପରିସରର ଅଧିଷ୍ଠାତ୍ରୀ ଦେବୀ ପାର୍ବତୀ, ମନୁଷ୍ୟାକୃତି ଲଳିତଆସନ ମୂର୍ତ୍ତି ଅଟନ୍ତି। ଆବରଣଦେବତା ମୂର୍ତ୍ତି

ମଧ୍ୟରେ କେତେକ ସ୍ଥାନରେ ଦେବୀ ଯୋଗାସନରେ ଓ ଅନ୍ୟ କେଉଁଠି ଲଳିତାସନରେ ବସିଥିବା ଦେଖାଯାଏ। ଯୋଗାସନରେ ଥିବା ପାର୍ବତୀଙ୍କ ମୂର୍ତ୍ତି ଭୁବନେଶ୍ୱରର ପରଶୁରାମେଶ୍ୱର ମନ୍ଦିର, ବୈତାଳଦେଉଳ, ମୁକ୍ତେଶ୍ୱରମନ୍ଦିର, ଗଞ୍ଜାମ ଜିଲ୍ଲା ବଡ଼ଗାଁର ଶିବମନ୍ଦିର, ପୁରୀଜିଲ୍ଲା ବେଗବୋଇର ଶିବମନ୍ଦିର ଓ କୋରାପୁଟ୍ ଜିଲ୍ଲା ରାୟଗଡ଼ା ନିକଟ ପାଇକପଡ଼ାର ପାତାଳେଶ୍ୱରମନ୍ଦିରରେ ଦେଖିବାକୁମିଳେ। ପାର୍ବତୀଙ୍କ ଲଳିତାସନ ମୂର୍ତ୍ତି ଭୁବନେଶ୍ୱରର ବ୍ରହ୍ମେଶ୍ୱର ମନ୍ଦିର ଜଗମୋହନ ବାଡ଼ରେ ରହିଛି। ଏହାବ୍ୟତୀତ ପୁରୀଜିଲ୍ଲା ବେଗବୋଇର ଶିବମନ୍ଦିର, ବାଲେଶ୍ୱର ଜିଲ୍ଲାର କୁପାରୀ ଓ ସେରଗଡ଼, ରାୟଗଡ଼ା ନିକଟ ପଦ୍ମପୁରର ଶିବମନ୍ଦିର, ପଶ୍ଚିମଓଡ଼ିଶାର ଚରଦା ଓ ଆନ୍ଧ୍ରପ୍ରଦେଶର ମୁଖଲିଙ୍ଗମ୍‌ରେ ମଧ ଦେଖାଯାଏ।

ଓଡ଼ିଶାରେ କ୍ୱଚିତ୍ ଦେଖାଯାଉଥିବା ଏକ ଗୁରୁତ୍ୱପୂର୍ଣ୍ଣ ମୂର୍ତ୍ତି ହେଉଛି 'ପଞ୍ଚାଗ୍ନିତପରେ ପାର୍ବତୀ'। ପୂର୍ବସୂଚିତ କାଳିଦାସଙ୍କ 'କୁମାରସମ୍ଭବ' କାବ୍ୟ ଦ୍ୱାରା ପ୍ରଭାବିତ ଏହି ମୂର୍ତ୍ତିରେ ଯୋଗେଶ୍ୱରୀ ପାର୍ବତୀଙ୍କ ଉଭୟ ପାର୍ଶ୍ୱରୁ ପ୍ରତ୍ୟେକ ପାର୍ଶ୍ୱରେ ଦୁଇଟିକରି ଅଗ୍ନିଶିଖା ଦେଖାଯାଏ। ଏହା ତପସ୍ୟାବେଳେ ଦେବୀଙ୍କ ଚତୁଃପାର୍ଶ୍ୱରେ ଥିବା ଅଗ୍ନିକୁ ସଂକେତ କରୁଥିବାବେଳେ ଊର୍ଦ୍ଧ୍ୱରେ ଥିବା ସୂର୍ଯ୍ୟାଗ୍ନିର ପ୍ରତୀକ ଭାବେ କେତେକ ମୂର୍ତ୍ତିର ଉପରଭାଗରେ ଏକ ପଦ୍ମ ସ୍ଥାନିତ ହୋଇଥାଏ। କାରଣ ପଦ୍ମ ସୂର୍ଯ୍ୟଙ୍କ ସଙ୍କେତ ଅଟେ। ପାର୍ବତୀଙ୍କ ଏହି ପ୍ରକାର ସ୍ଥାନକମୂର୍ତ୍ତି ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ଓ ମେଘେଶ୍ୱର ମନ୍ଦିରର ଆବରଣଦେବୀଙ୍କ ମଧ୍ୟରେ ରହିଛି। ଉତ୍ତରଭାରତରେ ଏହି ପ୍ରକାର କୃତି ବହୁ ସଂଖ୍ୟାରେ ଦେଖିବାକୁମିଳେ।



ପଞ୍ଚାଗ୍ନିତପରେ ପାର୍ବତୀ, ମେଘେଶ୍ୱର ମନ୍ଦିର, ଭୁବନେଶ୍ୱର

ଉକ୍ତପ୍ରଦେଶର ପ୍ରଖ୍ୟାତ ଶୈବତୀର୍ଥ ଭୁବନେଶ୍ୱରର କ୍ଷେତ୍ରଦେବତା ଲିଙ୍ଗରାଜ ପୂର୍ବରୁ ବିଭିନ୍ନ ନାମରେ ନାମିତ ହୋଇଥିବାବେଳେ ସର୍ବଶେଷରେ ସେ ଲିଙ୍ଗରାଜଭାବେ ଖ୍ୟାତ ହୋଇଛନ୍ତି। ଅର୍ଥାତ୍ ପ୍ରଭୁ ଲିଙ୍ଗ ମଧ୍ୟରେ ରାଜା ଅଟନ୍ତି। ଏହି ପରିପ୍ରେକ୍ଷୀରେ ସମସାମୟିକ ପାର୍ବତୀ ମୂର୍ତ୍ତିଗୁଡ଼ିକ ରାଜକୀୟ ପରିପାଟୀରେ ନିର୍ମିତ ହୋଇଥିବା ସ୍ୱାଭାବିକ। ତେବେ, ଓଡ଼ିଶାର ପ୍ରାରମ୍ଭ ପର୍ଯ୍ୟାୟ ମୂର୍ତ୍ତିରେ ପାର୍ବତୀଙ୍କ ପ୍ରଥମ ଅବସ୍ଥା ଯୋଗେଶ୍ୱରୀ ରୂପ, ଦ୍ୱିତୀୟରେ ବିବାହିତା ଗୌରୀ ତଥା ମହେଶ୍ୱରଙ୍କ ପତ୍ନୀ, ମାହେଶ୍ୱରୀ ରୂପ ଏବଂ ଅନ୍ତିମ ପର୍ଯ୍ୟାୟରେ ଦେବୀଙ୍କ ସର୍ବଶ୍ରେଷ୍ଠ 'ରାଜେଶ୍ୱରୀ'ରୂପ ଉପସ୍ଥାପିତ ହୋଇଥିବା ଦେଖାଯାଏ। କଳିଙ୍ଗର ମୂର୍ତ୍ତିକଳାରେ ସମୟାନୁକ୍ରମେ ପାର୍ବତୀଙ୍କ କ୍ରମାନ୍ୱୟ ରୂପର ବିକାଶ କୌତୂହଳପୂର୍ଣ୍ଣ। ଅନ୍ୟଭାବରେ ଦେଖାଯାଏ ଯେ, ପ୍ରଥମ ପର୍ଯ୍ୟାୟର ଶିବମନ୍ଦିରଗୁଡ଼ିକ ମୁଖ୍ୟତଃ ପାଶୁପତ ଶୈବ ସନ୍ୟାସୀମାନଙ୍କ ପ୍ରଚେଷ୍ଟା ଓ ପ୍ରେରଣାରେ ନିର୍ମିତ ହୋଇଥିବାରୁ ଏଗୁଡ଼ିକରେ ପାର୍ବତୀଙ୍କ ତାପସୀରୂପକୁ ଗୁରୁତ୍ୱ ଦିଆଯାଇଥିବାବେଳେ ପରବର୍ତ୍ତୀ ସମୟର ମନ୍ଦିରଗୁଡ଼ିକ ସର୍ବସାଧାରଣ ଓ ରାଜପୃଷ୍ଠପୋଷକତାରେ ଗଢ଼ି ଉଠିଥିବାରୁ ଏଥିରେ ଦେବୀଙ୍କ ମାହେଶ୍ୱରୀ ଏବଂ ରାଜେଶ୍ୱରୀ ରୂପ ଉପସ୍ଥାପିତ ହୋଇଥିବା ସ୍ୱାଭାବିକ।



# ମହିଷମର୍ଦ୍ଦିନୀ

ମହିଷାସୁର ସହିତ ଯୁଦ୍ଧରେ ରତଥିବା ଅର୍ଥାତ୍, ମହିଷାସୁରକୁ ବଧକରୁଥିବା ଦୁର୍ଗା 'ମହିଷମର୍ଦ୍ଦିନୀ' ଭାବେ ଖ୍ୟାତ। ବହୁପ୍ରାଚୀନ କାଳରୁ ମହିଷମର୍ଦ୍ଦିନୀଙ୍କ ପୂଜା ପ୍ରଚଳିତ ଥିବା ପ୍ରତ୍ନାବଶେଷମାନଙ୍କରୁ ପ୍ରମାଣିତ ହୁଏ। ସିନ୍ଧୁସଭ୍ୟତାର କେତେକ କୃତିରେ ଏହାର ଆଦ୍ୟ ଆଭାସ ରହିଥିବାବେଳେ ଖ୍ରୀ:ପୂ. ୨ୟ-୧ମ ଶତାବ୍ଦୀର କେତେକ ପୋଡ଼ାମାଟି କୃତିରେ ଜଣେ ନାରୀ ଗୋଟିଏ ମହିଷକୁ ବଧ କରୁଥିବା ସ୍ପଷ୍ଟମୂର୍ତ୍ତି ଦେଖିବାକୁମିଳେ। ଗୁପ୍ତଯୁଗରେ ରଚିତ ମାର୍କଣ୍ଡେୟ ପୁରାଣର ଦେବୀମହାତ୍ମ୍ୟରେ ମହିଷାସୁର ଆଖ୍ୟାନର ବିସ୍ତୃତ ବର୍ଣ୍ଣନା ପରେ ଭାରତର ବିଭିନ୍ନ ପ୍ରାନ୍ତରେ ମାର୍ଜିତ ରୂପରେ ଦେବୀଙ୍କ ପୂଜାର ବିକାଶ ଘଟିଥିଲା। କିନ୍ତୁ, ଏହା ପୂର୍ବରୁ କେତେକ ଜନଜାତି ମଧ୍ୟରେ ଲୋକଦେବୀ ଭାବେ ମହିଷମର୍ଦ୍ଦିନୀଙ୍କ ପୂଜା ପ୍ରଚଳିତଥିବା ଉପରୋକ୍ତ ପ୍ରତ୍ନାବଶେଷରୁ ପ୍ରମାଣିତ ହୁଏ। ପୋଡ଼ାମାଟି ବ୍ୟତୀତ ପଥର ନିର୍ମିତ ଏହିପ୍ରକାର କେତୋଟି ଛୋଟ, ସରଳ ପ୍ରତିମା ଉତ୍ତରଭାରତର ବିଭିନ୍ନ ସ୍ଥାନରୁ ଉଦ୍ଧାର କରାଯାଇ ମଥୁରା, ଲକ୍ଷ୍ନୌ ସଂଗ୍ରହାଳୟ ଓ ଭାରତ ବାହର ବ୍ରିଟିଶ୍ ସଂଗ୍ରହାଳୟରେ ରଖାଯାଇଛି। ତେବେ, ବିକଶିତ କଳାଶୈଳୀରେ ମହିଷାସୁରମର୍ଦ୍ଦିନୀ ପ୍ରତିମାଗୁଡ଼ିକ ଭାରତର ବିଭିନ୍ନ ପ୍ରାନ୍ତରେ ଖ୍ରୀ: ୪ର୍ଥ-୫ମ ଶତାବ୍ଦୀ, ଅର୍ଥାତ୍ ଗୁପ୍ତଯୁଗରୁ ସୃଷ୍ଟିହୋଇଥିବା ଜଣାଯାଏ।

ଓଡ଼ିଶାରେ ଯାଜପୁରର ଅଧିଷ୍ଠାତ୍ରୀ ଦେବୀ ବିରଜା ମହିଷମର୍ଦ୍ଦିନୀ ଦୁର୍ଗା ଅଟନ୍ତି। ଐତିହାସିକ ତଥ୍ୟ ତଥା ମୂର୍ତ୍ତିର କଳାଶୈଳୀ ଅନୁଧ୍ୟାନ କରି ବିଦ୍ୱାନମାନେ ମତ ଦିଅନ୍ତି ଯେ, ବିରଜା ଓଡ଼ିଶାର ପ୍ରାଚୀନତମ ଦୁର୍ଗା ପ୍ରତିମା। ସମୁଦ୍ରଗୁପ୍ତଙ୍କ ଦାକ୍ଷିଣାତ୍ୟ ବିଜୟବେଳେ ଉତ୍ତରଭାରତର କାନ୍ୟକୁବ୍ଜ ତଥା ଅନ୍ୟସ୍ଥାନରୁ ବହୁ ବ୍ରାହ୍ମଣ ଆସି ଯାଜପୁରରେ ବସବାସ କରିଥିଲେ। ସେହି ସମୟରେ କୌଣସି ଭକ୍ତଙ୍କ ଦ୍ୱାରା ଏହି ପ୍ରତିମାଟି ନିର୍ମିତ କିମ୍ବା ଆନିତବୋଲି ଅନୁମାନ କରାଯାଏ। ତେବେ, କେତେକଙ୍କ ମତରେ ମୂଳପ୍ରାଚୀନ ମୂର୍ତ୍ତିଟି କୌଣସି ସମୟରେ ଭାଙ୍ଗିପଡ଼ିବାରୁ ପରବର୍ତ୍ତୀ ପର୍ଯ୍ୟାୟରେ ଅନୁରୂପ ଏକ ପ୍ରତିମା ନିର୍ମାଣ କରାଯାଇ ସେହି ସ୍ଥାନରେ ପୂଜାର୍ଚ୍ଚନା କରଯାଉଛି। ଯାହାହେଉ ବିରଜାଙ୍କ ମୂର୍ତ୍ତି ଏକ ବିରଳ କୃତି କହିଲେ ଅତ୍ୟୁକ୍ତ ହେବନାହିଁ। ଏହି ରଚନାରେ ଦେବୀ ଦ୍ୱିଭୁଜା ଏବଂ ଅସୁର ସମ୍ପୂର୍ଣ୍ଣ ମହିଷ ଅର୍ଥାତ୍, ପଶୁରୂପରେ ଦେଖାଯାଏ। ଏଠାରେ ଭୂମିରେ ମୁଁହମାଡ଼ି ପଡ଼ିଥିବା ମହିଷର ପୁଚ୍ଛକୁ ଦେବୀ ବାମହସ୍ତରେ ଧରି ଦକ୍ଷିଣହସ୍ତର ଶୂଳରେ ତା'ର ପୃଷ୍ଠ ଭେଦ କରୁଛନ୍ତି। ଏହି କୃତିଟିର ବିଶେଷତ୍ୱ ହେଉଛି, ଦେବୀଙ୍କ ମସ୍ତକର ମୁକୁଟ। ଏହି ମୁକୁଟରେ ସନ୍ନିବେଶିତ ହୋଇଥିବା ପଞ୍ଚଦେବତା ହେଉଛନ୍ତି; ଗଣେଶ, ଶକ୍ତିଚକ୍ର ସହ ଶିବଲିଙ୍ଗ, ନାଗ ଓ ଚନ୍ଦ୍ର। ଏହି ପ୍ରକାର ମୂର୍ତ୍ତି ଭାରତର କୁତ୍ରାପି ଦେଖାଯାଏ ନାହିଁ। ସରଳ ଓ ନିରାଡ଼ମ୍ବର ଶୈଳୀମୂର୍ତ୍ତିଟିର ଉଚ୍ଚତା ପ୍ରାୟ ୦.୫୦ ମିଟର ଅଟେ। ବିରଜାଙ୍କ ବ୍ୟତୀତ ଓଡ଼ିଶାର ମନ୍ଦିର ମୂର୍ତ୍ତିକଳାରେ ଦ୍ୱିଭୁଜା ମହିଷମର୍ଦ୍ଦିନୀ ଓ ସମ୍ପୂର୍ଣ୍ଣ ମହିଷରୂପର ଅସୁର କ୍ୱଚିତ୍ ଦେଖାଯାଏ। ଏହି ମୂର୍ତ୍ତିର ଅନୁସରଣରେ ପରବର୍ତ୍ତୀ ସମୟରେ ନିର୍ମିତ କେତୋଟି ପ୍ରତିମା ମଧ୍ୟରେ ଭୁବନେଶ୍ୱର ମାର୍କଣ୍ଡେଶ୍ୱର ମନ୍ଦିର ରାହାପାଗରେ ଥିବା ଏକ ମୂର୍ତ୍ତି, ମାହାଙ୍ଗା ନିକଟ ଶୁକ୍ଲେଶ୍ୱର ମନ୍ଦିର, ଟାଙ୍ଗିର ଚଣ୍ଡେଶ୍ୱରମନ୍ଦିର ଓ ଭୁବନେଶ୍ୱର ନିକଟ ଭଗ୍ନ ବୁଦ୍ଧନାଥ ମନ୍ଦିର, ଗାରଡ଼ିପାଞ୍ଚଣର ଏକ ମୂର୍ତ୍ତି ଉଲ୍ଲେଖଯୋଗ୍ୟ।

ପ୍ରାରମ୍ଭ ସମୟର ଦ୍ୱିଭୁଜା ପ୍ରତିମା ବ୍ୟତୀତ ଓଡ଼ିଶାରେ ଖ୍ରୀ: ୬ଷ୍ଠ ଶତାବ୍ଦୀ ଠାରୁ ଖ୍ରୀ: ୧୫ଶ ଶତାବ୍ଦୀ ମଧ୍ୟରେ ମହିଷମର୍ଦ୍ଦିନୀଙ୍କ ଚର୍ତୁଭୁଜା ଠାରୁ ଦ୍ୱାଦଶଭୁଜା ପ୍ରତିମା ସହିତ ମହିଷାସୁରକୁ ପ୍ରାୟ ତିନି ପ୍ରକାର ରୂପରେ ପରିକଳ୍ପନା କରାଯାଇଛି । ଏହା ମଧ୍ୟରେ ଅସୁର ସମ୍ପୂର୍ଣ୍ଣ ମହିଷ ଅର୍ଥାତ୍ ପଶୁ ରୂପରେ, ଦ୍ୱିତୀୟ ଶୈଳୀରେ ଅସୁରର ମନୁଷ୍ୟ ଶରୀର ଓ ମହିଷମସ୍ତକ ଏବଂ ତୃତୀୟରେ ମସ୍ତକ ଛେଦିତ ମହିଷ ଦେହରୁ ମନୁଷ୍ୟରୂପୀଅସୁରର ଆର୍ବିଭାବ । ତେବେ, ଏହିସବୁ ପ୍ରତିମାବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଶିଳ୍ପୀଙ୍କ ଦ୍ୱାରା ବିଭିନ୍ନ ଶୈଳୀରେ ନିର୍ମିତ । ସମ୍ପୂର୍ଣ୍ଣ ମହିଷ ରୂପରେ ଥିବା ଅସୁରର ପରିକଳ୍ପନା ଅଳ୍ପ କେତେକ ମନ୍ଦିରର ଆବରଣଦେବତାଭାବେ ଉତ୍କୀର୍ଣ୍ଣ ହୋଇଥିବା ମହିଷମର୍ଦ୍ଦିନୀ ପ୍ରତିମା ସହିତ ଦେଖିବାକୁମିଳେ । ଦ୍ୱିତୀୟ ଶୈଳୀ ଅର୍ଥାତ୍ ମହିଷମସ୍ତକ ଓ ମନୁଷ୍ୟ ଶରୀରର ଅସୁର ମୂର୍ତ୍ତି ଥିବା ଦେବୀଙ୍କ ରଚନାଗୁଡ଼ିକ ସାଧାରଣତଃ ଶୈଳୋଦ୍‌ଭବ ରାଜତ୍ୱ ସମୟ ଅର୍ଥାତ୍, ଖ୍ରୀ: ୬ଷ୍ଠ-୮ମ ଶତାବ୍ଦୀ ମଧ୍ୟରେ ଅଧିକ ଲୋକପ୍ରିୟ ହୋଇଥିଲା । ଏହିପ୍ରକାର ରଚନାଗୁଡ଼ିକ ସେ ସମୟରେ ନିର୍ମିତ ଅନେକ ମନ୍ଦିରର ରାହାପାଗ ଉପରେ ଥିବା ଚୈତ୍ୟପଦକ ମଧ୍ୟରେ କିମ୍ବା ଖୋଲାଭାବେ ନିର୍ମିତ କେତେକ ମୂର୍ତ୍ତିରେ ଦେଖିବାକୁମିଳେ । ତୃତୀୟ ଶୈଳୀ ଅର୍ଥାତ୍, ମସ୍ତକ ଛିନ୍ନ ହୋଇଥିବା ମଣିଷ ଦେହରୁ ମନୁଷ୍ୟରୂପୀ ଅସୁରର ଆର୍ବିଭାବ ରଚନାଗୁଡ଼ିକ ପ୍ରଥମେ ଖ୍ରୀ: ୮ମ-୧୦ମ ଶତାବ୍ଦୀ ମଧ୍ୟରେ ପଶ୍ଚିମଓଡ଼ିଶାର କେତେକ କୃତିରେ ରହିଛି । ପରବର୍ତ୍ତୀ ସମୟ ଅର୍ଥାତ୍, ସୋମବଂଶୀ ରାଜତ୍ୱ ସମୟରେ ଏହି ଶୈଳୀ ଓଡ଼ିଶାର ଉପକୂଳ ଅଞ୍ଚଳରେ ବେଶ୍ ଲୋକପ୍ରିୟ ହୋଇଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ ଅସୁରର ଏହି ରୂପ ଗଙ୍ଗସମୟରେ ନିର୍ମିତ ଉନ୍ନତ କଳାଶୈଳୀର ମହିଷମର୍ଦ୍ଦିନୀଙ୍କ ପ୍ରତିମାରେ ପ୍ରାଧାନ୍ୟ ଲାଭ କରିଥିବା ଲକ୍ଷ୍ୟ କରାଯାଏ ।

ମହିଷମର୍ଦ୍ଦିନୀଙ୍କ ସହିତ ଅସୁରର ଦ୍ୱିତୀୟ ପ୍ରକାର ରୂପଥିବା କୃତିଗୁଡ଼ିକ ଭୁବନେଶ୍ୱରର ପ୍ରାଚୀନ ମନ୍ଦିର ଯଥା; ପରଶୁରାମେଶ୍ୱର, ବୈତାଳଦେଉଳ, ଶିଶିରେଶ୍ୱର ଓ ଉତ୍ତରେଶ୍ୱର ସମେତ ବିନ୍ଦୁସାଗରର ପୂର୍ବ ଓ ପଶ୍ଚିମ ତୀରରେ ରହିଥିବା କେତେକ ଖୋଲାମୂର୍ତ୍ତିରେ ଦେଖାଯାଏ । ଭୁବନେଶ୍ୱର ବାହାରେ ଥିବା ସିଂହନାଥ, ମାହାଙ୍ଗା ନିକଟ ଶୁକ୍ଳେଶ୍ୱର, କୁଆଳୋର କନକେଶ୍ୱର ମନ୍ଦିର, ବାଲେଶ୍ୱର ଜିଲ୍ଲାର ବେଣୁସାଗର, ଭଦ୍ରକ ନିକଟ ଅଭଣା, ଜଗତ୍‌ସିଂହପୁର ନିକଟ କୁଣ୍ଡେଶ୍ୱର, ପୁରୀ ଜିଲ୍ଲାର ଅସ୍ତରଙ୍ଗରେ ଥିବା ଦୁର୍ଗାଙ୍କ ସହିତ ଏହି ପ୍ରକାର ମହିଷାସୁରମୂର୍ତ୍ତି ରହିଛି । କଟକ ଜିଲ୍ଲାର ଧର୍ମଶାଳାଠାରୁ ସଂଗୃହୀତ, ରାଜ୍ୟ ସଂଗ୍ରହାଳୟର ଏକ ପ୍ରାଚୀନ ମହିଷମର୍ଦ୍ଦିନୀ ମୂର୍ତ୍ତିର ଅସୁର ମଧ୍ୟ ଏହି ଶୈଳୀର ଅଟେ ।



ମହିଷମର୍ଦ୍ଦିନୀ,
ପରଶୁରାମେଶ୍ୱର ମନ୍ଦିର,
ଭୁବନେଶ୍ୱର

ଦ୍ୱିତୀୟ ପ୍ରକାର ଅସୁରର ରୂପ ଅର୍ଥାତ୍, ଛିନ୍ନମସ୍ତକ ମହିଷ ଶରୀରରୁ ମନୁଷ୍ୟରୂପି ଅସୁରର ଆର୍ବିର୍ଭାବ ଭୁବନେଶ୍ୱରର କ୍ୱଚିତ୍ ମୂର୍ତ୍ତିରେ ଦେଖାଯାଏ। ଏହିପରି ଏକ ପ୍ରତିମା ଲିଙ୍ଗରାଜମନ୍ଦିର ପରିସରରେ ରହିଥିବାବେଳେ ଅନ୍ୟ ଦୁଇଟି ମୂର୍ତ୍ତି ଭୁବନେଶ୍ୱର ନିକଟ କଳାରାହାଙ୍ଗର ଜଳେଶ୍ୱର ମନ୍ଦିର ଓ ଗାରେଡ଼ିପାଞ୍ଚଣର ବୁଦ୍ଧନାଥ ମନ୍ଦିର ପରିସରରେ ରହିଛି। ଏହା ବ୍ୟତୀତ କଟକ ଓ ପୁରୀଜିଲ୍ଲା ଦେଇ ପ୍ରବାହିତ ହୋଇଥିବା ପ୍ରାଚୀନଦୀ ଅବବାହିକାର ଲତାହରଣ, ନିଆଳିର ଶୋଭନେଶ୍ୱର, ମୋଟିଆ, ପିତାପଡ଼ା, ଆମ୍ଭାପଡ଼ା ଓ ଅଡ଼ଶପୁର ଭଳି ଅନେକ ସ୍ଥାନରେ ଏହି ପ୍ରକାର ରଚନା ଦେଖାଯାଏ। ଅନ୍ୟ ସ୍ଥାନର ଏହି ପ୍ରକାର କୃତି ମଧ୍ୟରେ ବୈଦ୍ୟେଶ୍ୱର ସିଂହନାଥ ମନ୍ଦିର, ସାଲେପୁର ନିକଟ ବଟେଶ୍ୱର, ମାହାଙ୍ଗା ନିକଟ ଶୁକ୍ଲେଶ୍ୱର, ଗଞ୍ଜାମର ବଡ଼ଗାଁ, ରାୟଗଡ଼ା ନିକଟ ପଦ୍ମପୁର ଓ ପାଇକପଡ଼ା, ମୟୂରଭଞ୍ଜ ଜିଲ୍ଲାର ଖିଚିଂ, ପେଡ଼ାଗଡ଼ି ଓ ବାରିପଦା, ବରଗଡ଼ ନିକଟ ପାଇକମାଳ, କେନ୍ଦୁଝର ଜିଲ୍ଲାର କୋଶଳେଶ୍ୱର ମନ୍ଦିରରେ ଦେଖିବାକୁମିଳେ।

ମହିଷମର୍ଦ୍ଦିନୀ ଦୁର୍ଗାଙ୍କ ହସ୍ତସଂଖ୍ୟା ବୃଦ୍ଧି ମୂର୍ତ୍ତିତତ୍ତ୍ୱ ଅଧ୍ୟୟନରେ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ଅଟେ। କ୍ୱଚିତ୍ ଦେଖାଯାଉଥିବା ଦେବୀଙ୍କ ଦ୍ୱିଭୁଜ ପ୍ରତିମାର ସୂଚନା ପୂର୍ବରୁ ଦିଆଯାଇଛି। ସେହିପରି ଦେବୀଙ୍କ ଚର୍ତୁଭୁଜ ମୂର୍ତ୍ତିର ସଂଖ୍ୟା ମଧ ଯଥେଷ୍ଟ କମ୍। ଅଳ୍ପ କେତେକ ପ୍ରାଚୀନ ଶୈଳୀର ଏହି ପ୍ରକାର ମୂର୍ତ୍ତି ମନ୍ଦିର ଗାତ୍ରରେ ରହିଥିବାବେଳେ ଖ୍ରୀ: ୧୦ମ-୧୨ଶ ଶତାବ୍ଦୀ ମଧ୍ୟରେ ସ୍ୱତନ୍ତ୍ର ଶୈଳୀର କେତୋଟି ଅର୍ଚ୍ଚାବିଗ୍ରହ କଟକ, ପୁରୀଜିଲ୍ଲାର ଉପକୂଳ ଅଞ୍ଚଳରେ ନିର୍ମିତ ହୋଇଥିବା ଜଣାଯାଏ। ମନ୍ଦିର ଗାତ୍ରର ଚର୍ତୁଭୁଜ ମହିଷମର୍ଦ୍ଦିନୀଙ୍କ ମଧ୍ୟରେ ଭୁବନେଶ୍ୱର, ଲକ୍ଷ୍ମଣେଶ୍ୱର ମନ୍ଦିରର ଏକ ଭଗ୍ନ କୃତି, ମାର୍କଣ୍ଡେଶ୍ୱର ମନ୍ଦିର, ଭୁବନେଶ୍ୱର ନିକଟ ଗାରେଡ଼ିପାଞ୍ଚଣର ବୁଦ୍ଧନାଥ ମନ୍ଦିର ଓ କୋଣାର୍କ ନିକଟ ବୟାଳିଶିବାଟୀର ଗଙ୍ଗେଶ୍ୱରୀମନ୍ଦିର ନିକଟ ଏକ ପ୍ରତିମା ଉଲ୍ଲେଖଯୋଗ୍ୟ। ପୂଜିତ ଚର୍ତୁଭୁଜା ମୂର୍ତ୍ତିଗୁଡ଼ିକ ମଧ୍ୟରେ ଦେବୀ ଉପର ଦୁଇ ହସ୍ତରେ ଦୁଇଟି ଆୟୁଧ ଧାରଣ କରିବା ସହ ମୁଖ୍ୟ ଦୁଇ ହସ୍ତରେ ତ୍ରିଶୂଳକୁ ସଳଖଭାବେ ଧାରଣ କରି ଅସୁର ବକ୍ଷରେ ଭେଦ କରୁଥିବା ଦେଖାଯାଏ। ଅନ୍ୟ ମହିଷମର୍ଦ୍ଦିନୀଙ୍କ ଭଙ୍ଗୀରେ ବିଭିନ୍ନଭାବେ ବକ୍ରତା ରହିଥିବାବେଳେ ଏହି ପ୍ରକାର ରଚନାରେ ଦେବୀଙ୍କ ଊର୍ଦ୍ଧ୍ୱଭାଗ ଦୃଢ଼ ସମଭଙ୍ଗରେ ଥାଏ। ପ୍ରାଚୀନଦୀ ଅବବାହିକାର ମୋଟିଆଠାରେ ଥିବା ଦୁର୍ଗାମନ୍ଦିରର ଏହି ପ୍ରକାର ପୂଜିତ ପ୍ରତିମା ସ୍ପଷ୍ଟ ବୈଷ୍ଣବ ଧର୍ମଧାରାର ପ୍ରଭାବରେ ନିର୍ମିତ ହୋଇଥିବା ଜଣାଯାଏ। ଏଠାରେ ଦେବୀ ଉପର ଦୁଇ ହସ୍ତରେ ଶଙ୍ଖ ଓ ଚକ୍ର ଧାରଣ କରିଛନ୍ତି। କୋଣାର୍କ ନିକଟ ବୟାଳିଶିବାଟୀର ପ୍ରତିମାରେ ତନ୍ତ୍ରର ପ୍ରଭାବ ଯୋଗୁ ଦେବୀଙ୍କ ସେହି ଉପରହସ୍ତ ଦ୍ୱୟରେ ମଶାଲ ଓ ଘଣ୍ଟା ଦେଖାଯାଏ। ଏହି ଶୈଳୀରେ ଚର୍ତୁଭୁଜା ବିଗ୍ରହ କୋଣାର୍କ ନିକଟ ରାମଚଣ୍ଡୀ ଠାରେ ଓ ଖୋର୍ଦ୍ଧା ନିକଟ ବଳପୁରର ଦୁର୍ଗା ମନ୍ଦିରରେ ମଧ ପୂଜା ପାଉଛନ୍ତି। ଢେଙ୍କାନାଳର କପିଳାସ ପର୍ବତ ଉପରେଥିବା ମହିଷମର୍ଦ୍ଦିନୀ ଶଙ୍ଖ, ଚକ୍ର ଓ ତ୍ରିଶୂଳ ଧାରଣ କରିଥିବା ଚର୍ତୁଭୁଜା ପ୍ରତିମା ହେଲେହେଁ ଦେବୀ ବକ୍ର ଭଙ୍ଗୀରେ ଉଭା ହୋଇଛନ୍ତି। ଏହା ଖ୍ରୀ: ୧୪ଶ ଶତାବ୍ଦୀର କୃତିବୋଲି ଜଣାଯାଏ।

ଅଳ୍ପ କେତେକ ଷଡ଼ଭୁଜା ମହିଷମର୍ଦ୍ଦିନୀ ପ୍ରତିମା ଖ୍ରୀ: ୭ଷ-୮ମ ଶତାବ୍ଦୀ ମଧ୍ୟରେ ପରିକଳ୍ପନା କରାଯାଇଥିବା ଜଣାଯାଏ। ଏହିପରି ଏକ କୃତି ଭୁବନେଶ୍ୱରର ପରଶୁରାମେଶ୍ୱର ମନ୍ଦିର ଗଣ୍ଡିର ରାହାପାଗରେ ଥିବା ଏକ ଚୈତ୍ୟପଦକ ମଧ୍ୟରେ ଦେଖିବାକୁମିଳେ। କିଞ୍ଚିତ୍ ପରବର୍ତ୍ତୀ ଶତାବ୍ଦୀରେ ନିର୍ମିତ ଅନ୍ୟ ଦୁଇଟି କୃତି ମଧ୍ୟରୁ ଗୋଟିଏ ଏଠାକାର ଉତ୍ତରେଶ୍ୱର ମନ୍ଦିର ଗାତ୍ରରେ ଓ ଅନ୍ୟଟି ବିନ୍ଦୁସାଗରର ପୂର୍ବ କୂଳରେ ଥିବା ଏକ ଆଧୁନିକ ମନ୍ଦିର ଦେହରେ ସ୍ଥାନିତ ହୋଇଛି। ଏହା ବ୍ୟତୀତ

ମହାନଦୀ ଟାପୁରେ ଥିବା ସିଂହନାଥ ମନ୍ଦିର ଗାତ୍ରର ଏକ ମୂର୍ତ୍ତି ଏବଂ ଅସ୍ତରଙ୍ଗରେ ଖୋଲାଭାବେ ଥିବା ଏକ ମୂର୍ତ୍ତି ମଧ ଷଡ଼ଭୁଜା ଅଟନ୍ତି । ପରଶୁରାମେଶ୍ୱର ମନ୍ଦିରର ପ୍ରାଚୀନ ଶୈଳୀ ଖର୍ବକାୟ ଦେବୀଙ୍କ ଷଡ଼ଭୁଜରୁ ଦକ୍ଷିଣପାର୍ଶ୍ୱ ହସ୍ତଗୁଡ଼ିକରେ ଖଡ୍ଗ, ଅସୁରର ବକ୍ଷ ଭେଦକରୁଥିବା ତ୍ରିଶୂଳ ଓ ଏକ ଲମ୍ବ ଛୁରୀକା ରହିଛି । ବାମହସ୍ତଗୁଡ଼ିକରୁ ଦୁଇ ହସ୍ତରେ ଦେବୀ ଢ଼ାଲ ଓ ଧନୁ ଧାରଣ କରି ତୃତୀୟ ହସ୍ତରେ ଅସୁରର ମୁଖକୁ ଚାପ ଦେଉଛନ୍ତି । ଏହି ମୂର୍ତ୍ତିରେ ଦେବୀଙ୍କ ବାହନ ସିଂହ ଅନୁପସ୍ଥିତ ଥିବାବେଳେ ଜଣେ ଗଣ ଏକ ବର୍ଚ୍ଛଦ୍ୱାରା ବାମ ପାର୍ଶ୍ୱରୁ ଅସୁରକୁ ଆଘାତ କରୁଥିବା ଦେଖାଯାଏ । ମହିଷାସୁରର ଏଠାରେ ମନୁଷ୍ୟ ଶରୀର ଓ ମହିଷ ମସ୍ତକ ଅଟେ ।

ଅଷ୍ଟଭୁଜା ମହିଷମର୍ଦ୍ଦିନୀ ମୂର୍ତ୍ତିଗୁଡ଼ିକ ପ୍ରାୟତଃ ଖ୍ରୀ: ୮ମ-୯ମ ଶତାବ୍ଦୀ ଓ ତା'ର ପରବର୍ତ୍ତୀ ସମୟରେ ବେଶ୍ ଲୋକପ୍ରିୟ ହୋଇଥିଲା । ବିଭିନ୍ନ ସମୟରେ ନିର୍ମିତ ଭିନ୍ନ ଭିନ୍ନ କଳାଶୈଳୀର ଏହି ପ୍ରକାର ମୂର୍ତ୍ତିସଂଖ୍ୟା ସର୍ବାଧିକ । ଭୁବନେଶ୍ୱରର ପ୍ରଖ୍ୟାତ ଚାମୁଣ୍ଡାଦେବୀ ମନ୍ଦିର, ବୈତାଳଦେଉଳ ନାମରେ ପରିଚିତ । ଏହାର ଉତ୍ତର ପାର୍ଶ୍ୱ ବାଡ଼ରେ ପାର୍ଶ୍ୱଦେବୀ ଭାବେ ସ୍ଥାନିତ ଏହି ପ୍ରକାର ମହିଷମର୍ଦ୍ଦିନୀ ମୂର୍ତ୍ତିଟି କଳିଙ୍ଗ ମୂର୍ତ୍ତିକଳାର ଏକ ଉଲ୍ଲେଖଯୋଗ୍ୟ କୃତି । ସୁନ୍ଦର ଅଙ୍ଗଭଙ୍ଗୀରେ ଥିବା ଦେବୀ ବିଭିନ୍ନ ବସ୍ତ୍ରାଳଙ୍କାରରେ ବିଭୂଷିତା । ତା'ଙ୍କ ଅଷ୍ଟଭୁଜରୁ ଦକ୍ଷିଣ ହସ୍ତଗୁଡ଼ିକରେ ଯଥାକ୍ରମେ; ଖଡ୍ଗ, ଚକ୍ର, ଅସୁରର ବକ୍ଷଭେଦ କରୁଥିବା ତ୍ରିଶୂଳ ଏବଂ ଗଦା (?) ରହିଥିବାବେଳେ ବାମହସ୍ତଗୁଡ଼ିକରେ ଦେବୀ ଢ଼ାଲ, ଧନୁ ଓ ସର୍ପ ଧାରଣକରି ମୁଖ୍ୟହସ୍ତରେ ମହିଷାସୁରର ମୁଖକୁ ଚାପ ଦେଉଛନ୍ତି । ଏହା ବ୍ୟତୀତ ଦେବୀଙ୍କ ବାମସ୍କନ୍ଧରେ ଏକ ଶରପୂର୍ଣ୍ଣ ତୂଣୀର ରହିଛି । ଏଠାରେ ମନୁଷ୍ୟ ଶରୀର ଓ ମହିଷମସ୍ତକ ଯୁକ୍ତ ଅସୁର ଦେହରେ ଜନଜାତିର ବସ୍ତ୍ରାଳଙ୍କାର ସହିତ କଟିବନ୍ଧରେ



ମହିଷମର୍ଦ୍ଦିନୀ, ଅଷ୍ଟଭୁଜା ମୂର୍ତ୍ତି (ଓଡ଼ିଶା)
ଫିଲାଡ଼େଲଫିଆ ସଂଗ୍ରାହଳୟ



ମହିଷମର୍ଦ୍ଦିନୀ, ଅଷ୍ଟଭୁଜା ମୂର୍ତ୍ତି,
ଶୋଭନେଶ୍ୱର ମନ୍ଦିର, ନିଆଳି

ଏକ ଛୁରୀକା ଧାରଣ କରିଥିବା ଦେଖାଯାଏ। ଏହି କୃତିଟିରେ ଦେବୀଙ୍କ ବାହନ ସିଂହଟି ଅସୁରକୁ ବାମପାର୍ଶ୍ବରୁ ଦନ୍ତାଘାତ କରୁଛି। ଏହି ମୂର୍ତ୍ତିର ଉଚ୍ଚତା ପ୍ରାୟ ୧.୧୨ ମିଟର ଓ ପ୍ରସ୍ତପ୍ରାୟ ୦.୫୭ ମିଟର ଅଟେ। ଅବକ୍ଷୟ ଓ ଆଘାତ ଦ୍ୱାରା ମୂର୍ତ୍ତିଟି ଆଂଶିକ କ୍ଷତବିକ୍ଷତ ହୋଇଥିବାବେଳେ ଏହି ଶୈଳୀର ଅନ୍ୟ ଏକ କିଞ୍ଚିତ୍ ଉଚ୍ଚକୋଟୀର କଳାଶୈଳୀର ପ୍ରତିମା ଫିଲାଡ଼େଲ୍‌ଫିଆ ଆର୍ଟ ମ୍ୟୁଜିୟମ୍‌ରେ ରହିଛି। ବୋଧ ହୁଏ ଏହି କୃତିଟି ଭୁବନେଶ୍ବର କିମ୍ବା ତା'ର ଆଖପାଖ ସ୍ଥାନର କୌଣସି ମନ୍ଦିରଗାତ୍ରରୁ ଅପହରଣ ହୋଇଥିବା ଅନୁମାନ କରାଯାଏ। ବିଭିନ୍ନ ସମୟରେ ନିର୍ମିତ ଅନ୍ୟ କେତୋଟି ସୁନ୍ଦର ଅଷ୍ଟଭୁଜା ମହିଷମର୍ଦ୍ଦିନୀ ପ୍ରତିମା ଭୁବନେଶ୍ବରର ବିନ୍ଦୁସାଗର ପଶ୍ଚିମପାର୍ଶ୍ବରେ, ଶିଶିରେଶ୍ବର ମନ୍ଦିର, ବୈତାଳଦେଉଳର ଅନ୍ୟ ଏକ କୃତି, ମଣିଭଦ୍ରେଶ୍ବର ମନ୍ଦିର ନିକଟ ଏକ ଭଗ୍ନମନ୍ଦିର ଗାତ୍ରରେ, ଉତ୍ତରେଶ୍ବର ମନ୍ଦିର ଓ ଲିଙ୍ଗରାଜ ମନ୍ଦିର ପରିସରରେ ଦେଖିବାକୁମିଳେ। ଏହା ବ୍ୟତୀତ ଭୁବନେଶ୍ବର ବାହାର, ପ୍ରାଚୀନଦୀ ଅବବାହିକାର ଅସ୍ତରଙ୍ଗ, ମୋଟିଆ, କୋଣାର୍କ ଓ ପିତାପଡ଼ା ସମେତ ଶୁକ୍ଳେଶ୍ବର, କୁଣ୍ଡେଶ୍ବର ଓ ପାରାହାଟ, ବାଲେଶ୍ବର ଅଞ୍ଚଳର ସେରଗଡ଼, ଅଭଣା ଏବଂ କୋଶଳେଶ୍ବର, ବାରିପଦା ଅଞ୍ଚଳର ଖିଚିଂ ଓ ବେଣୁସାଗର, ରାୟଗଡ଼ା ଅଞ୍ଚଳର ପଦ୍ମପୁର ଓ ପାଇକପଡ଼ା, ଢେଙ୍କାନାଳର କୁଆଲୋ ଏବଂ ଦକ୍ଷିଣଓଡ଼ିଶାର ବଡ଼ଗାଁ ଓ ଆନ୍ଧ୍ରର ମୁଖଲିଙ୍ଗମ ମନ୍ଦିର ପରିସରରେ ଏହି ପ୍ରକାର ଏକାଧିକ ପ୍ରତିମା ଦେଖିବାକୁମିଳେ।

ଦଶଭୁଜା ମହିଷମର୍ଦ୍ଦିନୀ ପ୍ରତିମାଗୁଡ଼ିକ ମଧ୍ଯ ଅଷ୍ଟଭୁଜା ପ୍ରତିମାଭଳି ଖ୍ରୀ:୧୦ମ ଶତାବ୍ଦୀଠାରୁ ପ୍ରସାର ଲାଭ କରିଥିବା ଦେଖାଯାଏ। ଏହା ମଧ୍ୟରେ ପୂଜିତ ପ୍ରତିମା ସଂଖ୍ୟା ଅଧିକ। ତେବେ, ଭୁବନେଶ୍ବରରେ ଏହି ପ୍ରକାର କ୍ୱଚିତ୍ ମୂର୍ତ୍ତି ରହିଛି। କାରଣ ଅଧିକାଂଶ ମଧ୍ୟଯୁଗୀୟ ମନ୍ଦିରର ପାର୍ଶ୍ବଦେବତା ସ୍ଥାନ ଶୂନ୍ୟ ପଡ଼ିଛି। ଶିଶିରେଶ୍ବର ମନ୍ଦିର ଜଗମୋହନ ମଧ୍ୟରେ ଏହିପରି ଏକ ଖୋଲାପ୍ରତିମା ରହିଥିବାବେଳେ ଭୁବନେଶ୍ବର ନିକଟ କଲାରାହାଙ୍ଗ ଗ୍ରାମର ଜଳେଶ୍ବରମନ୍ଦିରର ସୁନ୍ଦର ପାର୍ଶ୍ବଦେବତା ମୂର୍ତ୍ତିଟି ଦୁର୍ଭାଗ୍ୟ ବଶତଃ ଭଗ୍ନ। ପ୍ରାଚୀନଦୀ ଅବବାହିକାରେ ଦଶଭୁଜା ମହିଷମର୍ଦ୍ଦିନୀଙ୍କ ମୂର୍ତ୍ତି ବହୁଳଭାବେ ଦେଖାଯାଏ। ଏହା ମଧ୍ୟରେ ନିଆଳିର ଶୋଭନେଶ୍ବର ମନ୍ଦିର, ଅଡ଼ସପୁରର ବରାହନୃସିଂହ ମନ୍ଦିର ପରିସରର ମୂର୍ତ୍ତି, ଲତାହରଣ ଶିବମନ୍ଦିର ନିକଟରେ ଏକମୂର୍ତ୍ତି, ପିତାପଡ଼ା ଓ ଆମ୍ବପଡ଼ାରେ ଥିବା ମୂର୍ତ୍ତିଗୁଡ଼ିକର କଳାଶୈଳୀ ଉଲ୍ଲେଖଯୋଗ୍ୟ। ଏହା ବ୍ୟତୀତ କଟକ ଅଞ୍ଚଳର ଶୁକ୍ଳେଶ୍ବର ଓ ବଟେଶ୍ବର, ମହାନଦୀ କୂଳ ସିଂହନାଥ ଓ ବୈଦ୍ୟେଶ୍ବର, ମୟୂରଭଞ୍ଜ ଜିଲ୍ଲାର ଖିଚିଂ ଓ ହରିପୁରଠାରୁ ସଂଗୃହୀତ ବାରିପଦା ମିୟୁଜିୟମର ଏକ ମୂର୍ତ୍ତି, ବାଲେଶ୍ବରଜିଲ୍ଲାର ଦାଦ୍‌ପୁର୍, ସେରଗଡ଼, ପାଳିଆ ଓ ଭଦ୍ରକ ନିକଟ ଚରମ୍ପା, ଦକ୍ଷିଣଓଡ଼ିଶାର ପଦ୍ମପୁର ଓ ଉପାନ୍ତ ଅଞ୍ଚଳ ମୁଖଲିଙ୍ଗମ୍‌ରେ ଏହି ପ୍ରକାର ଏକାଧିକ ପ୍ରତିମା ରହିଛି। ଆମ୍ବପଡ଼ାରେ ଥିବା ଦଶଭୁଜା ମହିଷମର୍ଦ୍ଦିନୀ ମୂର୍ତ୍ତିଟି ଆକାରରେ ଛୋଟ ହେଲେ ହେଁ କଳାଶୈଳୀ ଉଚ୍ଚକୋଟୀର ଏବଂ ଶୁକ୍ଳେଶ୍ବରର ଭଗ୍ନ ପ୍ରତିମାଟି ଆକାରରେ ବିଶାଳ ଅର୍ଥାତ୍ ଉଚ୍ଚତା ପ୍ରାୟ ୨.୨୫ ମିଟର ଓ ପ୍ରସ୍ଥ ୧.୫ ମିଟର ଅଟେ। ଆମ୍ବପଡ଼ାର ଦଶଭୁଜା ଦେବୀ ଦକ୍ଷିଣପାର୍ଶ୍ବ ଚାରିହସ୍ତରେ ଯଥାକ୍ରମେ ଖଡ୍ଗ, ତ୍ରିଶୂଳ, ଚକ୍ର ଓ ଶକ୍ତି ଧାରଣ କରିଥିବାବେଳେ ଅନ୍ୟ ଏକ ହସ୍ତରେ ସ୍କନ୍ଧରେ ଥିବା ତୂଣୀରରୁ ଶର ବାହାର କରୁଛନ୍ତି। ବାମ ପାର୍ଶ୍ବର ହସ୍ତଗୁଡ଼ିକରେ ଦେବୀ ପରଶୁ, ଧନୁ, ଘଣ୍ଟା, ନାଗ ଓ ଢ଼ାଲ ଧାରଣ କରିଥିବା ଦେଖାଯାଏ। ତେବେ, ଏହି ଅସ୍ତ୍ରଗୁଡ଼ିକରୁ ଦକ୍ଷିଣହସ୍ତର ଶକ୍ତି ଓ ତ୍ରିଶୂଳ ଦେବୀ ଅସୁର ଦେହରେ ଭେଦ କରିବା ସହିତ ବାମ ହସ୍ତର ଢ଼ାଲରେ ସେ ଅସୁର ବକ୍ଷକୁ ଆଘାତ କରୁଛନ୍ତି। ଏହି ସମୟର କେତେକ ମୂର୍ତ୍ତିରେ ଦେବୀଙ୍କ

ହସ୍ତରେ ଘଣ୍ଟା ପରିବର୍ତ୍ତେ ଗଦା କିମ୍ବା ଅନ୍ୟ ଅସ୍ତ୍ର ଦେଖିବାକୁମିଳେ। ଏହା ତତ୍କାଳୀନ ଦେବୀ ମୂର୍ତ୍ତିର ସାଧାରଣ ଆୟୁଧ। ଆମ୍ବାପଡ଼ା ପ୍ରତିମାଟିର ଅନ୍ୟ ଏକ ବିଶେଷତ୍ୱ ହେଉଛି, ଏହାର ନିମ୍ନରେ ଥିବା ଅଭିଲେଖରୁ ସୂଚନା ମିଳେ ଯେ, ଦେବୀଙ୍କ ନଜସ୍ୱ ନାମ 'ଭଟ୍ଟାରିକା' ଅଟେ। ଏହି ପ୍ରତିମାଟିକୁ 'ଯୁବରେକ' ନାମକ ଶିଳ୍ପୀ ନିର୍ମାଣ କରିଥିଲେ। କଳା ମୁଗୁନିପଥରରେ ନିର୍ମିତ ମଧ୍ୟଯୁଗୀୟ କୃତିଟିର ଉଚ୍ଚତା ମାତ୍ର ୦.୭୫ ମିଟର ଓ ପ୍ରସ୍ଥ ପ୍ରାୟ ୦.୩୫ ମିଟର ଅଟେ। ଅଭିଲେଖ ଥିବା ଅନୁରୂପ ଏକ କୃତି କନ୍ଦେଇଁବିନ୍ଧା ଗ୍ରାମରେ ଥିବା ଜଣାଯାଏ।



ମହିଷମର୍ଦ୍ଦିନୀ: ଦଶଭୁଜା ମୂର୍ତ୍ତି,
ଖିଚିଂ ସଂଗ୍ରହାଳୟ, ମୟୂରଭଞ୍ଜ ଜିଲ୍ଲା



ମହିଷମର୍ଦ୍ଦିନୀ: ପ୍ରାଚୀନ ଦ୍ୱାଦଶଭୁଜା ମୂର୍ତ୍ତି
ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର

ଓଡ଼ିଶାରେ ମହିଷମର୍ଦ୍ଦିନୀଙ୍କ ଦ୍ୱାଦଶଭୁଜ ମୂର୍ତ୍ତି ସଂଖ୍ୟା ଯଥେଷ୍ଟ କମ୍। ପୁନଶ୍ଚ ସମୟାନୁକ୍ରମେ ଦେବୀଙ୍କ ହସ୍ତ ସଂଖ୍ୟା ବୃଦ୍ଧି ପାଉଥିବା ସ୍ଥଳେ ଏହି ମୂର୍ତ୍ତିଗୁଡ଼ିକ ଏକ ବ୍ୟତିକ୍ରମ, ଅର୍ଥାତ୍, ଏଗୁଡ଼ିକ ସାଧାରଣତଃ ଖ୍ରୀ:୭ମ-୯ମ ଶତାବ୍ଦୀ ମଧ୍ୟର ରଚନା ଅଟେ। ଅତ୍ୟନ୍ତ ଅଗଭୀର, ପ୍ରାଚୀନ ଶୈଳୀରେ ଖୋଦିତ, କଟକ ଜିଲ୍ଲାର ଧର୍ମଶାଳାଠାରୁ ଆନିତ ଏକ ଦ୍ୱାଦଶଭୁଜା ମୂର୍ତ୍ତି ରାଜ୍ୟ ସଂଗ୍ରହାଳୟରେ ରହିଛି। ଏହା ଖ୍ରୀ: ୭ମ ଶତାବ୍ଦୀର କୃତି ବୋଲି ଅନୁମାନ କରାଯାଏ। ଏହାର କିଞ୍ଚିତ୍ ପରବର୍ତ୍ତୀ ସମୟର, ଅର୍ଥାତ୍ ଖ୍ରୀ: ୮ମ ଶତାବ୍ଦୀର ଅବକ୍ଷୟ ଅବସ୍ଥାରେ ଥିବା ଏହି ପ୍ରକାର ଅନ୍ୟ ଏକ ପ୍ରତିମା ଢେଙ୍କାନାଳ ଜିଲ୍ଲା, କୁଆଲୋର କନେକଶ୍ୱେର ମନ୍ଦିର ପରିସରରେ ରହିଛି। ପ୍ରାଚୀନଦୀ ଅବବାହିକାର ଅମଣାକୁଦ ଗ୍ରାମରେ ଥିବା, ଲାଲ କନ୍ଦାପଥରରେ ନିର୍ମିତ, ମନୁଷ୍ୟାକୃତି ମହିଷମର୍ଦ୍ଦିନୀ ପ୍ରତିମାର କଳାଶୈଳୀରୁ ଏହା ଖ୍ରୀ:୯ମ ଶତାବ୍ଦୀର ହୋଇଥିବା ମନେହୁଏ। ଖ୍ରୀଷ୍ଟୀୟ ୧୫ଶ ଶତାବ୍ଦୀ ଓ ତା'ର ପରବର୍ତ୍ତୀ ସମୟରେ ନିର୍ମିତ ଅଳ୍ପ କେତୋଟି ଷୋଡ଼ଶଭୁଜା ଓ ଅଷ୍ଟାଦଶଭୁଜା ପ୍ରତିମା ଓଡ଼ିଶାର କେତେକ ସ୍ଥାନରେ ଦୃଷ୍ଟିଗୋଚର ହୁଏ। ଖୋର୍ଦ୍ଧା ନିକଟ ଡ଼ିଆ ଗ୍ରାମରେ ଏକ ଅଷ୍ଟାଦଶଭୁଜା

ମହିଷମର୍ଦ୍ଦିନୀମୂର୍ତ୍ତି ରହିଛି। ଏଥିରେ ଓଡ଼ିଶାର ପାରମ୍ପରିକ କଳାଶୈଳୀର ଅବନତି ବା ପରିବର୍ତ୍ତନ ଘଟିଥିବାରୁ ଏଠାରେ ତାହାର ଆଲୋଚନା ଅନାବଶ୍ୟକ ମନେହୁଏ।

ଶୈଳୋଦ୍‌ଭବ ରାଜତ୍ୱ ସମୟର ପ୍ରଥମ ପର୍ଯ୍ୟାୟ ବିକଶିତ ମନ୍ଦିରମାନଙ୍କ ଉତ୍ତରପାଖ ବାଡ଼ରେ ପାର୍ବତୀଙ୍କ ପ୍ରତିମା ପାର୍ଶ୍ୱଦେବୀ ଭାବେ ସ୍ଥାପିତ ହୋଇଥିବାବେଳେ ଭୌମକର ରାଜତ୍ୱ ସମୟର ଅଧିକାଂଶ ମନ୍ଦିରର ଏହି ସ୍ଥାନରେ ମହିଷମର୍ଦ୍ଦିନୀଙ୍କ ମୂର୍ତ୍ତିକୁ ଗୁରୁତ୍ୱ ଦିଆଯାଇଥିବା ଲକ୍ଷ୍ୟ କରାଯାଏ। ତେବେ, ଏହାର ପରବର୍ତ୍ତୀ ସୋମବଂଶୀ ଓ ଗଙ୍ଗବଂଶୀମାନଙ୍କ ସମୟରେ ପୁନଶ୍ଚ ପାର୍ବତୀ ଏହି ସ୍ଥାନ ଅଧିକାର କରିଛନ୍ତି। ପାର୍ଶ୍ୱଦେବୀ ବ୍ୟତୀତ ଅଧିକାଂଶ ଶିବମନ୍ଦିର ପରିସରରେ କିମ୍ବା ତା'ନିକଟରେ ମହିଷମର୍ଦ୍ଦିନୀ ଦୁର୍ଗାଙ୍କ ମନ୍ଦିର କିମ୍ବା ଖୋଲାମୂର୍ତ୍ତି ଦେଖିବାକୁମିଳେ। ମନ୍ଦିର ଗାତ୍ରର ଆବରଣଦେବତା ମଧ୍ୟରେ ଥିବା ମହିଷମର୍ଦ୍ଦିନୀଙ୍କ ମୂର୍ତ୍ତି ସଂଖ୍ୟା ମଧ୍ୟ ଉଲ୍ଲେଖଯୋଗ୍ୟ। ଏଥିରୁ ସୂଚନା ମିଳେଯେ, କଳିଙ୍ଗର ଧର୍ମ ଓ ସଂସ୍କୃତିରେ ଶିବ ଓ ଶକ୍ତିପୂଜାର ପରମ୍ପରା ସମାନ୍ତରାଳ ଭାବେ ପ୍ରଚଳିତ ଥିଲା। କଳାଶୈଳୀ ଦୃଷ୍ଟିରୁ ଦେବୀଙ୍କ ପ୍ରତିମା ଏକ ଗୁରୁତ୍ୱପୂର୍ଣ୍ଣ ରଚନା। ବିଭିନ୍ନ ସମୟର ଶିଳ୍ପୀ ମୂର୍ତ୍ତିତତ୍ତ୍ୱର ଏକ ମୌଳିକ ଧାରାକୁ ଅନୁସରଣ କରିବା ସତ୍ତ୍ୱେ ନିଜସ୍ୱ ସୃଜନଶୀଳତା ତଥା ରୁଚି ଅନୁଯାୟୀ କେତେକ ସ୍ଥଳେ ଦେବୀଙ୍କ ଶରୀରକୁ ସାଧାରଣ, କେତକରେ ବଳିଷ୍ଠ ଓ ଅନ୍ୟ କେତେକରେ କ୍ଷୀଣ ଅର୍ଥାତ୍ ସୁଦୀର୍ଘ ଭାବେ ଉପସ୍ଥାପିତ କରିଥିବା ଦେଖାଯାଏ। ବୀରରସଯୁକ୍ତ ଏହି କୃତିଗୁଡ଼ିକରେ କଳିଙ୍ଗର ମଧ୍ୟଯୁଗୀୟ ମୂର୍ତ୍ତିକାରମାନେ କୁଶଳତାର ସହିତ ଭାବ, ଭଙ୍ଗୀ, ଛନ୍ଦ ଓ କମନୀୟତା ସମନ୍ୱୟ ରକ୍ଷାକରିବାରେ କୃତିତ୍ୱଲାଭ କରିଛନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ।

## ବୌଦ୍ଧବିହାରରେ ମହିଷମର୍ଦ୍ଦିନୀ ପ୍ରତିମା

ଖ୍ରୀଷ୍ଟୀୟ ୮ମ ରୁ ୧୧ଶ ଶତାବ୍ଦୀ ମଧ୍ୟରେ ଓଡ଼ିଶା ବା ପ୍ରାଚୀନ ଉଡ୍ରଦେଶରେ ତନ୍ତ୍ର ପୂଜାର ବହୁଳ ପ୍ରସାର ଘଟିଥିଲା। 'ଉଡ୍ଡିୟାନ ତନ୍ତ୍ର' ଭାବେ ଖ୍ୟାତ ଏହି ଧାରାରେ ଉଭୟ ବ୍ରାହ୍ମଣ୍ୟ ଓ ବୌଦ୍ଧ ଗୋଷ୍ଠୀ ପ୍ରଭାବିତ ହୋଇଥିଲେ। ଏହା ଦ୍ୱାରା ମହାଯାନ ବୌଦ୍ଧମାନେ ବିଭିନ୍ନ ବୌଦ୍ଧତନ୍ତ୍ର ଦେବଦେବୀଙ୍କ ମୂର୍ତ୍ତି ନିର୍ମାଣ କରି ପୂଜାର୍ଚ୍ଚନା କରୁଥିଲେ। ଓଡ଼ିଶାର କେତୋଟି ବୌଦ୍ଧ ତନ୍ତ୍ର ପୀଠ ମଧ୍ୟରେ ବାଣପୁର, ରତ୍ନଗିରି, ଉଦୟଗିରି, ଲଳିତଗିରି, ଲାଙ୍ଗୁଡ଼ି ଓ ଢାଏମା ପାହାଡ଼ ଅଞ୍ଚଳର ନାମ ଉଲ୍ଲେଖଯୋଗ୍ୟ। ଏହି ସ୍ଥାନମାନଙ୍କର ପ୍ରତ୍ନତାତ୍ତ୍ୱିକ ଖନନ ଦ୍ୱାରା ବହୁ ପରିମାଣରେ ବୌଦ୍ଧ ତନ୍ତ୍ର ଦେବଦେବୀଙ୍କ ମୂର୍ତ୍ତି ସହିତ ଗୋଟିଏ ଗୋଟିଏ ଛୋଟ ମହିଷମର୍ଦ୍ଦିନୀ ଓ ଗଣେଶ ପ୍ରତିମା ମଧ୍ୟ ପ୍ରାପ୍ତ ହୋଇଛି। ବାଣପୁର, ଅଚ୍ୟୁତରାଜପୁରର ଧାତବ ପ୍ରତିମାଗୁଡ଼ିକ ସହିତ ଗୋଟିଏ ଧାତବ ଚର୍ତୁଭୁଜା ମହିଷାମର୍ଦ୍ଦିନୀ ମୂର୍ତ୍ତି ପ୍ରାପ୍ତ ହୋଇଥିବାବେଳେ ଉପରୋକ୍ତ ଅନ୍ୟ ସ୍ଥାନମାନଙ୍କରୁ ମହିଷମର୍ଦ୍ଦିନୀଙ୍କ ଛୋଟ ପଥର ପ୍ରତିମା ପ୍ରାପ୍ତ ହୋଇଛି। ରତ୍ନଗିରିରୁ ପ୍ରାପ୍ତ ଏହି କୃତିଟିରେ ଦେବୀ ଉପର ଦୁଇ ହସ୍ତରେ କୁଠାର ଓ ପତାକା ଉଭୟ ଧାରଣ କରି ମୁଖ୍ୟ ଦୁଇ ହସ୍ତରେ ମହିଷ ଉପରେ ଋପ ପ୍ରୟୋଗ କରୁଥିବା ଜଣାଯାଏ। ଏକ ଚଟକା ଛୋଟ ଖଡ଼ିଆପଥର ଉପରେ ଅପରିପକ୍ୱ ଓ ଅଗଭୀର ଶୈଳୀରେ ଖୋଦିତ ଏହି ମହିଷମର୍ଦ୍ଦିନୀ ପ୍ରତିମାଟି ପ୍ରାଚୀନ ମନେହୁଏ। ଏଥିରୁ ସୂଚିତ ହୁଏ ଯେ, ବ୍ରାହ୍ମଣ୍ୟଧର୍ମର ପ୍ରଖ୍ୟାତ ତନ୍ତ୍ର ଦେବୀ ମହିଷମର୍ଦ୍ଦିନୀ ଦୁର୍ଗାଙ୍କୁ ବୌଦ୍ଧ ବିହାରମାନଙ୍କରେ ଲୁକ୍କାୟିତ ଭାବେ ପୂଜାର୍ଚ୍ଚନା କରାଯାଉଥିଲା।



ରତ୍ନଗିରି ବୌଦ୍ଧବିହାରରୁ ପ୍ରାପ୍ତ ମହିଷମର୍ଦ୍ଦିନୀ ପ୍ରତିମା

# ଦୁର୍ଗା

ମହିଷାସୁରର ବିପ୍ଲବରୁ ତ୍ରିଭୁବନକୁ ରକ୍ଷାକରିବା ନିମନ୍ତେ ପାର୍ବତୀ ଦୁର୍ଗାରୂପ ଧାରଣ କରିଥିଲେ। ଅନ୍ୟ ଭାବରେ ଦେବତାମାନଙ୍କ ଦୁର୍ଗତୀନାଶନ ନିମନ୍ତେ ଦେବୀ ଆର୍ବିଭୂତା ହୋଇଥିବାରୁ ସେ ଦୁର୍ଗାଭାବେ ପରିକୀର୍ତ୍ତିତା। ଦେବୀଙ୍କୁ ସର୍ବଶକ୍ତିମୟୀ କରିବା ନିମନ୍ତେ ଦେବତାମାନେ ନିଜର ତେଜ ସମେତ ଯୁଦ୍ଧାସ୍ତ୍ର ତଥା ବିଭିନ୍ନ ବସ୍ତୁ ପ୍ରଦାନ କରିଥିଲେ। ଏହି ପରିପ୍ରେକ୍ଷୀରେ ଯୁଦ୍ଧାସ୍ତ୍ର ଧାରଣ କରିଥିବା ପାର୍ବତୀ 'ଦୁର୍ଗା' ଏବଂ ମହିଷାସୁର ସହିତ ଯୁଦ୍ଧରତା ମୂର୍ତ୍ତି 'ମହିଷମର୍ଦ୍ଦିନୀ-ଦୁର୍ଗା' ଭାବେ ପରିଚିତା। ଉତ୍କଳୀୟ ମୂର୍ତ୍ତିକଳାରେ ଦୁର୍ଗା ଉଭୟ ସ୍ଥାନକ ଓ ଆସନ ଭଙ୍ଗୀରେ ଦେଖାଯାଆନ୍ତି। ଏଥିମଧ୍ୟରୁ ପୂଜିତ ମୂର୍ତ୍ତି ସଂଖ୍ୟା କମ୍ ହୋଇଥିବାବେଳେ ମନ୍ଦିର ଗାତ୍ରର ଆବରଣଦେବତା ସଂଖ୍ୟା ଅଧିକ। ଓଡ଼ିଶାରେ ଦୁର୍ଗାଙ୍କ ଚର୍ତୁଭୁଜା, ଅଷ୍ଟଭୁଜା, ଦଶଭୁଜା ଏପରିକି ଅଷ୍ଟାଦଶଭୁଜା ମୂର୍ତ୍ତି ମଧ ରହିଛି। ଅଧିକାଂଶ ସ୍ଥଳେ ଦେବୀ ତା'ଙ୍କ ମୁଖ୍ୟ ଆୟୁଧ କମଣ୍ଡଳୁ, ଜପମାଳା ଓ ପଦ୍ମ ସହିତ ଖଡ୍ଗ, ଧନୁ, ତୀର, ଢ଼ାଲ, ଶୂଳ, ଚକ୍ର ଇତ୍ୟାଦି ଯୁଦ୍ଧାସ୍ତ୍ରମାନ ଧାରଣ କରିଥାଆନ୍ତି। ଏହା ବ୍ୟତୀତ ସେ ଗୋଟିଏ ହସ୍ତରେ ବରଦମୁଦ୍ରା ପ୍ରଦର୍ଶନ କରୁଥିବା ଦେଖାଯାଏ। ପ୍ରାୟ ପ୍ରତ୍ୟେକ ମୂର୍ତ୍ତି ସହିତ ଦେବୀଙ୍କ ବାହନ ସିଂହ କିମ୍ବା ମୃଗ ଦେଖିବାକୁମିଳେ।

ସମଭଙ୍ଗରେ ଦଣ୍ଡାୟମାନ କଳିଙ୍ଗଶୈଳୀର ଦୁଇଟି ପ୍ରାଚୀନ ଦୁର୍ଗାମୂର୍ତ୍ତି ଗୁରୁତ୍ୱପୂର୍ଣ୍ଣ ଅଟେ। ଏଥିମଧ୍ୟରୁ ଗୋଟିଏ ମୁଖଲିଙ୍ଗମ୍‌ର ମଧୁକେଶ୍ୱର ମନ୍ଦିର ପରିସରରେ ରହିଥିବାବେଳେ ଓଡ଼ିଶାର ଅନ୍ୟ ଏକ ମୂର୍ତ୍ତି କଲିକତାସ୍ଥିତ ଭାରତୀୟ ସଂଗ୍ରହାଳୟରେ ରହିଛି। ତେବେ, ସଂଗ୍ରହାଳୟ ପ୍ରତିମାଟିର ନିମ୍ନାଂଶ ଭଗ୍ନ। ଉଭୟ ମୂର୍ତ୍ତିର ଦେହରେ ସ୍ୱଳ୍ପଅଳଙ୍କାର ଓ  କଟିଠାରୁ ପାଦ ପର୍ଯ୍ୟନ୍ତ ଲମ୍ବିଥିବା ବସ୍ତ୍ର



ଦୁର୍ଗା, ମଧୁକେଶ୍ୱର ମନ୍ଦିର, ମୁଖଲିଙ୍ଗମ୍



ଭଗବତୀ, ଭଗବତୀ ମନ୍ଦିର, ଶୁକ୍ଲେଶ୍ୱର

ଦେଖିବାକୁମିଳେ। ମଧୁକେଶ୍ୱର ମନ୍ଦିରରେ ଦେବୀ ଦକ୍ଷିଣ ହସ୍ତଗୁଡ଼ିକରେ ବଜ୍ର, ଗଦା, ଖଡ୍ଗ ଓ କଙ୍କଳପାତ୍ରୀ ଏବଂ ବାମହସ୍ତଗୁଡ଼ିକରେ ଅଗ୍ନି, ତ୍ରିଶୂଳ, ଚକ୍ର ଓ ଘଣ୍ଟା ଧାରଣ କରିଛନ୍ତି। ଏହା ବ୍ୟତୀତ ଦେବୀଙ୍କ ବିଶ୍ୱପଦ୍ମ ପାଦାସନ ନିକଟରେ ତା'ଙ୍କ ବାହନ ସିଂହ ଓ ଦୁଇ ପାର୍ଶ୍ୱରେ ଚାମରଧାରିଣୀ ପରିଚାରିକା ଉଭାହୋଇଥିବା ଦେଖାଯାଏ। ଭାରତୀୟ ସଂଗ୍ରହାଳୟର କୃତିରେ ଦେବୀଙ୍କ ଗୋଟିଏ ଦକ୍ଷିଣହସ୍ତ ଭଗ୍ନ ହୋଇଥିବାବେଳେ ଅନ୍ୟ ତିନି ହସ୍ତରେ ଖଡ୍ଗ, ଜପମାଳା ଓ ବରଦମୁଦ୍ରା ସହିତ ପଦ୍ମ ଏବଂ ବାମହସ୍ତଗୁଡ଼ିକରେ କମଣ୍ଡଳୁ, ଖେଟକ, ଅଙ୍କୁଶ ଓ ଚକ୍ର ଦେଖିବାକୁମିଳେ। ଖ୍ରୀଷ୍ଟୀୟ ୮ମ-୯ମ ଶତାବ୍ଦୀରେ ନିର୍ମିତ ଉଭୟ ମୂର୍ତ୍ତିର ଉପସ୍ଥାପନା ଶୈଳୀ ସରଳ ଓ ନିରାଡ଼ମ୍ବର।

ମଧ୍ୟଯୁଗରେ ଦୁର୍ଗାଙ୍କର କେତେକ ସ୍ଥାନକ ବା ଦଣ୍ଡାୟମାନ ଚତୁର୍ଭୁଜା ଓ ଅଷ୍ଟଭୁଜା ପ୍ରତିମା ନିର୍ମିତ ହୋଇଥିଲା। ଭୁବନେଶ୍ୱରର ମେଘେଶ୍ୱର ଓ ବାଣପୁରର ଦକ୍ଷପ୍ରଜାପତି ମନ୍ଦିର ଗାତ୍ରରେ ଦେବୀଙ୍କ ଏହି ପ୍ରକାର ଚତୁର୍ଭୁଜା ପ୍ରତିମା ରହିଛି। ପରବର୍ତ୍ତୀ ସମୟରେ ନିର୍ମିତ ସୋନପୁରର ଖମ୍ବେଶ୍ୱରୀମନ୍ଦିରରେ 'ଚତୁର୍ଦ୍ଦଶଭୁଜା ଦୁର୍ଗାଙ୍କ ପ୍ରତିମା ରହିଥିବାବେଳେ ମଣିନାଗେଶ୍ୱର ମନ୍ଦିରର ପାର୍ଶ୍ୱଦେବୀ ଦୁର୍ଗା ଅଷ୍ଟାଦଶ ଭୁଜା ଅଟନ୍ତି।

ପଦ୍ମାସନ ଉପରେ କିମ୍ବା ସିଂହ ଉପରେ ଆସନ ଗ୍ରହଣ କରିଥିବା ଦୁର୍ଗାଙ୍କ ଅର୍ଚ୍ଚାବିଗ୍ରହ ତଥା ଆବରଣ ଦେବତା, ଉଭୟ ଦେଖିବାକୁମିଳେ। ଏହା ମଧ୍ୟରେ କେତେକ ଚତୁର୍ଭୁଜା ଓ ଅନ୍ୟ କେତେକ ଅଷ୍ଟଭୁଜା ଅଟନ୍ତି। ତେବେ, ଅଧିକାଂଶ ଅଷ୍ଟଭୁଜା ପ୍ରତିମା ଅର୍ଚ୍ଚାବିଗ୍ରହ ହୋଇଥିବାବେଳେ ଚତୁର୍ଭୁଜା ପ୍ରତିମାଗୁଡ଼ିକ ପ୍ରାୟତଃ ମନ୍ଦିର ବାଡ଼ରେ ଥିବା ଆବରଣଦେବୀ। ଏହି ପ୍ରକାର ଚତୁର୍ଭୁଜା ଦୁର୍ଗା କୋଣାର୍କ ନିକଟ ବୟାଳିଶିବାଟୀ ଗ୍ରାମର ଗଙ୍ଗେଶ୍ୱରୀ ମନ୍ଦିର ଗାତ୍ରରେ ଏବଂ ବାଲେଶ୍ୱରଜିଲ୍ଲା ସେରଗଡ଼ର ଶିବ ଓ ଶକ୍ତିମନ୍ଦିର ପରିସରରେ ଦେଖାଯାଆନ୍ତି। ମାହାଙ୍ଗା ନିକଟ ଶୁକ୍ଳେଶ୍ୱରମନ୍ଦିର ପରିସରରେ ଥିବା ଭଗବତୀ ଅଷ୍ଟଭୁଜାଦୁର୍ଗା ଅଟନ୍ତି। ଏହି ଦେବୀ ବିଶ୍ୱପଦ୍ମ ଉପରେ ଲଳିତ ଭଙ୍ଗୀରେ ଆସନ ଗ୍ରହଣ କରିଛନ୍ତି। ତା'ଙ୍କ ମୁଖ୍ୟ ଦୁଇ ହସ୍ତରୁ ଦକ୍ଷିଣ ହସ୍ତଟି ପଦ୍ମ ସଂକେତ ସହ ବରଦମୁଦ୍ରା ପ୍ରଦର୍ଶନ କରୁଥିବାବେଳେ ତାଙ୍କ ବାମହସ୍ତରେ ଏକ ଛୋଟ କମଣ୍ଡଳୁ ରହିଛି। ଅନ୍ୟ ତିନି ଦକ୍ଷିଣହସ୍ତରେ ଯଥାକ୍ରମେ; ଜପମାଳା, ଖଡ୍ଗ ଓ ଚକ୍ର ଏବଂ ବାମହସ୍ତଗୁଡ଼ିକରେ ତ୍ରିଶୂଳ, କଙ୍କଳପାତ୍ରୀ ଓ ବିଜପୂରକ ଦେଖିବାକୁମିଳେ। ବିଭିନ୍ନ ଅଳଙ୍କାର ଓ ବସ୍ତ୍ର ପରିଧାନ କରିଥିବା ଦେବୀଙ୍କ ମସ୍ତକରେ ଜଟାଜୁଡ଼ା ଓ ଅଳକାମୁକୁଟ ରହିଛି। ଦେବୀଙ୍କ ଆସନ ତଳେ ତା'ଙ୍କ ବାହନ ସିଂହ ଓ ପ୍ରଦୀପ ଅର୍ପଣ କରୁଥିବା ଜଣେ ପୂଜାରିଣୀଙ୍କ ପିଢ଼ୁଳା, ଦୁଇ ପାର୍ଶ୍ୱରେ ଚାମର ଧାରିଣୀ ଦୁଇ ପରିଚାରିକା ଓ ଉପର ଦୁଇ କୋଣରେ ଉଡ୍ଡୀୟମାନ ଗନ୍ଧର୍ବଙ୍କ ମୂର୍ତ୍ତି ସ୍ଥାନିତ ହୋଇଛି। ଏହା ବ୍ୟତୀତ ମୂର୍ତ୍ତିର ପ୍ରଚ୍ଛଦରେ ଏକ ଅଣ୍ଡାକୃତି ସରଳ ପ୍ରଭାମଣ୍ଡଳ ଦେଖିବାକୁମିଳେ। ପ୍ରାୟ ୦.୯୦ମିଟର ଉଚ୍ଚତା ଓ ୦.୬୫ମିଟର ପ୍ରସ୍ତ ବିଶିଷ୍ଟ ମୂର୍ତ୍ତିଟି ଖ୍ରୀ: ୮ମ-୯ମ ଶତାବ୍ଦୀର ବୋଲି ଅନୁମାନ କରାଯାଏ।

ମୁଖଲିଙ୍ଗମ୍, ମଧୁକେଶ୍ୱରମନ୍ଦିର ପରିସରରେ ଥିବା ଏକ ଖାକରାମନ୍ଦିର ମଧ୍ୟର ଅଧିଷ୍ଠାତ୍ରୀ ଦେବୀ ଅଷ୍ଟଭୁଜା ଦୁର୍ଗା ଅଟନ୍ତି। ଲଳିତାସନରେ ବସିଥିବା ଦେବୀଙ୍କ ମୁଖ୍ୟ ଦକ୍ଷିଣହସ୍ତ ବରଦମୁଦ୍ରାରେ ରହିଥିବାବେଳେ ଅନ୍ୟ ତିନି ହସ୍ତରେ ଶର, ଖଡ୍ଗ ଓ ଚକ୍ର ଏବଂ ବାମପାର୍ଶ୍ୱ ହସ୍ତରେ ଏକ ତ୍ରିଶୂଳ ଓ ଅନ୍ୟ ତିନି ହସ୍ତରେ ଖେଟକ, ଧନୁ ଓ ଘଣ୍ଟ ରହିଛି। କୃତିଟିର ଏକ ବିଶେଷତ୍ୱ ହେଉଛି; ତା'ଙ୍କ ବିଶ୍ୱପଦ୍ମ ଆସନ ତଳେ ଚତୁର୍ଭୁଜା, ତ୍ରିଶୂଳ ଧାରିଣୀ ପାର୍ବତୀଙ୍କ ଏକ ଛୋଟ ମୂର୍ତ୍ତି ଏବଂ ବାହନ

ସିଂହ ସ୍ଥାନିତ ହୋଇଛି । କଳାଶୈଳୀରୁ ଏହା ମଧ୍ୟ ଖ୍ରୀ: ୯ମ ଶତାବ୍ଦୀର କୃତିବୋଲି ପ୍ରତୀୟମାନ ହୁଏ । ଅନୁରୂପ ଆୟୁଧ ଧାରଣ କରିଥିବା ଆସନମୂର୍ତ୍ତି ଅଷ୍ଟଭୁଜା ଦୁର୍ଗା, ସିଂହନାଥ ମନ୍ଦିରର ବକ୍ରମସ୍ତକ ଓ ଖିଚିଂଠାରେ ଦେଖିବାକୁମିଳେ । ଏହା ବ୍ୟତୀତ ଭୁବନେଶ୍ୱରର ମୁକ୍ତେଶ୍ୱରମନ୍ଦିର ପରିସରରେ ଏକ ଭଗ୍ନ ପଦ୍ମାସନା ଦୁର୍ଗା ଓ ସିଂହନାଥ ମନ୍ଦିର ପରିସରରେ ଦେବୀଙ୍କ ଏକ ଲଳିତାସନ ମୂର୍ତ୍ତି ରହିଛି । ଉଭୟ ପ୍ରତିମା ପ୍ରାଚୀନବୋଲି ଜଣାଯାଏ । ପ୍ରାଚୀନଦୀ ଅବବାହିକାର ଲତାହରଣ ଓ ଖିଚିଂ ସଂଗ୍ରହାଳୟରେ ୧୦ମ-୧୧ଶ ଶତାବ୍ଦୀର ଲଳିତାସନ, ଅଷ୍ଟଭୁଜା ଦୁର୍ଗା ପ୍ରତିମା ଦେଖିବାକୁମିଳେ ।



ଅଷ୍ଟଭୁଜା ଦୁର୍ଗା, ଖିଚିଂ ସଂଗ୍ରହାଳୟ,
ଖିଚିଂ, ମୟୂରଭଞ୍ଜ ଜିଲ୍ଲା



ପାଟଣ ମଙ୍ଗଳା, ଛତ୍ରପଡ଼ା,
ଭଦ୍ରକ ଜିଲ୍ଲା

ଭଦ୍ରକ ନିକଟ ଆହାରପଦାର 'ଭଦ୍ରକାଳୀ' ଓ ବାଲେଶ୍ୱର ଜିଲ୍ଲା ଛତ୍ରପଡ଼ା, ନରେନ୍ଦ୍ରପୁର ଗ୍ରାମର 'ପାଟଣମଙ୍ଗଳା' ମଧ୍ୟ ଦୁର୍ଗା ଅଟନ୍ତି । ତେବେ ଏହା ଦେବୀଙ୍କ ଏକ ସ୍ୱତନ୍ତ୍ର ପରିକଳ୍ପନା । ଏଠାରେ ଉଭୟ ଦେବୀ ଅର୍ଦ୍ଧପରାୟଣିକ ଭଙ୍ଗୀରେ ସିଂହ ଉପରେ ଆସନ ଗ୍ରହଣ କରିଛନ୍ତି । ଚର୍ତୁଭୁଜା ଦେବୀଙ୍କ ମୁଖ୍ୟ ଦୁଇ ହସ୍ତରୁ ଦକ୍ଷିଣହସ୍ତରେ ଏକ ମନ୍ତ୍ରସୂତ୍ର (?) କିମ୍ବା ପୁଷ୍ପ ଏବଂ ବାମହସ୍ତରେ କୋଳରେ ଥିବା ଏକ ଶିଶୁକୁ ଧାରଣ କରିଥିବାବେଳେ ଉପର ଦୁଇ ହସ୍ତରେ ଯଥାକ୍ରମେ; ଖଡ୍ଗ ଓ ଖେଟକ ବା ଢ଼ାଲ ଦେଖିବାକୁମିଳେ । ଏହା ବ୍ୟତୀତ ବସ୍ତ୍ରାଳଙ୍କାରରେ ବିଭୂଷିତା ଦେବୀଙ୍କ ଦୁଇ ପାର୍ଶ୍ୱରେ ଦୁଇ ପରିଚାରିକା ଉପସ୍ଥିତ ଅଛନ୍ତି । ଏହା ଦୁର୍ଗାଙ୍କ ମାତୃକା ରୂପର ପରିକଳ୍ପନା କହିଲେ ଭୁଲ୍ ହେବନାହିଁ । କେତେକ ଗବେଷକ ଦେବୀ ଧାରଣ କରିଥିବା ଶିଶୁକୁ ବାଳକାର୍ତ୍ତିକେୟ ବୋଲି ମନେ କରନ୍ତି । ସୂଚନା ଯୋଗ୍ୟଯେ, ଦକ୍ଷିଣଭାରତୀୟ ବ୍ରୋଞ୍ଜ ମୂର୍ତ୍ତିକଳାରେ ପାର୍ବତୀ କାର୍ତ୍ତିକେୟଙ୍କୁ କୋଳରେ ଧାରଣ କରିଥିବା ରଚନା ଦେଖିବାକୁମିଳେ । ସେଠାରେ ଦେବୀ 'ସ୍କନ୍ଦମାତା' ନାମରେ ପରିଚିତା । ପ୍ରାୟ ୧.୨୦ମିଟର ଉଚ୍ଚତା ବିଶିଷ୍ଟ ଉପରୋକ୍ତ ମୂର୍ତ୍ତିଦ୍ୱୟ କଳା ମୁଗୁନିପଥରରେ ନିର୍ମିତ, ଖ୍ରୀ: ୧୨ଶ-୧୩ଶ ଶତାବ୍ଦୀରବୋଲି ଅନୁମାନ କରାଯାଏ ।

ଓଡ଼ିଶାର ମନ୍ଦିର ଗାତ୍ରରେ ତଥା ଅର୍ଚ୍ଚାବିଗ୍ରହ ଭାବେ ମହିଷମର୍ଦ୍ଦିନୀ ଦୁର୍ଗାଙ୍କ ପ୍ରତିମାକୁ ଅଧିକ ଗୁରୁତ୍ୱ ଦିଆଯାଉଥିବାରୁ ଦୁର୍ଗାଙ୍କ ସାଧାରଣ ମୂର୍ତ୍ତିଗୁଡ଼ିକ ଗୌଣ ହୋଇପଡ଼ିଥିବା ମନେହୁଏ । ତେବେ, ବହୁ ସ୍ଥାନରେ ଦୁର୍ଗାଙ୍କମୂର୍ତ୍ତି ଅନ୍ୟ ନାମରେ ମଧ୍ୟ ପୂଜା ପାଉଥିବା ଦେଖାଯାଏ । ଶାରଦୀୟ ଦୁର୍ଗାପୂଜାରେ ମହିଷମର୍ଦ୍ଦିନୀ-ଦୁର୍ଗାଙ୍କ ବିଗ୍ରହକୁ ଅଧିକ ଗୁରୁତ୍ୱ ଦିଆଯାଉଥିବାବେଳେ ବାସନ୍ତିକ ଦୁର୍ଗାପୂଜାରେ ଦୁର୍ଗାଙ୍କ ଶାନ୍ତ ମୂର୍ତ୍ତିକୁ ମହତ୍ତ୍ୱ ଦିଆଯାଇଥାଏ । ଏଠାରେ ମହିଷମର୍ଦ୍ଦିନୀ ରଜଗୁଣସମ୍ପନ୍ନା ଏବଂ ସାଧାରଣ ଦୁର୍ଗା ସତ୍ତ୍ୱଗୁଣସମ୍ପନ୍ନା ଦେବୀ ଅଟନ୍ତି ।

## ଉତ୍କଳୀୟ ମୂର୍ତ୍ତିତତ୍ତ୍ୱରେ କେତୋଟି ସ୍ୱତନ୍ତ୍ର ଦେବୀ ମୂର୍ତ୍ତି

### ଗାରେଡ଼ିପାଞ୍ଚଣର ଦୁଇଟି ଦେବୀ ମୂର୍ତ୍ତି





ମାହେଶ୍ୱରୀ ଓ ମହାକାଳୀ, ଗାରେଡ଼ିପାଞ୍ଚଣ

ଭୁବନେଶ୍ୱର ନିକଟ ଗାରଡ଼ିପାଞ୍ଚଣ ଗ୍ରାମ ବୃଦ୍ଧନାଥ ଶିବମନ୍ଦିର ନିମନ୍ତେ ପ୍ରଖ୍ୟାତ ହେଲେ ହେଁ ଏହାର ପରିସରରେ ଦେବୀମନ୍ଦିର ସମେତ ଭଗ୍ନାବଶେଷଗୁଡ଼ିକରେ ସପ୍ତମାତୃକା ଓ ଅନ୍ୟ ଦେବଦେବୀଙ୍କ ମୂର୍ତ୍ତି ଦେଖିବାକୁମିଳେ । ତେବେ, ଏହା ମଧ୍ୟରେ ଥିବା ଦୁଇଟି ମୂର୍ତ୍ତିତତ୍ତ୍ୱ କୌତୂହଳ ପୂର୍ଣ୍ଣ । ପ୍ରଥମ ତିନିମୁଖ, ଅଷ୍ଟଭୁଜାଦେବୀ ବିଶ୍ୱପଦ୍ମ ଉପରେ ଯୋଗାସନରେ ବସିଛନ୍ତି । ତାଙ୍କ ସମସ୍ତ ହସ୍ତ ଭଗ୍ନ ହୋଇଥିବାବେଳେ ମୁଖ୍ୟ ଦୁଇହସ୍ତ ଅଭୟ ଓ ବରଦ ମୁଦ୍ରାରେ ଥିବା ଅନୁମାନ କରାଯାଏ । ଦେବୀଙ୍କ ଆୟୁଧଗୁଡ଼ିକ ମଧ୍ୟରୁ ବାମ ପାର୍ଶ୍ୱର ପାଶଟି ସ୍ପଷ୍ଟ ହୁଏ । ମୂର୍ତ୍ତିର ଆସନ ନିମ୍ନରେ ଯୋଡ଼ ହସ୍ତରେ ଜଣେ ଭକ୍ତ ଓ ସିଂହର ମୂର୍ତ୍ତି ରହିଛି । ତିନିମୁଖ ଥିବା ଶିବଙ୍କୁ 'ମହେଶ' କୁହାଯାଉଥିବା ଯୋଗୁଁ ଦେବୀ 'ମାହେଶ୍ୱରୀ' ହୋଇପାରନ୍ତି ।

ଦ୍ୱିତୀୟ ଦେବୀଙ୍କର ମଧ୍ୟ ତିନିମୁଖ ଥିବାବେଳେ ସେ ଚର୍ତ୍ତୁଭୁଜା ଅଟନ୍ତି । ଦେବୀ ମୁଖ୍ୟ ଦୁଇ ହସ୍ତରେ ରକ୍ତପାତ୍ର ଓ ଛିନ୍ନମସ୍ତକ ଧାରଣ କରିଥିବାବେଳେ ଉପର ଦକ୍ଷିଣହସ୍ତରେ ରହିଛି ଉତ୍ତୋଳିତ ଖଡ୍ଗ ଓ ବାମ ହସ୍ତରେ ରହିଛି ଖେଟକ । ଦେବୀଙ୍କ ଆସନତଳେ କେବଳ ଲତାବଳି ଓ ଊର୍ଦ୍ଧ୍ୱ ଦୁଇ କୋଣରେ ଉଡ୍ଡୀୟମାନ ଗର୍ନ୍ଧବ ଏବଂ ଅପ୍ସରାଙ୍କ ପିତୁଳା ସ୍ଥାନିତ ହୋଇଛି । ବିଭିନ୍ନ ବସ୍ତ୍ରାଳଙ୍କାରରେ ବିଭୂଷିତା, ଉଗ୍ରମୁଖା ଦେବୀ ତ୍ରିକାଳ - ଶିବଙ୍କ ଶକ୍ତି ଅର୍ଥାତ୍ 'ମହାକାଳୀ' ହୋଇପାରନ୍ତି । ପରିତାପର ବିଷୟ ଯେ, ଗତ କିଛି ବର୍ଷ ପୂର୍ବେ ଏହି ବିରଳ ପ୍ରତିମାଟି ଅପହୃତ ହୋଇଯାଇଛି ।

## କୃଷ୍ଣପ୍ରସାଦଗଡ଼ର ତ୍ରିୟମ୍ବିକା ମୂର୍ତ୍ତି

ପ୍ରାଚୀ ନଦୀ ଅବବାହିକାର କୃଷ୍ଣପ୍ରସାଦ ଗଡ଼, ଶିବମନ୍ଦିର ଗର୍ଭଗୃହର ବାଡ଼ରେ ଏକ ଦେବୀମୂର୍ତ୍ତି ରହିଛି। ପଦ୍ମାସନରେ ବସିଥିବା ଅଷ୍ଟଭୁଜା ଦେବୀ ମୁଖ୍ୟ ଦୁଇ ହସ୍ତରେ ହୃଦୟ ନିକଟରେ ଏକ ପୂର୍ଣ୍ଣକୁମ୍ଭ ଧାରଣ କରିଥିବାବେଳେ ଉପର ଦୁଇ ହସ୍ତରେ ଦୁଇ କଳସର ଜଳକୁ ମସ୍ତକ ଉପରେ ଅଭିଷେକ କରୁଛନ୍ତି ଏବଂ ଅନ୍ୟ ଦୁଇ ପାର୍ଶ୍ବର ଦୁଇ ହସ୍ତରେ ଦୁଇଟି କଳସ ରହିଛି। ମୂର୍ତ୍ତିର ନିମ୍ନରେ ଥିବା ଶେଷ ଦୁଇ ହସ୍ତ ଭଗ୍ନ ହେଲେ ହେଁ ଦକ୍ଷିଣ ହସ୍ତଟିରେ ଏକ ଜପମାଳା ରହିଥିବା ସୂଚନାମିଳେ। ଦେବୀଙ୍କ ମସ୍ତକରେ ମୁକୁଟ ଓ ଦେହର ବସ୍ତ୍ରାଳଙ୍କାର ବ୍ୟତୀତ ଆସନ ନିମ୍ନରେ ଏକ ସିଂହର ମୂର୍ତ୍ତି ରହିଛି।

ତିନିବାର ବା ତିନିଧାରରେ ଅଭିଷେକ ନିମନ୍ତେ ଦେବୀ ଧାରଣ କରିଥିବା ପଞ୍ଚକଳସ ଜଳ ପଞ୍ଚପ୍ରାଣ ବା ପଞ୍ଚପାନକୁ ସୂଚିତକରେ। ଦକ୍ଷିଣଭାରତରେ ବହୁଳ ଭାବରେ ଦେଖାଯାଉଥିବା ଏହି ପ୍ରକାର ମୂର୍ତ୍ତି 'ତ୍ରିୟମ୍ବିକା' ଭାବେ ପରିଚିତ ହେଉଥିବାବେଳେ ଓଡ଼ିଶାର ମୂର୍ତ୍ତିକଳାରେ ଏହା ଏକ ବିରଳ କୃତି।



ତ୍ରିୟମ୍ବିକା, କୃଷ୍ଣପ୍ରସାଦଗଡ଼

## ଶ୍ରୀକ୍ଷେତ୍ର ବିମଳା

ପୁରୀ,ଶ୍ରୀଜଗନ୍ନାଥ ମନ୍ଦିର ପରିସରରେ ଦେବୀ ବିମଳାଙ୍କ ମନ୍ଦିର ଅବସ୍ଥିତ। ଅମରକୋଷ ଅଭିଧାନରେ ଉଲ୍ଲେଖଥିବା ଦେବୀଙ୍କ ନାମ ମଧ୍ୟରେ 'ବିମଳା' ନାମ ଦେଖିବାକୁ ମିଳେନାହିଁ। ତେବେ, ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କୁ ଭୈରବ ଓ ବିମଳାଙ୍କୁ ଭୈରବୀ ଭାବେ ଅଭିହିତ କରାଯାଏ। ଏହା ଶିବଶକ୍ତିଙ୍କୁ ସୂଚିତ କରୁଥିବାବେଳେ ଅନ୍ୟଭାବରେ ଜଗନ୍ନାଥ ବିଷ୍ଣୁ ବା ମାଧବ ଏବଂ ବିମଳାଙ୍କୁ ଦୁର୍ଗାଭାବେ ପୂଜାର୍ଚ୍ଚନା କରାଯାଏ। ଏହି 'ଦୁର୍ଗାମାଧବ' ପୂଜାର ବଳିଷ୍ଠ ପରମ୍ପରା ଉତ୍କଳରେ ପ୍ରଚଳିତ ଅଛି। କୌତୁହଳର ବିଷୟ ଏହି କି ବିମଳାଙ୍କଠାରେ ଭୈରବୀ କିମ୍ବା ଦୁର୍ଗାଙ୍କ ମୂର୍ତ୍ତିତତ୍ତ୍ୱ ପରିଦୃଷ୍ଟ ହୁଏନାହିଁ।



ବିମଳା, ଶ୍ରୀଜଗନ୍ନାଥ ମନ୍ଦିର ପରିସର, ପୁରୀ

ସୂଚନାଯୋଗ୍ୟ ଯେ, ବିମଳା ବିଶ୍ୱପଦ୍ମ ଉପରେ ସମଭଙ୍ଗରେ ଦଣ୍ଡାୟମାନ ସୌମ୍ୟା, ଚର୍ତୁଭୁଜା ମୂର୍ତ୍ତି।ତାଙ୍କ ମୁଖ୍ୟ ଦୁଇହସ୍ତରୁ ଦକ୍ଷିଣହସ୍ତରେ ରହିଛି ଜପମାଳା ଓ ବାମହସ୍ତରେ ରହିଛି ଏକ ପୂର୍ଣ୍ଣକୁମ୍ଭ। ସେହିପରି ଉପର ଦକ୍ଷିଣ ହସ୍ତରେ ଦେଖାଯାଏ ନାଗପାଶ ଓ ବାମହସ୍ତରେ ଏକ ମାନବଶିଶୁ। ଦେବୀ ମସ୍ତକରେ କେରଣ୍ଡମୁକୁଟ ଓ ଶରୀରରେ ବିଭିନ୍ନ ବସ୍ତ୍ରାଳଙ୍କାର ପରିଧାନ କରିଥିବାବେଳେ ମୂର୍ତ୍ତିର ନିମ୍ନ ଦୁଇପାର୍ଶ୍ୱରେ ଦୁଇ ପରିଚ୍ଛରିକାଙ୍କ ପିତୁଳା ସ୍ଥାନିତ ହୋଇଛି। ମୂର୍ତ୍ତି ହସ୍ତରେଥିବା ଅନ୍ୟ ପଦାର୍ଥ ଗୁଡ଼ିକ ଦେବୀମାନଙ୍କ ସାଧାରଣ ଆୟୁଧ ହୋଇଥିବା ବେଳେ 'ମାନବଶିଶୁ'ଟିକୁ ଜୀବାତ୍ମାର ପ୍ରତୀକଭାବେ ଗ୍ରହଣ କରାଯାଇପାରେ। ଏହି ପରାପ୍ରେକ୍ଷୀରେ ଦେବୀ 'ଲୋକମାତା'ଙ୍କ ସମକକ୍ଷ। ଭାରତରେ କୁତ୍ରାପି ଏହି ପ୍ରକାର ରଚନା ଦେଖାଯାଉନଥିବାବେଳେ 'ବିମଳା' ଉତ୍କଳୀୟ ମୂର୍ତ୍ତିତତ୍ତ୍ୱରେ ଏକ ସ୍ୱତନ୍ତ୍ର ପରିକଳ୍ପନା କହିଲେ ଅତ୍ୟୁକ୍ତି ହେବନାହିଁ।

## କାକଟପୁର ମଙ୍ଗଳା

ପ୍ରାଚୀନଦୀ କୂଳ, କାକଟପୁରରେ ଅବସ୍ଥିତ ପ୍ରଖ୍ୟାତ ମଙ୍ଗଳାଙ୍କ ମନ୍ଦିର। ମଙ୍ଗଳକାରିଣୀ ଦେବୀଙ୍କ ନାମ 'ମଙ୍ଗଳା' ହୋଇପାରେ। ଅର୍ଥାତ୍, ସେ ଶିବାନୀ ଶଙ୍କରୀ ହୋଇପାରନ୍ତି। କିନ୍ତୁ, ମଙ୍ଗଳାଙ୍କ ଠାରେ ଏହି ମୂର୍ତ୍ତିତତ୍ତ୍ୱର ପ୍ରଭାବ ଦେଖାଯାଏ ନାହିଁ। ଏଠାରେ ମଙ୍ଗଳା ମନୁଷ୍ୟାକୃତି, ସୁଠାମ, ସୁନ୍ଦର ପ୍ରତିମା। ବିଶ୍ୱପଦ୍ମ ଉପରେ ଲଳିତାସନରେ ବସିଥିବାବେଳେ ତଳକୁ ଝୁଲିଥିବା ତାଙ୍କ ଦକ୍ଷିଣପାଦଟି ମଧ୍ୟ ଗୋଟିଏ ପଦ୍ମ ଉପରେ ରହିଛି। ଚର୍ତୁଭୁଜା ଦେବୀ ମୁଖ୍ୟ ଦକ୍ଷିଣ ହସ୍ତରେ ଜପମାଳା ଧାରଣ କରି ବାମହସ୍ତରେ ବରଦମୁଦ୍ରା ପ୍ରଦର୍ଶନ କରୁଥିବାବେଳେ ତାଙ୍କ ଉପର ଦକ୍ଷିଣହସ୍ତରେ ରହିଛି ପୂର୍ଣ୍ଣଚନ୍ଦ୍ର ଏବଂ ବାମଉପର ହସ୍ତରେ ଏକ ବୃହତ୍ ପଦ୍ମକଳିକା (?)। ଦେବୀଙ୍କ ମସ୍ତକର ସୁଉଚ୍ଚ କିରୀଟମୁକୁଟ ଓ ବସ୍ତ୍ରଭୂଷଣ ଆଡ଼ମ୍ବରପୂର୍ଣ୍ଣ। ବ୍ରାହ୍ମଣ୍ୟ ଧର୍ମରେ ଏହି ପ୍ରକାର ଆୟୁଧ ଧାରଣ କରିଥିବା କୌଣସି ଦେବୀଙ୍କ ବର୍ଣ୍ଣନା ଦେଖିବାକୁ ମିଳେନାହିଁ। ଏହି ପରିପ୍ରେକ୍ଷୀରେ ମୂର୍ତ୍ତିତତ୍ତ୍ୱବିତ୍‌ମାନଙ୍କ ମତରେ ଦେବୀ ବୌଦ୍ଧ ଧର୍ମର 'ସୀତାତପତୀତାରା' ହୋଇପାରନ୍ତି।


ମଙ୍ଗଳା, କାକଟପୁର

ସୂଚନାଯୋଗ୍ୟ ଯେ ବୌଦ୍ଧଧର୍ମର ତାରା ମୁଖ୍ୟତଃ ନାବିକ ତଥା ନୌବାଣିଜ୍ୟ କରୁଥିବା ବୈଶ୍ୟମାନଙ୍କ ଦ୍ୱାରା ପୂଜା ପାଆନ୍ତି। ପୂର୍ବେ ସାଗର ସହିତ ସଂଯୁକ୍ତ ହୋଇଥିବା ପ୍ରାଚୀନଦୀ ନୌବାଣିଜ୍ୟର ଏକ ମୁଖ୍ୟ ମାଧ୍ୟମ ଥିଲା। ମୂର୍ତ୍ତିଟି ସେହି ସମୟର ସାଧବମାନଙ୍କ ଦ୍ୱାରା ପ୍ରାଚୀ ତଟରେ ସ୍ଥାପିତ ହୋଇଥିବା ସମ୍ଭବ। କଳା ମୁଗୁନିପଥରରେ ନିର୍ମିତ କୃତିଟି କଳାଶୈଳୀରୁ ଖ୍ରୀ: ୧୦ମ-୧୧ଶ ଶତାବ୍ଦୀର ହୋଇଥିବା ଅନୁମାନ କରାଯାଏ।



# ସପ୍ତମାତୃକା

ଭାରତୀୟ ମାତୃପୂଜା ପରମ୍ପରା ଅତି ପ୍ରାଚୀନ। ଆଜକୁପ୍ରାୟ ପାଞ୍ଚହଜାର ବର୍ଷପୂର୍ବ ସିନ୍ଧୁ ସଭ୍ୟତାରେ ମଧ୍ୟ ଏହି ଧାରା ପ୍ରଚଳିତଥିବା ପ୍ରମାଣ ମିଳେ। ତେବେ; ବେଦ, ଧର୍ମଶାସ୍ତ୍ର ଓ ପୁରାଣ ଭିତ୍ତିକ ମାତୃକାମାନଙ୍କ ଏକ ମାର୍ଜିତ ପୂଜା ଗୁପ୍ତଯୁଗରେ ପରିକଳ୍ପନା କରାଯାଇଥିବା ବିଷୟ କୁମାରଗୁପ୍ତ (୧ମ)ଙ୍କ 'ଗଙ୍ଗାଧର ଶିଳାଲେଖ'ରୁ ସୂଚିତ ହୁଏ। ଏହି ସମୟରେ ରଚିତ ମାର୍କଣ୍ଡେୟ ପୁରାଣର ବର୍ଣ୍ଣନା ଅନୁଯାୟୀ ଦେବୀ ଅମ୍ବିକା ସୁମ୍ଭ, ନିସୁମ୍ଭଙ୍କ ସହଯୋଗୀ ଅସୁର ରକ୍ତବୀର୍ଯ୍ୟଙ୍କୁ ବଧ କରିବା ନିମନ୍ତେ ଯୁଦ୍ଧରେ ଅବତୀର୍ଣ୍ଣ ହେଲେ। ଯୁଦ୍ଧ ସମୟରେ ଅସୁର ଦେହର ରକ୍ତବିନ୍ଦୁ ଭୂମିରେ ପଡ଼ିବା ମାତ୍ରେ ସେଥିରୁ ପୁନଶ୍ଚ ଅସୁରମାନେ ଜାତ ହେଉଥିଲେ। ଏହି ସମସ୍ୟାର ସମାଧାନ ନିମନ୍ତେ ଦେବୀ ଦେବତାମାନଙ୍କ ସହଯୋଗ ଲୋଡ଼ିଲେ। ଦେବତାମାନେ ନିଜ ଶକ୍ତିମାନଙ୍କୁ ନିଜ ନିଜର ଆୟୁଧ ଓ ବାହନ ଦେଇ ଯୁଦ୍ଧକ୍ଷେତ୍ରକୁ ପ୍ରେରଣ କଲେ। ଏହି ମାତୃଗଣ ଅସୁର ସହିତ ଯୁଦ୍ଧ କରିବା ସହିତ ତା'ର ପ୍ରତ୍ୟେକ ରକ୍ତବିନ୍ଦୁ ଭୂମିରେ ପଡ଼ିବା ପୂର୍ବରୁ ଶୋଷଣ କଲେ। ଏହା ଦ୍ୱାରା ଅସୁର ରକ୍ତ ଶୂନ୍ୟ ହୋଇ ପ୍ରାଣତ୍ୟାଗ କଲା। ସେହିପରି ବରାହ ପୁରାଣରୁ ଜଣାଯାଏ ଯେ, ଶିବ ଅନ୍ଧକାସୁରକୁ ବଧ କରିଥିବାବେଳେ ଅନୁରୂପ ସମସ୍ୟା ସୃଷ୍ଟି ହୋଇଥିଲା। ଦେବତାଙ୍କ ଶକ୍ତିମାନେ ପୂର୍ବୋକ୍ତ ପ୍ରକାରେ ଏହାର ମଧ୍ୟ ସମାଧାନ କରିଥିଲେ। 'ଅଂଶୁମଦ୍‌ଭେଦାଦ୍‌ଗମ' ଗ୍ରନ୍ଥର ତଥ୍ୟ ଅନୁଯାୟୀ ବ୍ରହ୍ମା ଯୁଦ୍ଧରେ ନୈରୁତାସୁରକୁ ବଧ କରିବାରେ ଅକ୍ଷମ ହେବାରୁ ଦେବତାମାନେ ନିଜ ନିଜ ଶକ୍ତିମାନଙ୍କୁ ଏଥି ନିମନ୍ତେ ପ୍ରେରଣ କରିଥିଲେ। ଅନ୍ୟ କେତେକ ପୁରାଣରେ ସାମାନ୍ୟ ଭିନ୍ନତା ସହିତ ମାତୃଗଣଙ୍କ ସୃଷ୍ଟି ସମ୍ପର୍କରେ ବିଭିନ୍ନ ଆଖ୍ୟାନ ଉଲ୍ଲେଖ ଅଛି। ତେବେ, ସମସ୍ତ କ୍ଷେତ୍ରରେ ଏହି ମାତୃଗଣ ଯୁଦ୍ଧ ନିମନ୍ତେ ଆର୍ବିଭୂତା ହୋଇଥିବାବେଳେ ମୂର୍ତ୍ତିକଳାରେ ସେମାନଙ୍କୁ ଯୁଦ୍ଧରତ ଭଙ୍ଗୀରେ କ୍ୱଚିତ୍ ଦେଖିବାକୁମିଳେ। ଅଧିକାଂଶ ସ୍ଥଳେ ଏହି ଦେବୀମାନେ ଶାନ୍ତ, ସରଳ ଭାବରେ ଆସନ ଗ୍ରହଣ କରିଥାଆନ୍ତି। ଚାମୁଣ୍ଡା, ଦନ୍ତୁରା ଓ କସ୍ମାଙ୍କ ବ୍ୟତୀତ ମାତୃତ୍ୱର ନିଦର୍ଶନ ସ୍ୱରୂପ ଅଧିକାଂଶ ଦେବୀ କୋଳରେ ଏକ ସନ୍ତାନ ଧାରଣ କରିଥାଆନ୍ତି। ଚାମୁଣ୍ଡା, ବାରାହୀ ଓ ଦନ୍ତୁରାଙ୍କ ଭଳି କେତେକ ଦେବୀଙ୍କ ବ୍ୟତୀତ ଅନ୍ୟ ମାତୃକାମାନେ ନିଜ ନିଜ ସ୍ୱାମୀଙ୍କ ଆୟୁଧ ଓ ବାହନ ବ୍ୟବହାର କରୁଥିବା ଦେଖାଯାଏ। ତେବେ, ଏହି ପରିକଳ୍ପନାରେ ମୁଖ୍ୟ ଦେବତାମାନଙ୍କ 'ଶକ୍ତି'ଙ୍କୁ ଏକତ୍ର ପୂଜାକରିବା ଏକମାତ୍ର ଲକ୍ଷ୍ୟ ହୋଇପାରେ। କିନ୍ତୁ ଏହି ମାତୃକାମାନଙ୍କ ମଧ୍ୟରେ ଦନ୍ତୁରା ଓ କସ୍ମାଙ୍କ ଭଳି ଲୋକଦେବୀ ମଧ୍ୟ ଅର୍ନ୍ତଭୁକ୍ତ ହୋଇଛନ୍ତି।

ମାର୍କଣ୍ଡେୟ ପୁରାଣରେ ସପ୍ତ ଓ ଅଷ୍ଟ ମାତୃକାଙ୍କ ନାମ ଉଲ୍ଲେଖ ଅଛି। ଏହି ସପ୍ତମାତୃକା ହେଲେ; ବ୍ରହ୍ମାଣୀ, ବୈଷ୍ଣବୀ, ରୁଦ୍ରାଣୀ, ଇନ୍ଦ୍ରାଣୀ, କୌମାରୀ, ବାରାହୀ ଓ ନାରସିଂହୀ। ଅଷ୍ଟମାତୃକାଙ୍କସ୍ଥଳେ ଏମାନଙ୍କ ସହିତ ଚାମୁଣ୍ଡା ସାମିଲ୍ ହୁଅନ୍ତି। ଅନ୍ୟ କେତେକସ୍ଥଳେ ନାରସିଂହୀ ଅନୁପସ୍ଥିତ ରହନ୍ତି। କେତେକ ରଚନାରେ ବିନାୟକୀ ଏବଂ ବିଭିନ୍ନ ଦିକ୍‌ପାଳିକାଙ୍କ ନାମ 'ମଧ୍ୟ ଦେଖାଯାଏ। ଏହିପରି କେତେକ ପୁରାଣରେ ଷୋଡ଼ଶ ମାତୃକାଙ୍କ ନାମ ଉଲ୍ଲେଖ ଅଛି। ତେବେ, ସର୍ବଭାରତୀୟ ସ୍ତରରେ ପ୍ରାୟ ୧୧ ମାତୃକାଙ୍କ ମୂର୍ତ୍ତି ଦେଖିବାକୁମିଳେ। ଏଥିମଧ୍ୟରୁ ସପ୍ତ କିମ୍ବା ଅଷ୍ଟ ମାତୃକା ଏକତ୍ର ରହୁଥିବାବେଳେ ଏମାନଙ୍କ ଦକ୍ଷିଣ ପାର୍ଶ୍ୱରେ ବୀରଭଦ୍ର-ଶିବ ଏବଂ ବାମରେ ଗଣେଶଙ୍କ ମୂର୍ତ୍ତି ଥାଏ। ଏମାନେ ମାତୃଗଣଙ୍କ ଜ୍ଞାନଦାତା ସଙ୍ଗେ ସଙ୍ଗେ ସେମାନଙ୍କ ରକ୍ଷାକର୍ତ୍ତା ମଧ୍ୟ। ଉପୋରକ୍ତ

୧୧ ମାତୃକାଙ୍କ ମଧ୍ୟରେ ବ୍ରହ୍ମାଣୀ, ବୈଷ୍ଣବୀ, ଇନ୍ଦ୍ରାଣୀ, ରୁଦ୍ରାଣୀ ଓ କୌମାରୀ ବୈଦିକ ଓ ପୌରାଣିକ ଦେବୀ ହୋଇଥିବାବେଳେ ତିନି ପଶୁମୁଖା ଦେବୀ ଯଥା; ବିନାୟକୀ, ବାରାହୀ ଓ ନାରସିଂହି ଦ୍ରାବିଡ଼ ଦେବୀଭାବେ ଅଭିହିତ ହୁଅନ୍ତି। ଏମାନଙ୍କ ବ୍ୟତୀତ ଚାମୁଣ୍ଡା, କସ୍ମା ଓ ଦନ୍ତୁରା ଲୋକଦେବତୀ ଶ୍ରେଣୀୟ ଅଟନ୍ତି। ଓଡ଼ିଶାର ମାତୃକାମୂର୍ତ୍ତି ମଧ୍ୟରେ ବିନାୟକୀ ଓ ନାରସିଂହୀଙ୍କ ମୂର୍ତ୍ତି ଦେଖାଯାଏନାହିଁ। କେତେକ ସ୍ଥଳେ ଇଶାନୀ, କସ୍ମାଙ୍କ ମୂର୍ତ୍ତି ବ୍ୟତୀତ ଦନ୍ତୁରାଙ୍କ ମୂର୍ତ୍ତି ଭିନ୍ନ ଭାବରେ ସ୍ଥାନିତ କରାଯାଇଥାଏ।

ବିରଳ ହେଲେ ହେଁ ମାତୃକାମାନେ ନୈଋତାସୁର ସହିତ ଯୁଦ୍ଧରତଥିବା ଏକ କୃତି ମୁଖଲିଙ୍ଗମ୍‌ର ସୋମେଶ୍ୱର ମନ୍ଦିର ଗାତ୍ରରେ ରହିଛି। ପ୍ରସ୍ତଭାବେଥିବା ରଚନାଟିର ମଧ୍ୟଭାଗରେ ନୈଋତାସୁର ଅସ୍ତ୍ର ଧାରଣ କରି ସମ୍ମୁଖରେ ଥିବା ଚାମୁଣ୍ଡାଙ୍କ ସହିତ ଯୁଦ୍ଧରତ ଥିବବେଳେ ଦୁଇପାର୍ଶ୍ୱରୁ ପ୍ରତ୍ୟେକ ପାର୍ଶ୍ୱରେ ତିନିମାତୃକା ଅସ୍ତ୍ରଶସ୍ତ୍ର ଧାରଣ କରି ଯୁଦ୍ଧଭଙ୍ଗୀରେ ରହିଛନ୍ତି। ଏହି ଦୃଶ୍ୟର ନିମ୍ନ ଭାଗରେ ଥିବା ଛୋଟ ଛୋଟ କୋଠରୀରେ ମାତୃକାମାନଙ୍କ ବାହନଗୁଡ଼ିକୁ ସ୍ଥାନିତ କରାଯାଇଛି। ଏହା ସମ୍ଭବତଃ ଖ୍ରୀ:୯ମ ଶତାବ୍ଦୀର କୃତି। ପରିତାପର ବିଷୟ ଯେ, ରଚନାଟି ବହୁଭାବରେ ଭଗ୍ନ।



ନିଋତାସୁର ସହିତ ସପ୍ତମାତୃକାଙ୍କ ଯୁଦ୍ଧ, ସୋମେଶ୍ୱର ମନ୍ଦିର, ମୁଖଲିଙ୍ଗମ୍

ଓଡ଼ିଶାରେ ସପ୍ତମାତୃକା ମୂର୍ତ୍ତି ପ୍ରଥମେ କେତେକ ମନ୍ଦିରର ଆବରଣଦେବତା ମଧ୍ୟରେହିଁ ଦେଖିବାକୁମିଳେ। ତେବେ, ପରବର୍ତ୍ତୀ ସମୟରେ ସ୍ୱତନ୍ତଭାବେ ପୂଜାର୍ଚ୍ଚନା ନିମନ୍ତେ ମାତୃକା ମୂର୍ତ୍ତି ଓ ମନ୍ଦିରମାନ ନିର୍ମିତ ହୋଇଥିବା ଜଣାଯାଏ। ଭୁବନେଶ୍ୱରର ପରଶୁରାମେଶ୍ୱର ମନ୍ଦିର ଖ୍ରୀ:୭ମ ଶତାବ୍ଦୀର ଅଟେ। ଏହାର ଜଗମୋହନ, ଉତ୍ତରପାର୍ଶ୍ୱ ବାଡ଼ରେ ସପ୍ତମାତୃକାଙ୍କ ସହିତ ବୀରଭଦ୍ର ଓ ଗଣେଶଙ୍କ ମୂର୍ତ୍ତି ଉତ୍‌କୀର୍ଣ୍ଣ ହୋଇଛି। ଏହି ପ୍ରାଚୀନ ଶୈଳୀ କୃତିଗୁଡ଼ିକରେ ସମସ୍ତ ମାତୃକା ଯୋଗାସନରେ ଆସନ ଗ୍ରହଣ କରିଛନ୍ତି। ଏହି ଦେବୀମାନଙ୍କ ମସ୍ତକରେ ସାମାନ୍ୟ ଭିନ୍ନତାସହ ଜଟାମୁକୁଟ, କର୍ଣ୍ଣରେ ଚକ୍ରାକାର କୁଣ୍ଡଳ, ଗଳାରେ ରତ୍ନହାର, ବାହୁରେ ବାଜୁବନ୍ଧ, ହସ୍ତରେ ବଳୟ, ବକ୍ଷରେ ମୁକ୍ତାମାଳା ଯୁକ୍ତ କୁଚବନ୍ଧ ଓ ବସ୍ତ୍ର ପରିଧାନ କରିଥିବା ଦେଖାଯାଏ। ପ୍ରଥମ ମାତୃକା ବ୍ରାହ୍ମୀଙ୍କ ତିନିମସ୍ତକ ମଧ୍ୟରୁ ମୁଖ୍ୟ ମୁଖଟି ଭଗ୍ନ। ଏଠାରେ ଦେବୀଙ୍କ ଚତୁର୍ଥ ମୁଖଟି ପଶ୍ଚାତ୍ ଭାଗରେ ଥିବା ବିଶ୍ୱାସ କରାଯାଏ। ଚର୍ତୁଭୁଜାଦେବୀଙ୍କ ମୁଖ୍ୟ ଦୁଇହସ୍ତରେ ବୀଜପୂରକ ଓ ଏକ ଲମ୍ବ ପୂର୍ଣ୍ଣକୁମ୍ଭ ରହିଥିବାବେଳେ ଉପର ଦକ୍ଷିଣହସ୍ତରେ ଜପମାଳା ଓ ଉପର ବାମହସ୍ତରେ ଏକ କେତକୀ ପୁଷ୍ପ ଧାରଣ କରିଛନ୍ତି। ଦେବୀଙ୍କ ଆସନ ତଳେ, ମଧ୍ୟଭାଗରେ ବାହାନ ହଂସ ଓ ତା'ର ଦୁଇପାର୍ଶ୍ୱରେ ଏକ ବୈଠିଯୁକ୍ତ ପାତ୍ରରେ କିଛି ପୂଜାସାମଗ୍ରୀ ଏବଂ ଏକ ପୂର୍ଣ୍ଣଘଟ ସ୍ଥାନିତ ହୋଇଛି। ଦ୍ୱିତୀୟ

ପ୍ରତିମା ଚର୍ତୁଭୁଜା ଶିବାନୀ ମୁଖ୍ୟ ଦୁଇହସ୍ତରେ ବୀଜପୂରକ ଓ ତ୍ରିଶୂଳ, ଉପର ଦକ୍ଷିଣହସ୍ତରେ ଜପମାଳା ଏବଂ ଉପର ବାମହସ୍ତରେ ଏକ କ୍ଷୁଦ୍ର, କମନୀୟ ଗଦା ଧାରଣ କରିଛନ୍ତି। ଦେବୀଙ୍କ ଆସନ ନିମ୍ନରେ ଶିବଙ୍କ ବାହନ ବୃଷଭ ସହିତ ପୂଜାସାମଗ୍ରୀ ଓ ପୂର୍ଣ୍ଣକୁମ୍ଭ ଥିବାସମ୍ଭବ। କିନ୍ତୁ, ଏହି ଅଂଶଟି ଭାଙ୍ଗିପଡ଼ିଥିବାରୁ ଏଠାରେ ନୂତନ ପଥର ସଂଯୋଗ ହୋଇଛି। ଏହି ଗୋଷ୍ଠୀର ତୃତୀୟ ଦେବୀ ହେଉଛନ୍ତି, କାର୍ତ୍ତିକେୟଙ୍କ ଶକ୍ତି; କୌମାରୀ। ଏଠାରେ ଦ୍ୱିଭୁଜା ଦେବୀଙ୍କ ଦକ୍ଷିଣହସ୍ତରେ ବୀଜପୂରକ ଓ ବାମହସ୍ତରେ ଶୂଳ ଦେଖାଯାଏ। ତା'ଙ୍କ ଆସନ ନିମ୍ନରେ ମୟୂର ଥିବା ସ୍ଥାନଟି ଭାଙ୍ଗିପଡ଼ିଥିବାରୁ ସେଠାରେ ମଧ୍ୟ ନୂତନ ସାଧାପଥର ସଂଯୋଗ ହୋଇଛି। ଚତୁର୍ଥରେ ବିଷ୍ଣୁଙ୍କ ପତ୍ନୀ, ବୈଷ୍ଣବିଙ୍କ ମୂର୍ତ୍ତି ଦେଖିବାକୁମିଳେ। ଏହି ଚର୍ତୁଭୁଜ ଦେବୀ ମୁଖ୍ୟ ଦୁଇହସ୍ତରେ ବୀଜପୂରକ ଓ ପୂର୍ଣ୍ଣଘଟ ଧାରଣ କରିଥିବାବେଳେ ଅନ୍ୟ ଦୁଇହସ୍ତ ଭଗ୍ନ ଯୋଗୁଁ ଆୟୁଧଗୁଡ଼ିକ ବିଷୟରେ ଜାଣିବା କଷ୍ଟକର ହୋଇ ପଡ଼ିଛି। ଦେବୀଙ୍କ ଆସନ ନିମ୍ନରେ ଥିବା ଗରୁଡ଼ ବାହନ ଅଂଶଟିର ଖୋଦନ କାର୍ଯ୍ୟ ଅସମ୍ପୂର୍ଣ୍ଣ ରହିଛି। ପଞ୍ଚମ ମାତୃକା ଇନ୍ଦ୍ରପତ୍ନୀ, ଇନ୍ଦ୍ରାଣୀ ଦ୍ୱିଭୁଜା ଅଟନ୍ତି। ସେ ଦକ୍ଷିଣହସ୍ତରେ ଏକ ପୂର୍ଣ୍ଣପାତ୍ର ଏବଂ ବାମହସ୍ତରେ ବଜ୍ର ଧାରଣ କରିଥିବାବେଳେ ତା'ଙ୍କ ଆସନ ନିମ୍ନରେ ବାହନ ହସ୍ତୀ ସହିତ କିଛି ପୂଜା ପଦାର୍ଥ ସ୍ଥାନିତ ହୋଇଛି। ଷଷ୍ଠ ସ୍ଥାନରେ ବରାହ-ବିଷ୍ଣୁଙ୍କ ଶକ୍ତି, ବାରାହୀ ରହିଛନ୍ତି। ଏହି ଚର୍ତୁଭୁଜାଦେବୀ ମୁଖ୍ୟ ଦୁଇ ହସ୍ତରେ ମତ୍ସ୍ୟ ଓ ସୁରାପାତ୍ର, ଉପର ଦକ୍ଷିଣ ଏବଂ ବାମହସ୍ତରେ ଯଥାକ୍ରମେ: କର୍ତ୍ତରୀ ଓ ପରଶୁ ଧାରଣ କରିଛନ୍ତି। ଦେବୀଙ୍କ ଆସନତଳ, ମଧ୍ୟଭାଗରେ ଜଣେ ଗଣଙ୍କ ପିତୁଳା ଓ ଦୁଇ ପାର୍ଶ୍ୱରେ ପୂଜା ସାମଗ୍ରୀ ସହ ପୂର୍ଣ୍ଣଘଟ ସ୍ଥାନିତ ହୋଇଛି। ଏହି ଗୋଷ୍ଠୀର ଅନ୍ତିମ ବା ସପ୍ତମ ମାତୃକା ହେଉଛନ୍ତି; ଶିବଦୂତୀ ବା ଚାମୁଣ୍ଡା। ସେ ମୁଖ୍ୟ ଦୁଇହସ୍ତରେ ବୀଜପୂରକ ଓ ରକ୍ତପାତ୍ର ସମେତ ଉପର ଦକ୍ଷିଣହସ୍ତରେ କର୍ତ୍ତରୀ ଓ ବାମହସ୍ତରେ ତ୍ରିଶୂଳ ଧାରଣ କରିଛନ୍ତି। ତା'ଙ୍କ ଆସନ ତଳେ ବାହନ ପେଚକ ସହିତ ପୂଜାପଦାର୍ଥ ଓ ପୂର୍ଣ୍ଣଘଟ ଦେଖିବାକୁମିଳେ।





ସପ୍ତମାତୃକାଙ୍କ ମଧ୍ୟରୁ ଇନ୍ଦ୍ରାଣୀ,ବାରାହୀ ଓ ଚାମୁଣ୍ଡା, ପରଶୁରାମେଶ୍ୱର ମନ୍ଦିର, ଭୁବନେଶ୍ୱର

ଏହା ବ୍ୟତୀତ ମାତୃଗଣଙ୍କ ଦକ୍ଷିଣଭାଗରେ ଅର୍ଥାତ୍ ପ୍ରାରମ୍ଭରେ ରହିଥିବା ବୀରଭଦ୍ର ମୂର୍ତ୍ତିର ଉର୍ଦ୍ଧ୍ୱଭାଗ ଭଗ୍ନ। ଅର୍ଦ୍ଧପରାୟଣିକ ଭଙ୍ଗୀରେ ବସିଥିବା ଏହି ଦେବତା ଦକ୍ଷିଣହସ୍ତରେ ଏକ ଚମ୍ପକପୁଷ୍ପ ଧାରଣ କରି ବାମହସ୍ତଟିକୁ ସହଜ ଭାବରେ ବାମଜାନୁ ଉପରେ ରଖିଛନ୍ତି। ଏହି ପାର୍ଶ୍ୱରେ ମୂର୍ତ୍ତିର ପଶ୍ଚାତ୍‌ଭାଗରେ ଥିବା ଭଗ୍ନ ତ୍ରିଶୂଳରଦଣ୍ଡଟି କେବଳ ଦୃଶ୍ୟମାନ ହେଉଛି। ବୀରଭଦ୍ରଙ୍କ ଆସନତଳେ

ତା'ଙ୍କ ବାହନ ବୃଷଭ ସହିତ ପୂର୍ବପରି ପୂଜାସାମଗ୍ରୀ ଓ ପୂର୍ଣ୍ଣଘଟ ସ୍ଥାନିତ ହୋଇଛି । ମାତୃକା ଗଣଙ୍କ ଶେଷଭାଗରେ ଅର୍ଦ୍ଧପରାୟଣିକ ଭଙ୍ଗୀରେ ବସିଥିବା ଗଣେଶ ମୁଖ୍ୟ ଦୁଇହସ୍ତରେ କନ୍ଦମୂଳ ଓ ଲଡୁକ ପାତ୍ର ଧାରଣ କରିଥିବାବେଳେ ତାଙ୍କ ଉପର ଦକ୍ଷିଣହସ୍ତରେ ଜପମାଳା ଓ ବାମହସ୍ତରେ ପରଶୁ ଦେଖିବାକୁମିଳେ । ଗଣେଶଙ୍କ ଆସନତଳେ, ବୈଠିଉପର ପାତ୍ରରେ କିଛିଫଳ ଓ ଅନ୍ୟ ଗୋଟିଏ ପାତ୍ରରେ ଲଡ଼ୁକ୍ ସ୍ଥାନିତ ହୋଇଛି । ଏହି ପ୍ରାଚୀନ ରଚନାରେ ଗଣେଶଙ୍କ ସହିତ ବାହନ ଦେଖାଯାଏନାହିଁ । ମନ୍ଦିର ବାଡ଼ରେ ଏହି ପ୍ରତ୍ୟେକ ମୂର୍ତ୍ତି ପ୍ରାୟ ୦.୩୭ ମିଟର ଉଚ୍ଚତା ତଥା ୦.୩୦ମିଟର ପ୍ରସ୍ଥ ବିଶିଷ୍ଟ ସ୍ଥାନରେ ସରଳ, ଅଗଭୀର ଶୈଳୀରେ ଉତ୍କୀର୍ଣ୍ଣ ହୋଇଛି ।

ଏହାର ପରବର୍ତ୍ତୀ ପର୍ଯ୍ୟାୟ ଖ୍ରୀ:୮ମ-୯ମ ଶତାବ୍ଦୀରେ ନିର୍ମିତ ମହାନଦୀ ଟାପୁର ସିଂହନାଥ ମନ୍ଦିର ଓ ଆନ୍ଧ୍ରପ୍ରଦେଶ, ମୁଖଲିଙ୍ଗମ୍‌ର ମଧୁକେଶ୍ୱର ମନ୍ଦିରଗାତ୍ରର ମାତୃକା ମୂର୍ତ୍ତିଗୁଡ଼ିକ ଉଲ୍ଲେଖଯୋଗ୍ୟ । ସିଂହନାଥମନ୍ଦିର ଜଗମୋହନ ପ୍ରବେଶଦ୍ୱାରରେ ସପ୍ତମାତୃକାଙ୍କ ସହିତ କେବଳ ବୀଣାଧର-ଶିବଙ୍କ ମୂର୍ତ୍ତି ଦେଖାଯାଏ । ମଧୁକେଶ୍ୱରମନ୍ଦିର ପରିସରରେଥିବା ଏକ ଦେବୀମନ୍ଦିରର ପ୍ରବେଶଦ୍ୱାରର ସପ୍ତମାତୃକାଙ୍କ ସହିତ କେବଳ ଗଣେଶଙ୍କ ପ୍ରତିମା ହିଁ ସ୍ଥାନିତ ହୋଇଛି । ଉଭୟ ସ୍ଥାନର ଅଧିକାଂଶ ମାତୃକା ଲଳିତାସନରେ ବସିଥିବାବେଳେ ବରାହୀ ଓ ଚାମୁଣ୍ଡା ଅର୍ଦ୍ଧପରାୟଣିକ ଭଙ୍ଗୀରେ ଆସନ ଗ୍ରହଣ କରିଥିବାଦେଖାଯାଏ । ଉଭୟ ସ୍ଥାନର ଦେବୀମାନେ ଧାରଣ କରିଥିବା ଆୟୁଧରେ ପ୍ରାୟ ସମତା ରହିଥିବା ସ୍ଥଳେ କଳାଶୈଳୀରେ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଏହା ବ୍ୟତୀତ ସିଂହନାଥ, ବାରାହୀଙ୍କ ବାହନ ଭାବରେ ଜଣେ ଗଣ ଓ ମଧୁକେଶ୍ୱର ବରାହୀଙ୍କ ସହିତ ମହିଷ ବାହନ ଦେଖିବାକୁମିଳେ । କେତକସ୍ଥଳେ ଦେବୀମାନେ ଦକ୍ଷିଣହସ୍ତରେ ବରଦମୁଦ୍ରା ପ୍ରଦର୍ଶନ କରିଛନ୍ତି ।





ମାତୃକା: ବୈଷ୍ଣବୀ, ଇନ୍ଦ୍ରାଣୀ ଓ ବାରାହୀ, ସିଂହନାଥ ମନ୍ଦିର, ବୈଦ୍ୟେଶ୍ୱର

ଏହାର ପରବର୍ତ୍ତୀ ପର୍ଯ୍ୟାୟ, ଅର୍ଥାତ୍ ମଧ୍ୟଯୁଗ ପ୍ରାରମ୍ଭରୁ ଅଳ୍ପକେତେକ ମନ୍ଦିର ଗାତ୍ରରେ ଉତ୍କୀର୍ଣ୍ଣ ହୋଇଥିବା ମାତୃକା ମୂର୍ତ୍ତିଗୁଡ଼ିକ ମନ୍ଦିରର ଆକାର ତୁଳନାରେ ଗୌଣ ମନେହୁଏ । ଏହାର ଉଦାହରଣ ଭୁବନେଶ୍ୱର ନିକଟ, କଳାରାହଙ୍ଗର ଜଲେଶ୍ୱର ମନ୍ଦିର, ଜଟଣୀ ନିକଟ ବେରବୋଇର ଶିବମନ୍ଦିର ଓ ବାଲେଶ୍ୱରଜିଲ୍ଲା ସେରଗଡ଼ର ଦୁର୍ଗା ମନ୍ଦିରରୁ ଚ୍ୟୁତ ହୋଇଥିବା ଏକ ବକ୍ରମସ୍ତକ ନକ୍ସାର ମାତୃକା ମୂର୍ତ୍ତିଗୁଡ଼ିକରୁ ଜାଣିହୁଏ । ଏପରିକି, ପରବର୍ତ୍ତୀ ସମୟର ବହୁ ମନ୍ଦିରରେ ସପ୍ତମାତୃକାଙ୍କ ମୂର୍ତ୍ତି ଦେଖିବାକୁ ମିଳେନାହିଁ । ତେବେ, ଏହି ସମୟରେ ମାତୃକାମାନଙ୍କୁ ସ୍ୱତନ୍ତ୍ରଭାବେ ପୂଜାର୍ଚ୍ଚନା

କରିବା ପ୍ରଥା ପ୍ରଚଳିତ ହୋଇଥିବା ମନେହୁଏ। କେତେକ ସ୍ଥାନରେ ମାତୃକା ମନ୍ଦିର ନିର୍ମିତ ହୋଇଥିବାବେଳେ ଅନ୍ୟ କେତେକ ଶିବ ମନ୍ଦିର ଓ ଦେବୀ ମନ୍ଦିର ପରିସରରେ ମାତୃକାମୂର୍ତ୍ତିମାନ ପ୍ରତିଷ୍ଠା କରାଯାଇ ପୂଜାର୍ଚ୍ଚନା କରାଯାଉଥିବା ପ୍ରମାଣମିଳେ। ପଶ୍ଚିମଓଡ଼ିଶାର ରାଣୀପୁର-ଝରିଆଲ୍ ଠାରେ ଏକ ପାହଡ଼ରେ ମଧ୍ୟ ସପ୍ତମାତୃକାଙ୍କ ପିତୁଳା ଉତ୍‌କୀର୍ଣ୍ଣ ହୋଇଛି। ସପ୍ତମାତୃକାଙ୍କ ଖୋଲାମୂର୍ତ୍ତି ବହୁସ୍ଥାନରେ ରହିଥିବାବେଳେ ଯାଜପୁର, ପୁରୀ, ଭୁବନେଶ୍ୱର, ଧର୍ମଶାଳା, ସଠଳପୁର ଓ ସେରଗଡ଼ ମାତୃକାପୂଜାର ଗୋଟିଏ ଗୋଟିଏ ପ୍ରଖ୍ୟାତ ପୀଠ ଥିବା ଜଣାଯାଏ।

ମାତୃକାମାନଙ୍କ ପୂଜାର୍ଚ୍ଚନା ନିମନ୍ତେ ସ୍ୱତନ୍ତ୍ର ଭାବରେ ନିର୍ମିତ ଅନେକ ମନ୍ଦିର ଭାଙ୍ଗି ନଷ୍ଟ ହୋଇପଡ଼ିଥିବାବେଳେ ଭୁବନେଶ୍ୱରର ବୈତାଳଦେଉଳଟି ସୁରକ୍ଷିତ ରହିଛି। ଏହି ମନ୍ଦିରର ମୁଖ୍ୟ ଦେବୀ କପାଳିନୀ ବା ଚାମୁଣ୍ଡାଙ୍କ ସହିତ ଅନ୍ୟ ମାତୃଗଣଙ୍କ ମୂର୍ତ୍ତି ପୂଜାର୍ଚ୍ଚନା ନିମନ୍ତେ ଅଧିଷ୍ଠିତ ହୋଇଥିବା ଦେଖାଯାଏ। ଏହି ଏକକ ମୂର୍ତ୍ତିଗୁଡ଼ିକର ନିର୍ମାଣ ଶୈଳୀ ବିକଶିତ ଅର୍ଥାତ୍, ତ୍ରିପାର୍ଶ୍ୱ ଦୃଶ୍ୟ ସମ୍ବଳିତ। ପ୍ରତ୍ୟେକ ମୂର୍ତ୍ତି ପ୍ରଚ୍ଛଦ ଆଲମ୍ବ ପଥର ଉପରେ ସରଳ ପ୍ରଭାମଣ୍ଡଳ ରହିଛି। ଦେଉଳ ଭିତର ମୁଖ୍ୟ ଅଧିଷ୍ଠାତ୍ରୀ ଦେବୀ ଚାମୁଣ୍ଡାମୂର୍ତ୍ତିର ଉଚ୍ଚତା ପ୍ରାୟ ଦେଢ଼ମିଟର ହୋଇଥିବାବେଳେ ଅନ୍ୟ ନଅଗୋଟି ମୂର୍ତ୍ତି ସାମାନ୍ୟ କମ୍ ଉଚ୍ଚତା ବିଶିଷ୍ଟ ଅଟେ। ଏହି ଦେବୀମାନଙ୍କ ମଧ୍ୟରେ ବୀରଭଦ୍ର, କୌମାରୀ ଓ କୌଶିକୀ (ପାର୍ବତୀଙ୍କ ଅନ୍ୟରୂପ) ବିଶ୍ୱପଦ୍ମ ଉପରେ ଲଳିତାସନରେ ବସିଥିବାବେଳେ ବ୍ରାହ୍ମୀ, ବୈଷ୍ଣବୀ, ଶିବାନୀ ଓ ଇନ୍ଦ୍ରାଣୀ ଯୋଗାସନରେ ଏବଂ ମୁଖ୍ୟଦେବୀ ଚାମୁଣ୍ଡାଙ୍କ ସମେତ ବାରାହୀ ଓ ଗଣେଶ ଅର୍ଦ୍ଧପରାୟଣିକ ଭଙ୍ଗୀରେ ଆସନ ଗ୍ରହଣ କରିଥିବା ଦେଖାଯାଏ। ଏମାନଙ୍କ ମଧ୍ୟରେ କୌମାରୀ, ଇନ୍ଦ୍ରାଣୀ, କୌଶିକୀ ଦ୍ୱିଭୁଜା ଓ ମୁଖ୍ୟଦେବୀ ଚାମୁଣ୍ଡା ଅଷ୍ଟଭୁଜା ହୋଇଥିବାବେଳେ ଅନ୍ୟ ସମସ୍ତ ଦେବୀ ଚର୍ତୁଭୁଜ ଅଟନ୍ତି। ଅଧିକାଂଶ ସ୍ଥଳେ ଏହି ମୂର୍ତ୍ତିଗୁଡ଼ିକର ହସ୍ତଭଗ୍ନ ଯୋଗୁଁ ଆୟୁଧଗୁଡ଼ିକ ଅସ୍ପଷ୍ଟ ହୋଇପଡ଼ିଛି। ତେବେ, ସମସ୍ତ ଦେବୀ ନିଜ ନିଜର ପାରମ୍ପରିକ ଆୟୁଧ ଧାରଣ କରିଥିବା ସୂଚନାମିଳେ। ଏହା ବ୍ୟତୀତ ପ୍ରତ୍ୟେକ ମୂର୍ତ୍ତିର ଆସନ ତଳେ ସେମାନଙ୍କ ବାହନ, କିଛି ପୂଜାସାମଗ୍ରୀ ଓ ପୂର୍ଣ୍ଣଘଟ ଯଥାରୀତି ସ୍ଥାନିତ ହୋଇଥିବା ଦେଖାଯାଏ। ଖାକରା ଶୈଳୀର ଏହି ବୈତାଳଦେଉଳ ଓ ତା'ର ମୂର୍ତ୍ତିକଳା ଭୌମକରକାଳୀନ ଅର୍ଥାତ୍ ଖ୍ରୀ ୯ମ ଶତାବ୍ଦୀର କୀର୍ତ୍ତି ଅଟେ। ଉପକୂଳ ଅଞ୍ଚଳରେ ସୋମବଂଶୀମାନଙ୍କ ରାଜତ୍ୱ ସମୟର ପ୍ରଥମ ଭାଗରେ ମାତୃମୂର୍ତ୍ତିମାନେ କୋଳରେ ଶିଶୁ ଧାରଣ କରିବା ପ୍ରଥା ଆରମ୍ଭ ହୋଇଥିବା ଜଣାଯାଏ। ଭୁବନେଶ୍ୱରର ମୁକ୍ତେଶ୍ୱର ମନ୍ଦିର, ଜଗମୋହନ ଛାତତଳ ବା ସିଲିଂର ଅଷ୍ଟଦଳ ପଦ୍ମରେ ଉତ୍‌କୀର୍ଣ୍ଣ ହୋଇଥିବା ମାତୃକା ମୂର୍ତ୍ତିଗୁଡ଼ିକରେ ଏହି ଉଦାହରଣ ଦେଖିବାକୁମିଳେ।

ଭୁବନେଶ୍ୱରର ଦେବୀପାଦହରା ପୁଷ୍କରିଣୀ କୂଳରେ ଏହି ସମୟର ଏକ ସୁନ୍ଦର ମାତୃକା ମୂର୍ତ୍ତିପୁଞ୍ଜ ଓ ମନ୍ଦିର ଥିଲା। ଏହି ସ୍ଥାନରେ ଏକ ଆଧୁନିକ ଭଜନମଣ୍ଡପ ନିର୍ମାଣବେଳେ ମାଟିତଳୁ କେତୋଟି ସୁନ୍ଦର ମାତୃକା ମୂର୍ତ୍ତି ଉଦ୍ଧାର କରାଯାଇ ଲିଙ୍ଗରାଜମନ୍ଦିର କାର୍ଯ୍ୟାଳୟରେ ରଖାଯାଇଛି। କଳାଶୈଳୀରୁ ଏହା ମୁକ୍ତେଶ୍ୱର ମନ୍ଦିରର କିଞ୍ଚିତ୍ ପରବର୍ତ୍ତୀ ଅର୍ଥାତ୍, ଖ୍ରୀ: ୧୦ମ-୧୧ଶ ଶତାବ୍ଦୀର ବୋଲି ଅନୁମାନ କରାଯାଏ। ଲୋକଙ୍କ ଅସହଯୋଗ ଓ ସରକାରଙ୍କ ଉଦାସୀନତା ଯୋଗୁଁ ଏହି ମୂର୍ତ୍ତିଗୁଡ଼ିକ ରାଜ୍ୟସଂଗ୍ରହାଳୟକୁ ଅଣାଯାଇ ପାରିନାହିଁ।

ଓଡ଼ିଶାରେ ଭୌମକର ରାଜତ୍ୱ କାଳରୁ ଯାଜପୁର ଏକ ମାତୃପୂଜା କେନ୍ଦ୍ରଭାବେ ପ୍ରତିଷ୍ଠା ଲାଭକରିଥିଲା। ଏହାର ବିଭିନ୍ନ ଅଞ୍ଚଳରେ ଅନେକ ଖୋଲା ମାତୃକାମୂର୍ତ୍ତି ଦେଖାଯାଉଥିବାବେଳେ

ଯାଜପୁରରେ ଭିନ୍ନ ସମୟରେ ନିର୍ମିତ ଦୁଇ ପୁଞ୍ଜ ଉଲ୍ଲେଖଯୋଗ୍ୟ ସପ୍ତମାତୃକାମୂର୍ତ୍ତି ରହିଛି। ସମୟାନୁକ୍ରମ ଏହି ମୂର୍ତ୍ତିଗୁଡ଼ିକର କଳାଶୈଳୀରେ ପାର୍ଥକ୍ୟ ଦେଖିବାକୁ ମିଳେ। ପ୍ରଥମ ପର୍ଯ୍ୟାୟର ମୂର୍ତ୍ତିଗୁଡ଼ିକ କାରୁକଳାପୂର୍ଣ୍ଣ ଉନ୍ନତ କଳାଶୈଳୀର କୃତି ଏବଂ ଦ୍ୱିତୀୟ ପର୍ଯ୍ୟାୟ ମୂର୍ତ୍ତିଗୁଡ଼ିକ ଆକାରରେ ବଡ଼ ହେଲେହେଁ, ଉପସ୍ଥାପନା ନିରାଡ଼ମ୍ବର ଅଟେ। ପ୍ରଥମ ମୂର୍ତ୍ତିପୁଞ୍ଜ ରାଜା ଯଜାତିକେଶରୀଙ୍କ ସମୟର ଯଜ୍ଞବେଳେ ବୈତରଣୀ ନଦୀ କୂଳରେ ପ୍ରତିଷ୍ଠା କରାଯାଇଥିବା ଜଣାଯାଏ। ବର୍ତ୍ତମାନ ତିଷ୍ଠିରହିଥିବା ଏହି ସାତମୂର୍ତ୍ତି ହେଲେ: ଶିବାନୀ, କୌମାରୀ, ବୈଷ୍ଣବୀ, ଇନ୍ଦ୍ରାଣୀ, ବରାହୀ, ଚାମୁଣ୍ଡା ଓ କିଞ୍ଚିତ୍ ପରବର୍ତ୍ତୀ ସମୟରେ ଏହା ସହିତ ସାମିଲ୍ କରାଯାଇଥିବା ଦନ୍ତୁରାଙ୍କ ମୂର୍ତ୍ତି। ପ୍ରଥମ ଛଅଗୋଟି ମୂର୍ତ୍ତି ସମକଳାଶୈଳୀର ହୋଇଥିବାସ୍ଥଳେ ଦନ୍ତୁରାଙ୍କ ମୂର୍ତ୍ତିଟି ନିମ୍ନମାନର ଅଟେ। ଏହି ଗୋଷ୍ଠୀର ପ୍ରଥମ ମାତୃକା ବ୍ରହ୍ମାଣୀଙ୍କ ମୂର୍ତ୍ତିଟି କୌଣସି ସମୟରେ ନଷ୍ଟ ହୋଇପଡ଼ିଥିବା ସମ୍ଭବ। ମାତୃକାମାନଙ୍କ ସହିତ ରହୁଥିବା ସୁରକ୍ଷାର ଦେବତା ବୀରଭଦ୍ର ଓ ଗଣେଶଙ୍କ ମଧ୍ୟରୁ କେବଳ ଗଣେଶଙ୍କ ପ୍ରତିମାଟି ଏଠାରେ ରହିଛି। ଏଥିମଧ୍ୟରେ ଛ'ଅ ମାତୃକା ଲଳିତାସନରେ ବସିଥିବା ଚର୍ତୁଭୁଜା ମୂର୍ତ୍ତି ଅଟନ୍ତି। ଚାମୁଣ୍ଡାଙ୍କ ବ୍ୟତୀତ ଅନ୍ୟ ପାଞ୍ଚଦେବୀ ବାମକୋଳରେ, ବାମହସ୍ତରେ ଏକ, ଏକ ଶିଶୁ ଧାରଣ କରିବା ସହିତ ଦକ୍ଷିଣହସ୍ତରେ ଅଭୟମୁଦ୍ରା ପ୍ରଦର୍ଶନ କରୁଛନ୍ତି। ଏହା ବ୍ୟତୀତ ପ୍ରତ୍ୟେକେ ଉପର ଦୁଇ ହସ୍ତରେ ନିଜ ନିଜର ମୁଖ୍ୟ ଆୟୁଧ ଧାରଣ କରିଥିବା ଦେଖାଯାଏ। ସବାରୂଢ଼ା, ଚାମୁଣ୍ଡା ନିଜ ଚାରିହସ୍ତରେ ଖପୁରୀର ରକ୍ତପାତ୍ର, କର୍ତ୍ତରୀ, ନରମୁଣ୍ଡ ଓ ଖଟ୍ୱାଙ୍ଗ ଧାରଣକରିବା ସହିତ ଉପର ବାମହସ୍ତର କନିଷ୍ଠାଙ୍ଗୁଳିକୁ ମୁଖ ଦନ୍ତ ନିକଟରେ ରଖିଛନ୍ତି। ଚାମୁଣ୍ଡାଙ୍କ ବ୍ୟତୀତ ସମସ୍ତମାତୃକାଙ୍କ ପଦ୍ମପୃଷ୍ଠ ଆସନ ଓ ଆସନ ନିମ୍ନରେ ସେମାନଙ୍କ ବାହନ ସ୍ଥାନିତ ହୋଇଛି। ଏହି ଦେବୀମାନଙ୍କ ଶିରଭୂଷଣ ଅନୁଧ୍ୟାନ ବେଳେ ଦେଖାଯାଏ ଯେ, ବୈଷ୍ଣବୀ ଏବଂ ଇନ୍ଦ୍ରାଣୀଙ୍କ ମସ୍ତକରେ କିରୀଟମୁକୁଟ, କୌମାରୀଙ୍କ ମସ୍ତକରେ ତ୍ରିଚୁଡ଼ାଯୁକ୍ତ କେରଣ୍ଡମୁକୁଟ, ବରାହୀଙ୍କ ମସ୍ତକରେ ଚକ୍ରାକାର କୁଞ୍ଚିତକେଶ ଏବଂ ଚାମୁଣ୍ଡାଙ୍କ କେଶହୀନ ମସ୍ତକଉପରେ ନାଗର ସପ୍ତଫଣା ଓ ଅଗ୍ନିଶିଖାର ସଙ୍କେତ ରହିଛି। ଏହା ବ୍ୟତୀତ ସମସ୍ତ ଦେବୀ କମନୀୟ ବସ୍ତ୍ରାଳଙ୍କାର ପରିଧାନ କରିଛନ୍ତି। ପ୍ରତ୍ୟେକ ମୂର୍ତ୍ତିର ପ୍ରଚ୍ଛଦ ପଥରଟି ଅର୍ଦ୍ଧଚକ୍ର, ତୋରଣାକାର ହୋଇଥିବାବେଳେ ପ୍ରତ୍ୟେକ ମୂର୍ତ୍ତିର ଉଚ୍ଚତା ପ୍ରାୟ ୨.୦୦ମିଟରରୁ ସାମାନ୍ୟ କମ୍ ଏବଂ ପ୍ରସ୍ଥ ପ୍ରାୟ ଏକ ମିଟର ଅଟେ। ଏମାନଙ୍କ ସହିତ ପୂଜା ପାଉଥିବା ଦେବୀ ଦନ୍ତୁରାଙ୍କ ମୂର୍ତ୍ତି ସମ୍ପୂର୍ଣ୍ଣ ଏକ ଭିନ୍ନ ଶୈଳୀର କୃତି। ଏଠାରେ ବୃଦ୍ଧା ଦନ୍ତରା (ବୁଢ଼ୀ ଠାକୁରାଣୀ) ଦୁଇ ଆଣ୍ଠୁଟେକି ସରଳ ବା ଭଦ୍ରାସନରେ ବସିଥିବାବେଳେ ତା'ଙ୍କ ଦକ୍ଷିଣହସ୍ତଟି ଦକ୍ଷିଣପାଦ ଉପରେ ଏବଂ ବାମହସ୍ତଟି ବାମଆଣ୍ଠୁ ଉପରେ ରହିଛି। ଦେବୀଙ୍କ ମସ୍ତକ କେଶବିହୀନ, ଶରୀରରେ ସ୍ୱଚ୍ଛବସ୍ତ୍ର ସହିତ ଗ୍ରାମ୍ୟ ଅଳଙ୍କାର ପରିଧାନକରିଥିବା ଦେଖାଯାଏ। ଏହା ବ୍ୟତୀତ ତାଙ୍କ ପଦ୍ମପୃଷ୍ଠ ଆସନତଳେ ପୂଜାସାମଗ୍ରୀ ଓ ଏକ ଘଣ୍ଟ ସହିତ ଦୁଇ ପାର୍ଶ୍ୱରେ ପରିଚାରିକା ଆଣ୍ଠୁମାଡ଼ି ନମସ୍କାର ମୁଦ୍ରାରେ ରହିଛନ୍ତି। ଚତୁଃର୍ପାଶ୍ୱ ଦୃଶ୍ୟସମ୍ବଳିତ ମୂର୍ତ୍ତିଟିର ଉଚ୍ଚତା ପ୍ରାୟ ଦେଢ଼ମିଟର ଓ ପ୍ରସ୍ଥ ଏକ ମିଟରରୁ ସାମାନ୍ୟ କମ୍।

ଯାଜପୁରର ଦ୍ୱିତୀୟ ପୁଞ୍ଜ ମାତୃକାମୂର୍ତ୍ତି ମଧ୍ୟରୁ ମୁସଲମାନ ଆକ୍ରମଣ ଓ ରାଜତ୍ୱ ସମୟରେ ଅଧିକାଂଶ ସମ୍ପୂର୍ଣ୍ଣ ଲୋପ ପାଇଯାଇଛି। ସ୍ଥାନୀୟ ଲୋକେ ମାତ୍ର ତିନିଗୋଟି ଭଗ୍ନ ମୂର୍ତ୍ତିକୁ ସଂଗ୍ରହକରି ସ୍ଥାନୀୟ ଏସ୍.ଡ଼ି.ଓ.ଙ୍କ କାର୍ଯ୍ୟାଳୟ ପରିସରରେ ରଖିଛନ୍ତି। ଲଳିତାସନରେ ବସିଥିବା ଏହି ତିନିମୂର୍ତ୍ତି ହେଲେ; ଇନ୍ଦ୍ରାଣୀ, ବରାହୀ ଓ ଚାମୁଣ୍ଡା। ଏହି ଚର୍ତୁଭୁଜା ମୂର୍ତ୍ତିଗୁଡ଼ିକର ହସ୍ତ ବହୁଭାବରେ ଭଗ୍ନ



ଯାଜପୁର, ଦଶାଶ୍ୱମେଧ ଘାଟରେ ଥିବା
ସପ୍ତମାତୃକାଙ୍କ ମଧ୍ୟରୁ, ମାତୃକା ବାରାହୀ ଓ ଚାମୁଣ୍ଡା

ହୋଇଥିବାବେଳ ନିଜ ନିଜର ଆସନ ତଳେ ବାହନଗୁଡ଼ିକ ସୁରକ୍ଷିତ ରହିଛି । ଗୋଲ ଏବଂ ନିରାଡ଼ମ୍ବର ଶୈଳୀରେ ନିର୍ମିତ ବିଶାଳ ପ୍ରତିମାଗୁଡ଼ିକର ସାଧା ପ୍ରଚ୍ଛଦପଥରର ମଧ୍ୟଭାଗରେ ଚତୁଃଷ୍କୋଣ ଶୂନ୍ୟସ୍ଥାନ ଦେଖିବାକୁମିଳେ। ଧୂସରିଆ ମୁଗୁନିପଥରରେ ନିର୍ମିତ ପ୍ରତ୍ୟେକ କୃତିର ଉଚ୍ଚତା ପ୍ରାୟ ୨.୭୦ ମିଟର ଓ ପ୍ରସ୍ଥ ପ୍ରାୟ ୧.୮୦ ମିଟର ଅଟେ।

ପୁରୀ, ଶ୍ରୀମନ୍ଦିରର ମାଦଳାପାଞ୍ଜିରୁ ଜଣାଯାଏ ଯେ, କେଶରୀ ବଂଶର ଦୁଇ ନରପତି ଶକ୍ତିପୂଜା ନିମନ୍ତେ ଅଷ୍ଟଚଣ୍ଡୀ ଓ ସାତଭଉଣୀଙ୍କ ମୂର୍ତ୍ତି ଓ ମନ୍ଦିର ପ୍ରତିଷ୍ଠା କରିଥିଲେ। ଏହା ମଧ୍ୟରୁ ଗୋଟିଏ ମାତୃକାପୁଞ୍ଜ ଶ୍ରୀକ୍ଷେତ୍ରର ମାର୍କଣ୍ଡେୟ ପୋଖରୀ କୂଳରେ, ଏକ ପରବର୍ତ୍ତୀ ସମୟର ମନ୍ଦିର ମଧ୍ୟରେ ପୂଜାପାଉଛନ୍ତି। ପରିତାପର ବିଷୟଯେ, ଉଚ୍ଚକୋଟୀର କଳାଶୈଳୀର ଏହି ପ୍ରତିମାଗୁଡ଼ିକର ହସ୍ତ ବହୁଭାବରେ ଭଗ୍ନ। ତେବେ, ଲଳିତାସନରେ ବସିଥିବା ଏହି ଦେବୀମାନଙ୍କ ଚର୍ତୁଭୁଜରେ ନିଜନିଜର ପାରମ୍ପରିକ ଆୟୁଧ ରହିଥିବା ସୂଚନାମିଳେ। ପ୍ରତ୍ୟେକ ମୂର୍ତ୍ତିର ଆସନତଳେ ସେମାନଙ୍କ ବାହନଗୁଡ଼ିକ ସୁରକ୍ଷିତ ରହିଛି। ଚାମୁଣ୍ଡାଙ୍କ ବ୍ୟତୀତ ଅନ୍ୟ ଛ'ଅ ମୂର୍ତ୍ତି କୋଳରେ ଶିଶୁ ଧାରଣକରିଛନ୍ତି। ମାତୃକା ମୂର୍ତ୍ତିମାନଙ୍କ ପ୍ରାରମ୍ଭରେ ଏଠାରେ ବୀରଭଦ୍ରଙ୍କ ପରିବର୍ତ୍ତେ ବୀଣାଧର-ଶିବଙ୍କ ମୂର୍ତ୍ତି ଓ ମାତୃକାଙ୍କ ଶେଷରେ ଗଣେଶଙ୍କ ପ୍ରତିମା ଦେଖିବାକୁମିଳେ। ମୁଗୁନିପଥରରେ ନିର୍ମିତ ମନୁଷ୍ୟଉଚ୍ଚତାର ଏହି କୃତିଗୁଡ଼ିକ ଖ୍ରୀ: ୧୧ଶ ଶତାବ୍ଦୀରବୋଲି ଅନୁମାନ କରାଯାଏ।

ପୂର୍ବୋକ୍ତ ମାତୃକାମୂର୍ତ୍ତି ବ୍ୟତୀତ ଉପକୂଳ ଅଞ୍ଚଳର ଅନ୍ୟକେତେକ ସ୍ଥାନରେ ମଧ ବିଭିନ୍ନ ସମୟର ମାତୃକାମୂର୍ତ୍ତି ଦେଖିବାକୁମିଳେ। ଏହା ମଧ୍ୟରେ ଜଗତ୍‌ସିଂହପୁର ନିକଟ ସଠଳପୁରଠାରେ ଏକ ଅଜୈକପାଦ ଭୈରବ ମନ୍ଦିର ସମ୍ମୁଖରେ ମାତୃକାମାନଙ୍କ ଏକ ସ୍ୱତନ୍ତ୍ର ମନ୍ଦିର ରହିଥିଲା। ଏଠାର ସୁନ୍ଦର ସପ୍ତମାତୃକାଙ୍କ ସମେତ ଗଣେଶ, ବୀରଭଦ୍ର-ଶିବଙ୍କ ସହିତ ଅନ୍ୟକେତେକ ମୂର୍ତ୍ତି

ନବନିର୍ମିତ ମନ୍ଦିର ମଧ୍ୟରେ ରଖାଯାଇଛି । ଯାଜପୁର ନିକଟ ଧର୍ମଶାଳାଠାରେ ଥିବା ଏକ ସପ୍ତମାତୃକା ମନ୍ଦିର ସମ୍ପୂର୍ଣ୍ଣ ନଷ୍ଟ ହୋଇପଡ଼ିଥିବାବେଳେ ତାହା ମଧ୍ୟରୁ ବୈଷ୍ଣବୀ, ଇନ୍ଦ୍ରାଣୀ, ବାରାହୀ ଓ ଚାମୁଣ୍ଡା ମୂର୍ତ୍ତି ଅଣାଯାଇ ରାଜ୍ୟ ସଂଗ୍ରହାଳୟରେ ରଖାଯାଇଛି । ଏଗୁଡ଼ିକ ଉଚ୍ଚକୋଟୀର କଳାଶୈଳୀର ଆକର୍ଷଣୀୟ ମୂର୍ତ୍ତି ଅଟେ । ଈଷତ୍‌ନୀଳ ମୁଗୁନି ପଥରରେ ନିର୍ମିତ ପ୍ରତ୍ୟେକ କୃତିର ଉଚ୍ଚତା ପ୍ରାୟ ୧.୨୦ ମିଟର ଓ ପ୍ରସ୍ଥ ପ୍ରାୟ ୦.୬୦ମିଟର ଅଟେ । ଏଗୁଡ଼ିକ ଖ୍ରୀ: ୧୨୦୦ ଶତାବ୍ଦୀରେ ନିର୍ମିତବୋଲି ଅନୁମାନ କରାଯାଏ । ଭୁବନେଶ୍ୱର ନିକଟ ଗାରଡ଼ିପାଞ୍ଚଣ ଗ୍ରାମର ବୁଦ୍ଧନାଥ ମନ୍ଦିର ପରିସରରେ ଥିବା ସପ୍ତମାତୃକାଙ୍କ ମଧ୍ୟରୁ ବର୍ତ୍ତମାନ ଗୋଟିଏ ପଥରଖଣ୍ଡରେ କେବଳ ବ୍ରହ୍ମାଣୀ, ଶିବାନୀ, କୌମାରୀ, ବୈଷ୍ଣବୀ ଏବଂ ବାରାହୀଙ୍କ ମୂର୍ତ୍ତି ରହିଛି । କଳାଶୈଳୀରୁ ଏଗୁଡ଼ିକ ଗଙ୍ଗରାଜତ୍ୱ କାଳ ଅର୍ଥାତ୍ ଖ୍ରୀ: ୧୩ଶ ଶତାବ୍ଦୀରବୋଲି ଜଣାଯାଏ । ଭଦ୍ରକ ଥାନା ଅନ୍ନପାଳ ନିକଟ ଲାଙ୍ଗୁଡ଼ିଠାରେ ଏକ ମଧ୍ୟଯୁଗୀୟ ମନ୍ଦିର ମଧ୍ୟରେ ସପ୍ତମାତୃକା ପୂଜା ପାଉଥିଲେ । ମନ୍ଦରଟି ଭାଙ୍ଗିପଡ଼ିବାପରେ ଏହି ମୂର୍ତ୍ତିଗୁଡ଼ିକୁ ନବନିର୍ମିତ ମନ୍ଦିର ମଧ୍ୟରେ ଲୋକେ ସାତଭଉଣୀ ନାମରେ ପୂଜା କରୁଛନ୍ତି ।



ମାତୃକାମୂର୍ତ୍ତି: ଶିବାନୀ,ବ୍ରହ୍ମାଣୀ ଓ ଇନ୍ଦ୍ରାଣୀ, ମାର୍କଣ୍ଡେଶ୍ୱର ପୁଷ୍କରଣୀ କୂଳ, ପୁରୀ

ଦକ୍ଷିଣପଶ୍ଚିମ ଓ ଉତ୍ତରପଶ୍ଚିମ ଓଡ଼ିଶାର କେତେକ ମାତୃକାମୂର୍ତ୍ତି ପ୍ରାଚୀନ ଅଟେ । ରାୟଗଡ଼ା ନିକଟ ପଦ୍ମପୁର, ମଲ୍ଲିକେଶ୍ୱର ମନ୍ଦିର ପରିସରରେ ଖ୍ରୀ: ୭ମ-୮ମ ଶତାବ୍ଦୀର କେତୋଟି ମାତୃକାମୂର୍ତ୍ତି ରହିଛି । ଏହି ଅଞ୍ଚଳର ପାଇକପଡ଼ା, ପାତାଳେଶ୍ୱର ମନ୍ଦିର ପରିସରରେ ଥିବା ସପ୍ତମାତୃକାଙ୍କ ସହିତ ବୀଣାଧରଶିବ ଓ ଗଣେଶଙ୍କ ପ୍ରତିମା ଦେଖିବାକୁମିଳେ । ଟିଟିଲାଗଡ଼, ବେଲଖଣ୍ଡିଠାରେ ସପ୍ତମାତୃକାଙ୍କ ଏକ ସ୍ୱତନ୍ତ୍ର ମନ୍ଦିର ଥିଲା । ମନ୍ଦିରଟି ସମ୍ପୂର୍ଣ୍ଣ ନଷ୍ଟ ହୋଇପଡ଼ିଥିବାବେଳେ ସେଥିମଧ୍ୟରୁ କେତୋଟି ମାତ୍ର ମୂର୍ତ୍ତି ସ୍ଥାନୀୟ ସଂଗ୍ରହାଳୟରେ ରଖାଯାଇଛି । ଟିଟିଲାଗଡ଼ର ଅନତି ଦୂରରେଥିବା ଘୋଡ଼ାର୍ ପାହଡ଼ ଦେହର ୯.୦୦ ମିଟର ଲମ୍ବ ଓ ୧.୫୦ ମିଟର ପ୍ରସ୍ଥ ସ୍ଥାନରେ ମାତୃକାମାନଙ୍କ ପ୍ରତିମା ଉତ୍‌କୀର୍ଣ୍ଣ ହୋଇଛି । ସେହିପରି ରାଣୀପୁର-ଝରିଆଲ୍‌ର ଏକ ପଥୁରିଆ ସ୍ଥାନରେ ଅଜୈକପାଦ ଭୈରବ ଓ ଗଣେଶଙ୍କ ସମେତ ସପ୍ତମାତୃକାଙ୍କ ମୂର୍ତ୍ତି ରୁକ୍ଷ ଭାବରେ ଉତ୍‌କୀର୍ଣ୍ଣ ହୋଇଥିବା ଦେଖାଯାଏ । ଏହି

ଖୋଦିତ ଅଂଶଟିର ଲମ୍ବ ପ୍ରାୟ ୮.୭୦ ମିଟର ଓ ଉଚ୍ଚତା ପ୍ରାୟ ୦.୭୦ ମିଟର ଅଟେ। ଏହା ବ୍ୟତୀତ ଏଠାର ଚଉଷଠୀଯୋଗିନୀ ପୀଠର ଅଳ୍ପଦୂରରେ ଅନ୍ୟଏକ ମାତୃକା ଗୋଷ୍ଠି ମୂର୍ତ୍ତି ଦେଖାଯାଏ। ମୟୂରଭଞ୍ଜ ଜିଲ୍ଲା ଖିଚିଂ ସଂଗ୍ରହାଳୟରେ ଖ୍ରୀ: ୧୧ଶ ଶତାବ୍ଦୀର ବ୍ରହ୍ମାଣୀ, ବୈଷ୍ଣବୀ ତଥା ଶିବାନୀଙ୍କ ମୂର୍ତ୍ତି ରହିଥିବାବେଳେ ଅନ୍ୟ ମୂର୍ତ୍ତିଗୁଡ଼ିକ ନିଖୋଜ ହୋଇପଡ଼ିଛି। ପଶ୍ଚିମଓଡ଼ିଶାର ଅନ୍ୟଏକ ସ୍ଥାନ, ଚଣ୍ଡୀତାଲାଠାରେ ମଧ୍ୟଯୁଗୀୟ ଏକ ମାତୃକାମୂର୍ତ୍ତି ପୂଜା ଥିବାଜଣାଯାଏ। ବାରିପଦା ନିକଟ ପେଡ଼ାଗଡ଼ିଠାରେ ଥିବା ସପ୍ତମାତୃକା ମନ୍ଦିରର ଅଳ୍ପ କେତୋଟି ଭଗ୍ନ ମୂର୍ତ୍ତି ସ୍ଥାନୀୟ ସଂଗ୍ରହାଳୟରେ ରଖାଯାଇଛି। ଘୋଡ଼ାର୍ ଓ ରାଣୀପୁର-ଝରିଆଲର ମାତୃକାମୂର୍ତ୍ତିଗୁଡ଼ିକର କଳାଶୈଳୀ ନିମ୍ନମାନର ହୋଇଥିବା ସ୍ଥଳେ ପାଇକପଡ଼ା, ପଦ୍ମପୁର, ଖିଚିଂ ଓ ପେଡ଼ାଗଡ଼ିର ମୂର୍ତ୍ତିଗୁଡ଼ିକ ମଧ୍ୟମମାନ କଳାଶୈଳୀର ଅଟେ। ଏହା ବ୍ୟତୀତ ଓଡ଼ିଶାର ଅନେକ ସ୍ଥାନରେ ସପ୍ତମାତୃକା କିମ୍ବା ଅଷ୍ଟମାତୃକାଙ୍କ ଭଗ୍ନାବଶେଷ ଦେଖିବାକୁମିଳେ। ଏହି ଅଧ୍ୟୟନରୁ ପ୍ରତିୟମାନ ହୁଏଯେ, ପୂର୍ବେ ଓଡ଼ିଶାର ସର୍ବତ୍ର ମାତୃକା ପୂଜାର ବଳିଷ୍ଠ ପରମ୍ପରା ପ୍ରଚଳିତଥିଲା।

# ଚାମୁଣ୍ଡା

କାଳିକାପୁରାଣ ଅନୁଯାୟୀ ଉତ୍କଳରାଜ୍ୟ ପ୍ରଥମ ତନ୍ତ୍ରପୀଠ ଅଟେ। ଏଣୁ, ପୂର୍ବେ ଏହି ଦେଶରେ ତନ୍ତ୍ର ପୂଜା ବ୍ୟାପକଥିଲା। ଏହି ପରିପ୍ରେକ୍ଷୀରେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ତନ୍ତ୍ରଦେବୀମାନଙ୍କ ମୂର୍ତ୍ତି ବହୁପରିମାଣରେ ଦେଖିବାକୁମିଳେ। ଓଡ଼ିଶାର ଅଧିକାଂଶ ପ୍ରାଚୀନ ଓ ମଧ୍ୟଯୁଗୀୟ ଶୈବ ଓ ଶକ୍ତିପୀଠ, ରାଜାମାନଙ୍କ ରାଜଧାନୀ ବା ଶାସନ କେନ୍ଦ୍ରରେ ତନ୍ତ୍ରର ପ୍ରମୁଖଦେବୀ ଚାମୁଣ୍ଡାଙ୍କ ସ୍ୱତନ୍ତ୍ର ପୂଜିତପ୍ରତିମା ରହିଥିବାବେଳେ କେତେକ ମନ୍ଦିରର ପାର୍ଶ୍ୱଦେବତା କିମ୍ବା ଆବରଣଦେବତା ମଧ୍ୟରେ ତାଙ୍କ ମୂର୍ତ୍ତି ସ୍ଥାନିତ ହୋଇଛି। ଏହି ଅର୍ଚ୍ଚାବିଗ୍ରହ ମଧ୍ୟରୁ କେତେକ ରାଜବଂଶ ତଥା ରାଜପରିବାର ଇଷ୍ଟଦେବୀ ଅଟନ୍ତି। ଚାମୁଣ୍ଡା ଅନ୍ୟକେତେକ ରାଜ୍ୟର ଅଧିଷ୍ଠାତ୍ରୀଦେବୀ ଥିବା ଜଣାଯାଏ।

ମହିଷାସୁରର ସହଯୋଗୀ ଅସୁର ଚଣ୍ଡ, ମୁଣ୍ଡଙ୍କୁ ବଧ କରିଥିବାରୁ ଦେବୀଙ୍କ ନାମ 'ଚାମୁଣ୍ଡା'। ଯୁଦ୍ଧକ୍ଷେତ୍ରରେ କ୍ରୋଧାନ୍ୱିତ ଶିବଙ୍କ ଭ୍ରୂକୁଟିରୁ ତା'ଙ୍କ ସ୍ୱେଦ ଓ ରକ୍ତ ବିନ୍ଦୁରେ ଚର୍ଚ୍ଚିତହୋଇ ଜନ୍ମଲାଭ କରିଥିବାରୁ ଦେବୀଙ୍କ ଅନ୍ୟଏକ ନାମ 'ଚର୍ଚ୍ଚିକା' ଅଟେ। ମାତୃକାମାନଙ୍କ ମଧ୍ୟରେ ଦେବୀ ଅନ୍ୟତମ ହେଲେହେଁ ତା'ଙ୍କ ସ୍ୱତନ୍ତ୍ର ମୂର୍ତ୍ତିର ପୂଜାର୍ଚ୍ଚନା ବହୁଳ ଭାବରେ ଦେଖାଯାଏ। ଅସ୍ଥି, କଙ୍କାଳସାର ଶରୀରା, ମସ୍ତକରେ ଅଗ୍ନିଶିଖା, ନାଗଭୂଷଣା, ଶ୍ମଶାନବାସିନୀ ଦେବୀ ଭୟଙ୍କରୀ ଅଟନ୍ତି। ଓଡ଼ିଶାର ମୂର୍ତ୍ତିକଳାରେ ଚର୍ତୁଭୁଜା ଠାରୁ ଅଷ୍ଟାଦଶଭୁଜା ମୂର୍ତ୍ତି ହସ୍ତରେ ରକ୍ତପାତ୍ର, ଛିନ୍ନମସ୍ତକ ଓ ବିଭନ୍ନ ଯୁଦ୍ଧାସ୍ତ୍ର ଧାରଣ କରିଥିବାବେଳେ ଗୋଟିଏ ହସ୍ତରେ ଅଭୟ ମୁଦ୍ରା ପ୍ରଦର୍ଶନକରି ଅନ୍ୟ ବାମହସ୍ତର କନିଷ୍ଠାଙ୍ଗୁଳିକୁ ମୁଖ ନିକଟରେ ରଖିଥାଆନ୍ତି। ଶବାରୂଢ଼ା ଦେବୀଙ୍କ ନିକଟରେ ଶ୍ୱାନ, ଶୃଗାଳ, ଗୃଧ୍ର ଓ ପେଚକପକ୍ଷୀ ଦେଖାଯାଆନ୍ତି। ଅଧିକାଂଶସ୍ଥଳେ ଚାମୁଣ୍ଡା ଅର୍ଦ୍ଧପରାୟଣିକ ଭଙ୍ଗୀରେ ଆସନ ଗ୍ରହଣ କରିଥିବାବେଳେ ଅଳ୍ପ କେତେକ ଯୋଗାସନ, ଲଳିତାସନ ଓ ନୃତ୍ୟମୂର୍ତ୍ତି ମଧ୍ୟ ଦେଖିବାକୁ ମିଳେ। ଉତ୍କଳୀୟ ମୂର୍ତ୍ତିକଳାରେ ଚାମୁଣ୍ଡା ଏକ ସ୍ୱତନ୍ତ୍ରସ୍ଥାନ ଅଧିକାର କରନ୍ତି।

ଶୈଳୋଦ୍ଭବ ରାଜବଂଶର ରାଜଧାନୀ ବାଣପୁର ଓ ମୁଖ୍ୟ ଦେବସ୍ଥଳୀ ବଙ୍କଡ଼ାରେ ଚାମୁଣ୍ଡାଙ୍କ ମୂର୍ତ୍ତି ଦେଖାଯାଏ। ଏଠାରୁ ଏକ ଆକର୍ଷଣୀୟ ଚାମୁଣ୍ଡାମୂର୍ତ୍ତି ଅଣାଯାଇ ରାଜ୍ୟ ସଂଗ୍ରହାଳୟରେ ରଖାଯାଇଛି। ଭୌମକର ରାଜତ୍ୱ ସମୟରେ ବିନ୍ଦୁସାଗରର ପଶ୍ଚିମପାର୍ଶ୍ୱରେ ନିର୍ମିତ ଚାମୁଣ୍ଡାଦେବୀଙ୍କ ପ୍ରଖ୍ୟାତ ମନ୍ଦିର 'ବୈତାଳଦେଉଳ'ଭାବେ ପରିଚିତ। ଏହି ସାଗରର ଉତ୍ତରପାର୍ଶ୍ୱରେ ଥିବା ଚାମୁଣ୍ଡାଙ୍କ ନାମ ଉତ୍ତରେଶ୍ୱରୀ ହୋଇଥିବାବେଳେ ଲିଙ୍ଗରାଜ ମନ୍ଦିରର ପୂର୍ବ ପାର୍ଶ୍ୱରେ କାଳୀକା ନାମରେ ପ୍ରାଚୀନ ଚାମୁଣ୍ଡାମୂର୍ତ୍ତି ପୂଜାପାଉଛନ୍ତି।

ସୋମବଂଶୀମାନେ ସେମାନଙ୍କ ମୂଳରାଜ୍ୟ ପଶ୍ଚିମଓଡ଼ିଶାର ବେଲଖଣ୍ଡି, ରାଣୀପୁର-ଝରିଆଲ୍ ସମେତ ଉପକୂଳ ଅଞ୍ଚଳରେ ମଧ ଅନେକ ଚାମୁଣ୍ଡା ମୂର୍ତ୍ତି ସ୍ଥାପନକରି ପୂଜାର୍ଚ୍ଚନା କରୁଥିବା ପ୍ରମାଣମିଳେ। ଯାଜପୁର ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ରାଜବଂଶର ରାଜଧାନୀ ତଥା ଏକ ତୀର୍ଥକ୍ଷେତ୍ର ଥିଲା। ଏଣୁ, ଏହି ଅଞ୍ଚଳରେ ସପ୍ତମାତୃକାଙ୍କ ମୂର୍ତ୍ତି ବ୍ୟତୀତ ବିଭିନ୍ନ ସମୟର ଚାମୁଣ୍ଡାମୂର୍ତ୍ତି ବହୁ ପରିମାଣରେ ଦେଖିବାକୁମିଳେ। ଏପରିକି, ଯାଜପୁର ଗୁପ୍ତଯୁଗରୁ ଅଦ୍ୟାବଧି ଏକ ଶକ୍ତିପୀଠ ରୂପେ ପରିଗଣିତ ହୋଇଆସିଛି।

ଶୂଲ୍କୀମାନଙ୍କ ରାଜଧାନୀ ତାଳଚେର ନିକଟ କୁଆଁଳୋଠାରେ ଥିବା କନକେଶ୍ୱର ଶିବମନ୍ଦିର ପରିସରରେ ଚାମୁଣ୍ଡାଙ୍କ ପ୍ରତିମା ରହିଛି। ବହୁ କାଳରୁ ଭଞ୍ଜବଂଶୀ ରାଜାମାନେ ଚାମୁଣ୍ଡାଙ୍କୁ ଇଷ୍ଟଦେବୀ ଭାବେ ଗ୍ରହଣ କରିଛନ୍ତି। ଏମାନଙ୍କ ରାଜଧାନୀ ଖିଜିଙ୍ଗକୋଟ ବା ବର୍ତ୍ତମାନର ବାରିପଦା ନିକଟସ୍ଥ ଖିଚିଂଠାରେ ସେମାନଙ୍କ ଇଷ୍ଟଦେବୀ କିଚକେଶ୍ୱରୀଙ୍କ ନାମରେ ପ୍ରଖ୍ୟାତ ଚାମୁଣ୍ଡାମନ୍ଦିର ରହିଛି। ଏହା ବ୍ୟତୀତ ବାଲେଶ୍ୱର ଓ ମୟୂରଭଞ୍ଜ ଜିଲ୍ଲାର ବିଭିନ୍ନ ସ୍ଥାନରେ ଚାମୁଣ୍ଡା ମୂର୍ତ୍ତିମାନ ଦେଖିବାକୁମିଳେ। ଦକ୍ଷିଣରୁ ଆସିଥିବା ଗଙ୍ଗମାନଙ୍କ ରାଜଧାନୀ ମୁଖଲିଙ୍ଗମ୍ ଓ ସେହି ଅଞ୍ଚଳର ପାଇକପଡ଼ା ଇତ୍ୟାଦି ସ୍ଥାନ ସମେତ ପରବର୍ତ୍ତୀ ସମୟରେ ସେମାନଙ୍କ ଶାସନକେନ୍ଦ୍ର ପୁରୀ, କଟକ ଅଞ୍ଚଳର ବହୁ ସ୍ଥାନରେ ଚର୍ଚ୍ଚିକା, ଚଣ୍ଡୀକା ଇତ୍ୟାଦି ନାମରେ ବହୁ ଚାମୁଣ୍ଡାମୂର୍ତ୍ତି ପ୍ରତିଷ୍ଠିତ ହୋଇଥିବା ଜଣାଯାଏ। ଏହି ପରିପ୍ରେକ୍ଷୀରେ ବାଙ୍କୀର ଚର୍ଚ୍ଚିକାଙ୍କ ନାମ ଉଲ୍ଲେଖଯୋଗ୍ୟ।

ଉତ୍କଳୀୟ ମୂର୍ତ୍ତିକଳାରେ ଚାମୁଣ୍ଡା ବିଭିନ୍ନ ଭଙ୍ଗୀରେ ଦେଖାଯାଆନ୍ତି। ଅର୍ଦ୍ଧପରାୟଣିକ ଭଙ୍ଗୀରେ ବସିଥିବା ଚର୍ତୁଭୁଜା ଚାମୁଣ୍ଡା, ରାଣୀପୁର-ଝରିଆଲ୍, ରାୟଗଡ଼ା ନିକଟ ପାଇକପଡ଼ା, ମହାନଦୀ ଟାପୁର ସିଂହନାଥ ଭୁବନେଶ୍ୱରର ବୈତାଳଦେଉଳ, ମୁକ୍ତେଶ୍ୱର ମନ୍ଦିର ଓ ବ୍ରହ୍ମେଶ୍ୱର ମନ୍ଦିର ଗାତ୍ରରେ ରହଛନ୍ତି। ଏହି ଭଙ୍ଗୀର ଷଡ଼ଭୁଜ ପ୍ରତିମା ବାଣପୁର, ଭଲ୍ଲିଗ୍ରାମ, ପ୍ରାଚୀନଦୀ ଅବବାହିକାର ସୋମେଶ୍ୱର ଓ ଜିଉନ୍ତିଠାରେ ଦେଖିବାକୁମିଳେ। ଦେବୀଙ୍କ **ଅଷ୍ଟଭୁଜ** ମୂର୍ତ୍ତି ସଂଖ୍ୟା ସର୍ବାଧିକ ଏହି ପ୍ରକାର କୃତି ବଙ୍କାଡ଼, ଯାଜପୁର, ଭୁବନେଶ୍ୱରର ବୈତାଳଦେଉଳ (ଅଧିଷ୍ଠାତ୍ରୀ ଦେବୀ), ଜଗତ୍‌ସିଂହପୁର ନିକଟ କୁଣ୍ଡେଶ୍ୱର, ଢେଙ୍କାନାଳର କପିଳାସ, କଳାହାଣ୍ଡିର ବେଲଖଣ୍ଡି, ପ୍ରାଚୀନଦୀ ଅବବାହିକାର ଅମରେଶ୍ୱର, ପିଟାପଡ଼ା, ଚହଟା, ଅନ୍ତରଙ୍ଗ ଓ କାକଟପୁର ମଙ୍ଗଳାମନ୍ଦିର ପରିସରରେ ଦେଖାଯାଏ। ଅଳ୍ପ କେତେକ ଦଶଭୁଜା ଚାମୁଣ୍ଡାଙ୍କ ମଧ୍ୟରେ ଯାଜପୁରର ଦୁଇଟି ମୂର୍ତ୍ତି, ପ୍ରାଚୀନଦୀ ଅବବାହିକାର ଗୋଟିଏ ମୂର୍ତ୍ତି, ଘୋରଡ଼ିଆ, ପେଡ଼ାଗଡ଼ି ଓ ବାଲେଶ୍ୱର ଜିଲ୍ଲା, ସେରଗଡ଼ର ମୂର୍ତ୍ତି ଉଲ୍ଲେଖଯୋଗ୍ୟ।

ଯାଜପୁରରେ 'ନ'ଅ ହାତ ଦେଉଳରେ ଅଠରହାତ ଦିଅଁ' କଥାଶୁଣି ନବାଗନ୍ତୁକ ବିସ୍ମିତ ହୁଏ। ବାସ୍ତବରେ ନ'ଅହାତ ଉଚ୍ଚତା ବିଶିଷ୍ଟ ଏକ ଛୋଟ ମନ୍ଦିରରେ ଅଷ୍ଟାଦଶଭୁଜା ଦେବୀ, ଚାମୁଣ୍ଡା ଅଧିଷ୍ଠିତ ହୋଇଛନ୍ତି। କଳାଶୈଳୀରୁ ଏହା ଖ୍ରୀ:୭ମ-୮ମ ଶତାବ୍ଦୀର କୃତିଭଳି ମନେହୁଏ।

ଶବାସନା ଦେବୀ ଅର୍ଦ୍ଧପରାୟଣିକ ଭଙ୍ଗୀରେ ବସିଥିବାବେଳେ ତା'ଙ୍କ ମସ୍ତକରେ କପାଳଯୁକ୍ତ ଜଟାମୁକୁଟ, କର୍ଣ୍ଣରେ ପତ୍ରକୁଣ୍ଡଳ, ଗଳାରେ ପ୍ରଶସ୍ତ ମୁକ୍ତାମାଳା ଓ ବକ୍ଷଆବରଣ ସହିତ ଏକ ଲମ୍ବ ମୁଣ୍ଡମାଳା ରହିଛି। ଏହା ବ୍ୟତୀତ ଦେବୀ ହସ୍ତରେ ବଳୟ ଓ ପାଦରେ ନୂପୁର ପରିଧାନ କରିଛନ୍ତି। ତା'ଙ୍କ ଦକ୍ଷିଣପାର୍ଶ୍ୱ ନ'ଅହସ୍ତ ମଧ୍ୟରୁ ଏକ ହସ୍ତରେ ବରଦ ମୁଦ୍ରା ପ୍ରଦର୍ଶନ କରୁଥିବାବେଳେ ଅନ୍ୟ ଦୁଇହସ୍ତରେ ପ୍ରଚ୍ଛଦର ହସ୍ତୀଚର୍ମକୁ ଉତ୍ତୋଳିତ କରିଛନ୍ତି। ଏହା ସହିତ ଅବଶିଷ୍ଟ ହସ୍ତଗୁଡ଼ିକରେ ଖଡ୍ଗ, ଗଦା, ଡ଼ମ୍ବରୁ, କର୍ତ୍ତରୀ, ଜପମାଳା ଓ ଏକ କ୍ଷୁଦ୍ର ଅସ୍ତ୍ର ଧାରଣ କରିଥିବା ଦେଖାଯାଏ। ସେହିପରି ବାମପାର୍ଶ୍ୱର ଗୋଟିଏ ହସ୍ତରେ ହସ୍ତୀଚର୍ମ ଉତ୍ତୋଳିତକରି ଅନ୍ୟଏକ ହସ୍ତର କନିଷ୍ଠାଙ୍ଗୁଳିକୁ ମୁଖ ନିକଟରେ ରଖିଥିବାବେଳେ ଅବଶିଷ୍ଟ ହସ୍ତଗୁଡ଼ିକରେ ପାଶ, ଧନୁ, ଶଙ୍ଖ, ଖଟ୍ୱାଙ୍ଗ, ନରମୁଣ୍ଡ ଓ ରକ୍ତପାତ୍ର ଧାରଣ କରିଛନ୍ତି। ମୂର୍ତ୍ତିର ନିମ୍ନଭାଗରେ ଅର୍ଥାତ୍, ଶବବାହନ ନିକଟରେ ଏକ ସର୍ପ, ଶୃଗାଳ ଓ ଅସ୍ତ୍ର ଧାରଣକରି ଆସନ ଭଙ୍ଗୀରେ ଥିବା ଦୁଇ ଡ଼ାକିନୀଙ୍କ ପିତୁଳା ଦେଖାଯାଏ। ଏହା ବ୍ୟତୀତ ମୂର୍ତ୍ତିର ଊର୍ଦ୍ଧ୍ୱଭାଗ ଦକ୍ଷିଣ କୋଣରେ ମଶାଲ ଧାରଣ କରିଥିବା ଜଣେ ଉଡ୍ଡୀୟମାନ ଗନ୍ଧର୍ବର ମୂର୍ତ୍ତି ସ୍ଥାନିତ ହୋଇଛି। ଲାଲ୍ କନ୍ଦାପଥରରେ ନିର୍ମିତ, ସରଳ ଉପସ୍ଥାପନା ଶୈଳୀ କୃତିଟିର ଉଚ୍ଚତା ପ୍ରାୟ ୨.୦୦ ମିଟର ଓ ପ୍ରସ୍ଥ ପ୍ରାୟ ୧.୩୫ ମିଟର ହେବ।



ଚାମୁଣ୍ଡା, ସିଂହନାଥ ମନ୍ଦିର, ବିନ୍ଧ୍ୟେଶ୍ୱର



ଅଷ୍ଟାଦଶଭୁଜା ଚାମୁଣ୍ଡା, ଯାଜପୁର

ଭୁବନେଶ୍ୱର, ପର୍ଶୁରାମେଶ୍ୱର ମନ୍ଦିର ଜଗମୋହନ, ଉତ୍ତରପାର୍ଶ୍ୱ ବାଡ଼ରେ ସପ୍ତମାତୃକାଙ୍କ ସହିତ ଥିବା ଚାମୁଣ୍ଡା ପଦ୍ମାସନ ବା ଯୋଗାସନରେ ବସିଛନ୍ତି। ବଙ୍କାଡ଼ରୁ ସଂଗୃହୀତ, ରାଜ୍ୟସଂଗ୍ରହାଳୟରେ ଥିବା ଚାମୁଣ୍ଡା ମଧ ଏହି ଭଙ୍ଗୀରେ ବସିଥିବା ଦେଖାଯାଏ। ଏହି ଚର୍ତୁଭୁଜାମୂର୍ତ୍ତି ଦ୍ୱୟର ଉପସ୍ଥାପନା ଶୈଳୀ ସରଳ। ବଙ୍କାଡ ଓ ପରଶୁରାମେଶ୍ୱର ମନ୍ଦିରର ଏହି କୃତି ଓଡ଼ିଶାର ପ୍ରାଚୀନତମ



ଚାମୁଣ୍ଡା, କୁଣ୍ଡେଶ୍ୱର

ଚାମୁଣ୍ଡାମୂର୍ତ୍ତି ବୋଲି ଅନୁମାନ କରାଯାଏ। ମଧ୍ୟଯୁଗୀୟ ମାତୃକାଙ୍କ ମଧ୍ୟରେ ଥିବା ଚାମୁଣ୍ଡା ଶବ ଉପରେ କିମ୍ବା ତା' ଉପର ପଦ୍ମ ଉପରେ ଲଳିତ ଭଙ୍ଗୀରେ ଆସନ ଗ୍ରହଣ କରିଥିବା ଦେଖାଯାଏ। ଏହି ପ୍ରକାର ଚର୍ତୁଭୁଜା ମୂର୍ତ୍ତିଗୁଡ଼ିକ ଗାୟଗଡ଼ା ନିକଟ ପାଇକପଡ଼ା, ଯାଜପୁର ଓ ତା'ର ଆଖପାଖ ଅଞ୍ଚଳ, ପୁରୀ ମାର୍କଣ୍ଡେୟ ପୋଖରୀ ନିକଟ ସପ୍ତମାତୃକା ମୂର୍ତ୍ତି ମଧ୍ୟରେ ଏବଂ କଟକ ଧର୍ମଶାଳାରୁ ସଂଗୃହୀତ ମୂର୍ତ୍ତି ରାଜ୍ୟ ସଂଗ୍ରହାଳୟରେ ରହିଛି।

ଓଡ଼ିଶାରେ ଚାମୁଣ୍ଡାଙ୍କ ନୃତ୍ୟମୂର୍ତ୍ତି ସଂଖ୍ୟା ଯଥେଷ୍ଟ କମ୍। ଏହା ମଧ୍ୟରେ ଭୁବନେଶ୍ୱରର ମୋହିନୀ ମନ୍ଦିରର ନୃତ୍ୟ-ଚାମୁଣ୍ଡା ଦଶଭୁଜା ଅଟନ୍ତି। ବୋଧହୁଏ ପ୍ରତିମାଟି ଭୌମକର କାଳୀନ ଅଟେ। ଏଠାର ମୁକ୍ତେଶ୍ୱର ଓ ବ୍ରହ୍ମେଶ୍ୱର ମନ୍ଦିର ଗାତ୍ରରେ ମଧ୍ୟ ନୃତ୍ୟ-ଚାମୁଣ୍ଡାଙ୍କ ମୂର୍ତ୍ତି ଦେଖିବାକୁ ମିଳେ। ଏହା ବ୍ୟତୀତ ପ୍ରାଚୀ ଅବବାହିକାର ସୋମେଶ୍ୱର ମନ୍ଦିର ପରିସର, ବୟାଳିଶିବାଟୀର ଗଙ୍ଗେଶ୍ୱରୀ ମନ୍ଦିର, ପାଇକପଡ଼ାର ପାତାଳେଶ୍ୱର ମନ୍ଦିର ପରିସର ଓ ସୋନପୁରର ସମଲାଇ ମନ୍ଦିର ବାଡ଼ରେ ଏହି ଭଙ୍ଗୀର ମୂର୍ତ୍ତି ରହିଛି। ଏଥିମଧ୍ୟରେ ପାଇକପଡ଼ା ଓ ବ୍ରହ୍ମେଶ୍ୱର ମନ୍ଦିର ମୂର୍ତ୍ତି ଚର୍ତୁଭୁଜା ହୋଇଥିବାବେଳେ ଅନ୍ୟ ନୃତ୍ୟମୂର୍ତ୍ତିଗୁଡ଼ିକ ଅଷ୍ଟଭୁଜା ଅଟନ୍ତି। କଳାଶୈଳୀ ଦୃଷ୍ଟିରୁ ପୁରୀ ମାର୍କଣ୍ଡେଶ୍ୱର, କୁଣ୍ଡେଶ୍ୱର ତଥା ରାଜ୍ୟ ସଂଗ୍ରହାଳୟରେ ଥିବା ଧର୍ମଶାଳାର ଚାମୁଣ୍ଡାମୂର୍ତ୍ତି ଉଚ୍ଚକୋଟୀର ଅଟେ।

ଭାରତୀୟ ମାତୃମୂର୍ତ୍ତି, ନାୟିକା ଓ ନାରୀ ରୂପର ପରିକଳ୍ପନାରେ ବାତ୍ସଲ୍ୟ, କରୁଣା, ଲାବଣ୍ୟ, ସୌନ୍ଦର୍ଯ୍ୟ ସନ୍ନିବେଶିତ ହୋଇଥିବାବେଳେ ଚାମୁଣ୍ଡା ସମ୍ପୂର୍ଣ୍ଣ ଏକ ବିପରୀତ ପରିକଳ୍ପନା। ଏହା ନାରୀର ଅନ୍ତିମ ରୂପ କହିଲେ ଭୁଲ ହେବନାହିଁ। ତେବେ, ଦକ୍ଷିଣଭାରତୀୟ ଆଗମ ଭିତ୍ତିକ ଧାତବ ମୂର୍ତ୍ତିକଳାରେ ଦେବୀଙ୍କ ରୂପରେ ଏହି ଭୟଙ୍କରତା ପରିଦୃଷ୍ଟ ହୁଏନାହିଁ। ଭାରତର ବିଭିନ୍ନ ପ୍ରାନ୍ତରେ ଭିନ୍ନ ଭିନ୍ନ ଭଙ୍ଗୀରେ ଚାମୁଣ୍ଡା ମୂର୍ତ୍ତି ଉପସ୍ଥାପିତ କରାଯାଇଛି। କେତେକ କ୍ଷେତ୍ରରେ ତାନ୍ତ୍ରିକର ନିର୍ଦ୍ଦେଶରେହେଉ କିମ୍ବା ନିଜର ପରିକଳ୍ପନାରେ ହେଉ ଶିଳ୍ପୀ ଶାସ୍ତ୍ରୀୟ ମୂର୍ତ୍ତିତତ୍ତ୍ୱ ଉଲ୍ଲଘଂନକରି ଦେବୀଙ୍କ ରୂପକୁ ଯଥା ସମ୍ଭବ ଭୟଙ୍କର କରିବା ଚେଷ୍ଟା କରିଛି। ଜଣେ କୁଶଳୀ ଶିଳ୍ପୀ ଦେବୀଙ୍କ ରକ୍ତମାଂସ ଶୂନ୍ୟ ଶରୀରରେ ଅସ୍ଥି ଓ ଶିରାପ୍ରଶିରା ପ୍ରରିସ୍ଫୁଟନ ନିମନ୍ତେ ତା'ର ସମସ୍ତ ଦକ୍ଷତା ବିନିଯୋଗକରିବା ସୁଯୋଗପାଇଥାଏ। ଏହି ପରିପ୍ରେକ୍ଷୀରେ ଉତ୍କଳ କାହିଁକି ଭାରତୀୟ ମୂର୍ତ୍ତିକଳାର ଚାମୁଣ୍ଡା ଏକ ସ୍ୱତନ୍ତ୍ର ପ୍ରକାର କୃତି ହୋଇଥିବାବେଳେ ତନ୍ତ୍ରମତ ପୂଜାରେ ସନ୍ତୁଷ୍ଟ ହେଲେ, ଦେବୀ ଆଶୁଫଳ ପ୍ରଦାୟିନୀବୋଲି ବିଶ୍ୱାସ କରାଯାଏ।



# ବାରାହୀ

ସାନ୍ତାକାର ବିଷ୍ଣୁ ବରାହ ଅବତାରରେ ଉଗ୍ର ଅଟନ୍ତି । ବୋଧହୁଏ ଏହି ପରିପ୍ରେକ୍ଷୀରେ ତା'ଙ୍କ ଶକ୍ତି ବରାହୀଙ୍କୁ ଉଗ୍ର ଭାବରେ ପରିକଳ୍ପନା କରାଯାଇ ମାତୃକା ଗୋଷ୍ଠୀରେ ସଂଯୁକ୍ତ କରାଯାଇଛି । ମାତୃକା ଗୋଷ୍ଠୀ ବ୍ୟତୀତ ଚାମୁଣ୍ଡାଙ୍କ ଭଳି ବାରାହୀଙ୍କର ମଧ୍ୟ ସ୍ୱତନ୍ତ୍ର ପୂଜିତ ବିଗ୍ରହ ଦେଖିବାକୁ ମିଳେ । ଉତ୍ତରଦେଶର 'କୌଳାଗର' ଏବଂ 'ବାରାହୀ ତନ୍ତ୍ର' ଗ୍ରନ୍ଥରେ ତା'ଙ୍କ ବିଭିନ୍ନ ରୂପର ବର୍ଣ୍ଣନା ତଥା ଗୁପ୍ତ ତନ୍ତ୍ର ପୂଜାର ପଦ୍ଧତି ଉଲ୍ଲେଖ ଅଛି । ଦେବୀଙ୍କ ପାଞ୍ଚମୁଖ୍ୟ ରୂପର ନାମ ହେଉଛି; ସ୍ୱପ୍ନବାରାହୀ, ଚଣ୍ଡବାରାହୀ, ମହାବାରାହୀ, ଚକ୍ରବାରାହୀ ଓ ମତ୍ସ୍ୟବାରାହୀ । ଉତ୍କଳୀୟ ମୂର୍ତ୍ତିକଳାରେ ସାଧାରଣତଃ ଦେବୀ ଦ୍ୱିଭୁଜା କିମ୍ବା ଚତୁର୍ଭୁଜା ଅଟନ୍ତି । ସେ ଦକ୍ଷିଣହସ୍ତରେ ଏକ ମତ୍ସ୍ୟ ଓ ବାମହସ୍ତରେ ସୁରାପାତ୍ର ଧାରଣ କରିଥାଆନ୍ତି ଦେଖାଯାଏ । ହସ୍ତ ସଂଖ୍ୟା ବୃଦ୍ଧି ସଙ୍ଗେ ସଙ୍ଗେ ଅନ୍ୟ ଆୟୁଧ ମଧ୍ୟ ଧାରଣ କରିଥାନ୍ତି । ଦେବୀଙ୍କ ବାହନ ମହିଷ ଅଟେ । ତେବେ, କେତେକ ପ୍ରାଚୀନ ମୂର୍ତ୍ତିରେ ସେ ବାହନ ବିହୀନା । ମାତୃକା ଗୋଷ୍ଠୀ ସହିତ ଥିବା ସମୟରେ ଅଧିକାଂଶ ସ୍ଥଳେ ସେ ବାମଜାନୁ ଉପରେ ଏକ ଶିଶୁ ବା ସନ୍ତାନ ଧାରଣ କରିଥିବାବେଳେ ପୂଜିତ ବିଗ୍ରହରେ ଅଧିକାଂଶ ସ୍ଥଳେ ଦେବୀ ସନ୍ତାନ ବିହୀନା । ଏହା ବ୍ୟତୀତ ଯୋଗିନୀ ଗୋଷ୍ଠୀ ସହିତ ଥିବା ବାରାହୀ ମଧ୍ୟ ସନ୍ତାନ ଧାରଣ କରିନଥାନ୍ତି । ଦେବୀଙ୍କ ଠାରେ ବ୍ୟତିକ୍ରମ ଏହି କି, ସେ ବୈଷ୍ଣବ ଗୋଷ୍ଠୀର ହୋଇଥିବା ସତ୍ତ୍ୱେ ତନ୍ତ୍ର ପରମ୍ପରାରେ ଏକ ପ୍ରମୁଖ ସ୍ଥାନ ଅଧିକାର କରନ୍ତି ।

ଭୁବନେଶ୍ୱରର ପ୍ରାଚୀନ ପରଶୁରାମେଶ୍ୱର ମନ୍ଦିର ଗାତ୍ରରେ ସପ୍ତମାତୃକାଙ୍କ ସହିତ ଥିବା ବାରାହୀ ଏକ କୁଶନ ଉପରେ ଯୋଗାସନରେ ବସିଥିବାବେଳେ ତା'ଙ୍କ ଦକ୍ଷିଣପାର୍ଶ୍ୱ ଉପର ହସ୍ତରେ ଚମ୍ପକପୁଷ୍ପ, ମୁଖ୍ୟ ହସ୍ତରେ ମତ୍ସ୍ୟ, ବାମପାର୍ଶ୍ୱ ଉପର ହସ୍ତରେ କୁଠାର ଓ ମୁଖ୍ୟ ହସ୍ତରେ ମଦ୍ୟପାତ୍ର ଦେଖିବାକୁ ମିଳେ । ଦେବୀଙ୍କ ଆସନ ତଳେ ମହିଷ ପରିବର୍ତ୍ତେ ମଧ୍ୟ ଭାଗରେ ଜଣେ ଭାରବାହକ-ଯକ୍ଷ ରହିଛି ଓ ଦୁଇ ପାର୍ଶ୍ୱରେ ବୈଠି ଉପରେ ପୂର୍ଣ୍ଣକୁମ୍ଭ ସ୍ଥାନିତ ହୋଇଛି । ପୃଥୁଳ ଶରୀରା ଦେବୀଙ୍କ ମସ୍ତକରେ ଜଟାମୁକୁଟ ଓ ଦେହରେ ସାଧାରଣ ବସ୍ତ୍ରାଳଙ୍କାର ଦେଖିବାକୁ ମିଳେ । ଖ୍ରୀଷ୍ଟୀୟ ନବମ ଶତାବ୍ଦୀର ବୈତାଳଦେଉଳ ମଧ୍ୟରେ ଥିବା ବାରାହୀଙ୍କ ମୂର୍ତ୍ତିତତ୍ତ୍ୱ ଉପରୋକ୍ତ ପ୍ରକାର ହେଲେ ହେଁ ଦେବୀ ଏଠାରେ ଅର୍ଦ୍ଧପରାୟଣିକ ଭଙ୍ଗୀରେ ବସି ବାମପାର୍ଶ୍ୱକୁ ଦୃଷ୍ଟି ରଖିଛନ୍ତି । ବୈଦ୍ୟେଶ୍ୱର ନିକଟ, ମହାନଦୀ ଟାପୁରେ ଥିବା ସିଂହନାଥ ମନ୍ଦିରର ଏକ ମାତୃକା ଗୋଷ୍ଠୀ ମୂର୍ତ୍ତି ମଧ୍ୟରେ ଦ୍ୱିଭୁଜା ବାରାହୀ ଅର୍ଦ୍ଧପରାୟଣିକ ଭଙ୍ଗୀରେ ଆସନ ଗ୍ରହଣ କରିଛନ୍ତି । ତା'ଙ୍କ ଦକ୍ଷିଣ ହସ୍ତରେ ମତ୍ସ୍ୟ ଓ ବାମ ହସ୍ତରେ ସୁରାପାତ୍ର ରହିଛି । ଏହି ରଚନାରେ ମଧ୍ୟ ବାହନ ନଥିବାବେଳେ ଆସନ ନିମ୍ନରେ ମତ୍ସ୍ୟ ଓ କେତେକ ପୂଜା ସାମଗ୍ରୀ ସହିତ ଜଣେ ଗଣ ଉପସ୍ଥିତ ଅଛି । ମୁଖଲିଙ୍ଗମ୍‌ର ଏକ ପ୍ରାଚୀନ କୃତିରେ ଚତୁର୍ଭୁଜା ବାରାହୀ ଦକ୍ଷିଣହସ୍ତ ଦ୍ୱୟରେ ଯଥାକ୍ରମେ ବଜ୍ର ଓ ମତ୍ସ୍ୟ ଏବଂ ବାମ ହସ୍ତ ଦ୍ୱୟରେ ପାଶ ଓ ସୁରାପାତ୍ର ଧାରଣ କରି ଅର୍ଦ୍ଧପରାୟଣିକ ଭଙ୍ଗୀରେ ବସିଛନ୍ତି । ତା'ଙ୍କ ଆସନ ନିମ୍ନରେ ବାହନ, ମହିଷ ରହିଛି । ଏହି ସପ୍ତମାତୃକା ମୂର୍ତ୍ତିଗୁଡ଼ିକ ଖ୍ରୀ: ୮ମ-୯ମ ଶତାବ୍ଦୀର ହୋଇଥିବା ସମ୍ଭବ ।

**ଖ୍ରୀଷ୍ଟୀୟ** ୧୦ମ ଶତାବ୍ଦୀରୁ ବାରାହୀଙ୍କ ଲଳିତାସନ ମୂର୍ତ୍ତିଗୁଡ଼ିକ ଅଧିକ ଲୋକପ୍ରିୟ ହୋଇଥିଲା । **ଶକ୍ତିପୀଠ** ଯାଜପୁରରେ ଥିବା ଏହି ଶୈଳୀର ଦୁଇଟି ମୂର୍ତ୍ତି ଉଲ୍ଲେଖଯୋଗ୍ୟ । ଏଠାର ଏସ୍.ଡ଼ି.ଓ. ଙ୍କ କାର୍ଯ୍ୟାଳୟ ପରିସରରେ ଥିବା ସରଳ କଳାଶୈଳୀର ମୂର୍ତ୍ତିଟି ପ୍ରାଚୀନଭଳି ପ୍ରତୀୟମାନ ହୁଏ ।



ବାରାହୀ, ଚଉରାଶୀ, ପ୍ରାଚୀ ଅବବାହିକା



ବାରାହୀ, ଧର୍ମଶାଳା, ଯାଜପୁର ଜିଲ୍ଲା

ଏହି ବିଶାଳ ଚର୍ତୁଭୁଜ ପ୍ରତିମାର ହସ୍ତଗୁଡ଼ିକ ଭଗ୍ନ ହୋଇଥିବାବେଳେ କୋଳରେ ଶିଶୁଟି ଧାରଣ କରିଥିବା ଦେଖାଯାଏ। କଳାମୁଗୁନି ପଥରରେ ନିର୍ମିତ ମୂର୍ତ୍ତିଟିର ଉଚ୍ଚତା ପ୍ରାୟ ୩.୦୦ମିଟର ଓ ପ୍ରସ୍ଥ ପ୍ରାୟ ୧.୫୭ମିଟର ହେବ। ଏଠାର ଦ୍ୱିତୀୟ କୃତିଟି ବୈତରଣୀ ନଦୀ ପାର୍ଶ୍ବ ଦଶାଶ୍ୱମେଧ ଘାଟରେ ରହିଛି। କାରୁକଳାପୂର୍ଣ୍ଣ ରଚନାଟିରେ ଚର୍ତୁଭୁଜା ଦେବୀଙ୍କ ଦକ୍ଷିଣ ଉପର ହସ୍ତରେ ମତ୍ସ୍ୟ ଓ ମୁଖ୍ୟ ହସ୍ତରେ ଅଭୟ ମୁଦ୍ରା ପ୍ରଦର୍ଶନ କରୁଥିବାବେଳେ ବାମ ଉପରହସ୍ତରେ ସୁରାପାତ୍ର ଓ ତଳହସ୍ତଟି ଜାନୁ ଉପରେ ବସିଥିବା ଶିଶୁର ପୃଷ୍ଠ ଭାଗରେ ରହିଛି। ଏଠାରେ ଦେବୀଙ୍କ ମସ୍ତକରେ ଅଳକାଯୁକ୍ତ ଚକ୍ରାକାର ଜଟାଭାର ସମେତ କର୍ଣ୍ଣରେ ଚକ୍ରକୁଣ୍ଡଳ, ଗଳାରେ ମାଳା, ବାହୁରେ ବାଜୁବନ୍ଧ, ହସ୍ତରେ ରତ୍ନଚୁଡ଼ି ଓ ପାଦରେ ନୂପୁର ପରିଧାନ କରିଥିବା ଦେଖାଯାଏ। ଉଭୟ ମୂର୍ତ୍ତିର ଆସନ ତଳେ ମହିଷ ବାହନ ରହିଛି। ପ୍ରଥମ କୃତିଟି ଖ୍ରୀ: ୮ମ - ୯ମ ଓ ଦ୍ୱିତୀୟଟି ଖ୍ରୀ:୧୦ମ-୧୧ଶ ଶତାବ୍ଦୀର ବୋଲି ଅନୁମାନ କରାଯାଏ। ପୁରୀର ନରେନ୍ଦ୍ର ପୋଖରୀ କୂଳ ମାତୃକା ମୂର୍ତ୍ତିମାନଙ୍କ ସହିତ ଥିବା ବାରାହୀଙ୍କ ମୂର୍ତ୍ତିତତ୍ତ୍ୱ ଯାଜପୁର ମୂର୍ତ୍ତି ସହିତ ସମତା ରକ୍ଷାକରେ। ସିଂହନାଥ ମନ୍ଦିର ଓ ମୁଖଲିଙ୍ଗମ୍‌ର ମଧୁକେଶ୍ୱର ମନ୍ଦିର ପ୍ରବେଶ ଦ୍ୱାରରେ ଉତ୍‌କୀର୍ଣ୍ଣ ହୋଇଥିବା ସପ୍ତମାତୃକା ମୂର୍ତ୍ତି ସହିତ ବାରାହୀ ଆସନ ଭଙ୍ଗୀରେ ରହିଛନ୍ତି। ଦକ୍ଷିଣଓଡ଼ିଶାର ପଦ୍ମପୁର ଓ ପାଇକପଡ଼ା, ପଶ୍ଚିମଓଡ଼ିଶାର ବେଲଖଣ୍ଡି ଓ ରାଣୀପୁର-ଝରିଆଲ୍, ଉତ୍ତରଓଡ଼ିଶାର ପେଡ଼ାଗଡ଼ୀ, ବଡ଼ସାହି ଓ ଖିଚିଂରେ ମଧ ବିଭିନ୍ନ ସମୟର ବାରାହୀ ପ୍ରତିମା ଦେଖିବାକୁମିଳେ। ଯାଜପୁର ଜିଲ୍ଲାର ଧର୍ମଶାଳା ଠାରୁ ସଂଗୃହୀତ ରାଜ୍ୟ ସଂଗ୍ରହାଳୟର ବାରାହୀ ଓ ଜଗତ୍‌ସିଂହପୁର ସଠଲପୁରର ବାରାହୀ ପ୍ରତିମା ଉଚ୍ଚକୋଟୀର କଳାଶୈଳୀର ଅଟେ। ଏଗୁଡ଼ିକ ମଧ୍ୟଯୁଗୀୟ କୃତି।

ମନ୍ଦିର ମଧ୍ୟରେ ସ୍ୱତନ୍ତ୍ର ଭାବେ ପୂଜା ପାଉଥିବା ବାରାହୀ ପ୍ରତିମା ମଧ୍ୟରେ ପ୍ରାଚୀନଦୀ ଅବବାହିକାର ଚଉରାଶୀ ତଥା ପୁରୀ ବାଲିସାହିର ପ୍ରତିମା ଉଲ୍ଲେଖଯୋଗ୍ୟ। ଚଉରାଶୀ ଗ୍ରାମରେ ଖ୍ରୀ:୧୦ମ-୧୧ଶ ଶତାବ୍ଦୀରେ ନିର୍ମିତ ଏକ ସୁନ୍ଦର କାରୁକଳାପୂର୍ଣ୍ଣ ଖାକରା ଦେଉଳରେ ଦେବୀ ପ୍ରତିଷ୍ଠିତ ହୋଇଛନ୍ତି। କଳା ମୁଗୁନିପଥରରେ ନିର୍ମିତ, ମସୃଣ, ନିରାଡ଼ମ୍ବର ପ୍ରତିମାଟି ମନ୍ଦିର ପୂର୍ବବର୍ତ୍ତୀ ସମୟରବୋଲି ଅନୁମାନ କରାଯାଏ। ମନ୍ଦିର ଗର୍ଭଗୃହର ଅନ୍ଧକାର ମଧ୍ୟରେ ଦର୍ଶକ ମନରେ ଭୀତ ସୃଷ୍ଟିକରୁଥିବା ଏହି ଦ୍ୱିଭୁଜା ପ୍ରତିମାର ଦକ୍ଷିଣହସ୍ତରେ ମତ୍ସ୍ୟ ଓ ବାମହସ୍ତରେ ଖପୁରୀର ମଦ୍ୟପାତ୍ର ରହିଛି। ପୃଥୁଳ ଶରୀରା ଦେବୀଙ୍କ ମସ୍ତକରେ ଅଳକାଯୁକ୍ତ ଜଟାଭାର, ଦେହରେ ସମସାମୟିକ ବସ୍ତ୍ରାଳଙ୍କାର ଦେଖିବାକୁ ମିଳେ। ଲଳିତଭଙ୍ଗୀରେ ବସିଥିବା ଦେବୀଙ୍କ ଆସନତଳେ ତାଙ୍କ ବାହନ ମହିଷ ରହିଥିବାବେଳେ ମୂର୍ତ୍ତିର ଉର୍ଦ୍ଧ୍ୱଭାଗ ଦୁଇକୋଣରେ ଉଡ୍ଡୀୟମାନ ବିଦ୍ୟାଧରଙ୍କ ପିଚୁଳା ଉତ୍‌କୀର୍ଣ୍ଣ ହୋଇଛି। ପୁରୀ ବାଲିସାହିର ବାରାହୀ ପରବର୍ତ୍ତୀ ସମୟର ଏକ ମନ୍ଦିର ମଧ୍ୟରେ ପୂଜା ପାଉଛନ୍ତି। ଏଠାରେ ଚର୍ତୁଭୁଜା ଦେବୀ ଉପର ଦକ୍ଷିଣହସ୍ତରେ ମୁଦ୍ଗର ଓ ତଳ ହସ୍ତଟି ଅଭୟ ମୁଦ୍ରାରେ ରଖିଥିବା ବେଳେ ବାମ ଉପର ହସ୍ତରେ ସୁରାପାତ୍ର ଓ ତଳ ହସ୍ତରେ ବାମଜାନୁ ଉପରେ ବସିଥିବା ଶିଶୁକୁ ଧାରଣ କରିଥିବା ଦେଖାଯାଏ। ପଦ୍ମପୀଠ ଉପରେ ଲଳିତାସନରେ ବସିଥିବା ଦେବୀ ବାହନ ବିହୀନ। କଳାମୁଗୁନି ପଥରରେ ନିର୍ମିତ ମଧ୍ୟମ ଉଚ୍ଚତା ବିଶିଷ୍ଟ ମୂର୍ତ୍ତିଟି ଖ୍ରୀ:୧୩ଶ-୧୪ଶ ଶତାବ୍ଦୀରବୋଲି ଅନୁମାନ କରାଯାଏ। ବାଲେଶ୍ୱର ଜିଲ୍ଲାର ଅଯୋଧ୍ୟାଠାରେ ଥିବା ଏକ ନବନିର୍ମିତ ମନ୍ଦିରର ବାଡ଼ରେ ବାରାହୀଙ୍କ ପ୍ରତିମା ସ୍ଥାନିତ ହୋଇଛି। ବୋଧହୁଏ ଏହି ଏକକ ମୂର୍ତ୍ତିଟି ପୂର୍ବେ କୌଣସି ମନ୍ଦିର ମଧ୍ୟରେ ଅଧିଷ୍ଠିତ ହୋଇଥିଲେ। ଏଠାରେ ଚର୍ତୁଭୁଜା ଦେବୀ ଉପର ଦକ୍ଷିଣହସ୍ତରେ ମୁଦ୍ଗର, ତଳହସ୍ତରେ ମତ୍ସ୍ୟ, ବାମ ଉପରହସ୍ତରେ ପାଶ ଓ ତଳହସ୍ତରେ ଖପୁରୀର ସୁରାପାତ୍ର ଧାରଣ କରିଛନ୍ତି। ମୂର୍ତ୍ତିର ଆସନ ତଳେ ମହିଷ ରହିଥିବାବେଳେ ପ୍ରଚ୍ଛଦ ପଥରଟି ମଣ୍ଡନକୃତି ବିହୀନ। ଏହା ମଧ ଏକ ପ୍ରାଚୀନ ପ୍ରତିମା ଅଟେ।

ବାଲେଶ୍ୱର ଜିଲ୍ଲାର ଛତ୍ରାପଡ଼ା ନିକଟ ନରେନ୍ଦ୍ରପୁରଠାରେ ବିଶାଳ ଆକାରର ପଞ୍ଚବାରାହୀଙ୍କ ଭଗ୍ନମୂର୍ତ୍ତିଗୁଡ଼ିକ ଦେଖିବାକୁମିଳେ। କଳାମୁଗୁନି ପଥରରେ ନିର୍ମିତ ଅତ୍ୟନ୍ତ ମସୃଣ, ପ୍ରତ୍ୟେକ ପ୍ରତିମା ପ୍ରାୟ ୩.୦୦ମିଟର ଉଚ୍ଚତା ଥିବା ଅନୁମାନ କରାଯାଏ। ସ୍ୱଚ୍ଛ ବସ୍ତ୍ର ପରିଧାନ ସହିତ ବିଭିନ୍ନ ଅଳଙ୍କାରରେ ବିଭୂଷିତା,ପୃଥୁଳଶରୀରା ଦେବୀ ଭୂମିଉପରେ ଭଦ୍ରାସନ ଭଙ୍ଗୀରେ ବସିଛନ୍ତି। ହସ୍ତଗୁଡ଼ିକ ଭଗ୍ନ ହୋଇଥିଲେହେଁ ଗୋଟିଏ ହସ୍ତରେ ସେ ମତ୍ସ୍ୟ ଧାରଣ କରିଥିବା ସୂଚନା ମିଳେ। ମୂର୍ତ୍ତିର କେଶବିନ୍ୟାସ ଓ ବସିବା ଭଙ୍ଗୀ ଓଡ଼ିଶାର ଅନ୍ୟ ବାରାହୀ ପ୍ରତିମାଠାରୁ ସମ୍ପୂର୍ଣ୍ଣ ଭିନ୍ନ। ଦେବୀଙ୍କ ଦୁଇପାଦ ମଧ୍ୟଭାଗରେ ମହିଷ ବାହନ ପରିବର୍ତ୍ତେ ଅର୍ଦ୍ଧପରାୟଣିକ ଭଙ୍ଗୀରେ ଆସନ ଗ୍ରହଣ କରିଥିବା ଜଣେ ଗଣଙ୍କ ପ୍ରତିମା ସ୍ଥାନିତ ହୋଇଛି। ଏହି ପ୍ରକାର ଅନ୍ୟ ଛଅଗୋଟି ପ୍ରତିମା କନିକା ଅଞ୍ଚଳର ସାତଭାୟା ଠାରେ ରହିଛି। ଏହି ଜନଶୂନ୍ୟ ଅଞ୍ଚଳରେ ଉଚ୍ଚକୋଟୀର କଳାଶୈଳୀର ବିଶାଳ ଓ ବିରଳ ବାରାହୀ ମୂର୍ତ୍ତିଗୁଡ଼ିକ ଅବହେଳିତ ଅବସ୍ଥାରେ ପ୍ରାପ୍ତହେବା ଏକ ବିସ୍ମୟର ବିଷୟ। ତେବେ, ଅନୁମାନ କରାଯାଏ ଯେ, ପୂର୍ବେ ଏହି ଜନବିରଳ ଅଞ୍ଚଳରେ ମୂର୍ତ୍ତିଗୁଡ଼ିକ ଗୁପ୍ତଭାବରେ ନିର୍ମାଣ କରାଯାଉଥିଲା। କୌଣସି କାରଣରୁ, ପ୍ରତିଷ୍ଠା ଓ ପୂଜା ପୂର୍ବରୁ ଏଗୁଡ଼ିକ ଅନିଷ୍ଟକାରୀ ଦେବୀ ଭାବି ଲୋକେ ଭାଙ୍ଗି ପକାଇଛନ୍ତି।



ବାରାହୀ, ପୁରୀ



ବାରାହୀ, ବୟାଳିଶିବାଟି, ପୁରୀ ଜିଲ୍ଲା

ସ୍ଥାନକ ବା ଦଣ୍ଡାୟମାନ ଭଙ୍ଗୀର ବାରାହୀ ପ୍ରତିମା ସାଧାରଣତଃ ପାର୍ଶ୍ୱଦେବତା ଭାବେ ମନ୍ଦିର ବାଡ଼ରେ ସ୍ଥାପିତ ହୋଇଥାଏ। ତେବେ, ହୀରାପୁରର ଯୋଗିନୀଙ୍କ ମଧ୍ୟରେ ସେ ସ୍ଥାନକ ଭଙ୍ଗୀରେ ଓ ରାଣୀପୁର-ଝରିଆଲ୍‌ର ଯୋଗିନୀମନ୍ଦିରରେ ଦେବୀ ନୃତ୍ୟ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି। ମୟୂରଭଞ୍ଜ ଜିଲ୍ଲା ପେଡ଼ାଗଡ଼ି ଠାରେ ଥିବା ସ୍ଥାନକ ମୂର୍ତ୍ତି ବାରାହୀ ଚର୍ତୁଭୁଜା ଅଟନ୍ତି। ତା'ଙ୍କ ଦକ୍ଷିଣପାର୍ଶ୍ୱ ମୁଖ୍ୟହସ୍ତରେ ଖଡ୍ଗ ଓ ଅନ୍ୟ ଏକ ହସ୍ତରେ ଜପମାଳା ରହିଥିବାବେଳେ ଅନ୍ୟ ଦୁଇ ହସ୍ତ ଭଗ୍ନ। ବାମପାର୍ଶ୍ୱର ଚାରିହସ୍ତ ମଧ୍ୟରୁ ମୁଖ୍ୟ ଦୁଇହସ୍ତରେ ଖପୁରୀର ସୁରାପାତ୍ର, ଉପର ହସ୍ତରେ ଢ଼ାଲ ମଧ୍ୟହସ୍ତରେ କଟାରୀ ଧାରଣ କରିଥିବାବେଳେ ତଳ ହସ୍ତଟି ବରଦ ମୁଦ୍ରା ପ୍ରଦର୍ଶନ କରେ। ଏହା ବ୍ୟତୀତ ମୂର୍ତ୍ତିର ନିମ୍ନ ଦୁଇ ପାର୍ଶ୍ୱରେ ଅନୁଚରମାନଙ୍କ ଭଗ୍ନ ପିତୁଳା ଓ ଊର୍ଦ୍ଧ୍ୱ ଦୁଇକୋଣରେ ଉଡ୍ଡୀୟମାନ ଗନ୍ଧର୍ବଙ୍କ ମୂର୍ତ୍ତି ଦେଖାଯାଏ। ଏଠାରେ ଦେବୀଙ୍କ ଶରୀର ପୃଥୁଳ ପରିବର୍ତ୍ତେ କ୍ଷୀଣ। ଭୁବନେଶ୍ୱର ନିକଟ ଗାରେଡ଼ିପାଞ୍ଚଣ ଗ୍ରାମରେ ଥିବା ସ୍ଥାନକ ଭଙ୍ଗୀର ବାରାହୀ ଚର୍ତୁଭୁଜ ଅଟନ୍ତି। ଏଠାରେ ତାଙ୍କ ତିନି ହସ୍ତ ଭଗ୍ନ ହୋଇଥିଲେ ହେଁ ମୁଖ୍ୟ ଦକ୍ଷିଣ ହସ୍ତରେ ସୁରାପାତ୍ର ଓ ଏକ ବାମହସ୍ତରେ ଖେଟକ ବା ଢ଼ାଲ ଧାରଣ କରିଥିବା ଦେଖାଯାଏ। ଏହା ଖ୍ରୀ: ୧୦ମ - ୧୧ଶ ଶତାବ୍ଦୀର କୃତି ହୋଇଥିବା ସମ୍ଭବ।

କୋଣାର୍କ ନିକଟ ବୟାଳିଶିବାଟି ଗ୍ରାମର ଗଙ୍ଗେଶ୍ୱରଦେବୀ ମନ୍ଦିରର ପାର୍ଶ୍ୱଦେବତୀ ବାରାହୀ ଉଚ୍ଚକୋଟୀର କଳାଶୈଳୀର ସ୍ଥାନକ ପ୍ରତିମା।ଏଠାରେ ଚର୍ତୁଭୁଜା ଦେବୀ ବିଶ୍ୱପଦ୍ମ ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି। ତାଙ୍କ ଦକ୍ଷିଣପାର୍ଶ୍ୱ ମୁଖ୍ୟ ହସ୍ତଟି ଭଗ୍ନ ହେଲେ ହେଁ ଏଥିରେ ସେ ମତ୍ସ୍ୟ ଧାରଣ କରିଥିବା ଅନୁମାନ କରାଯାଏ। ତେବେ, ଏହି ପାର୍ଶ୍ୱର ଅନ୍ୟ ହସ୍ତଟିରେ ସେ କର୍ତ୍ତରୀ ଧାରଣ କରିଥିବାବେଳେ ବାମପାର୍ଶ୍ୱ ମୁଖ୍ୟ ହସ୍ତରେ ସୁରାପାତ୍ର ଓ ଅନ୍ୟ ହସ୍ତରେ ଖେଟକ ରହିଛି। ଏଠାରେ ଦେବୀଙ୍କ ମସ୍ତକ ପ୍ରଚ୍ଛଦରେ ପ୍ରଭାମଣ୍ଡଳ ସଦୃଶ ଚକ୍ରକାର କୁଞ୍ଚିତ କେଶବିନ୍ୟାସ ଓ କପାଳ ଉପରେ ଏକ ଭିନ୍ନ ପ୍ରକାର ଅଳକା ମୁକୁଟ ଦେଖିବାକୁ ମିଳେ। ଦେବୀଙ୍କ ଶରୀରର ଊର୍ଦ୍ଧ୍ୱଭାଗ

ଉନ୍ମୁକ୍ତ ହେଲେ ହେଁ କଟିଦେଶରେ ବସ୍ତ୍ର ପରିଧାନ ସହିତ ବହୁବିଧ ଅଳଙ୍କାରରେ ବିଭୂଷିତ ହୋଇଛନ୍ତି। ମୂର୍ତ୍ତିର ନିମ୍ନ ଭାଗର ଦୁଇ ପାର୍ଶ୍ୱରେ ଛୋଟ ବିଶ୍ୱପଦ୍ମାସନ ଉପରେ ତାଙ୍କ ଅନୁରୂପ ଦୁଇ ଦ୍ୱିଭୁଜା ଅନୁଚରୀ ହସ୍ତରେ କର୍ତ୍ତରୀ ଧାରଣ କରି ଉଭା ହୋଇଥିବାବେଳେ ଊର୍ଦ୍ଧ୍ୱ ଭାଗର ଦୁଇ ପାର୍ଶ୍ୱରେ ଯୁଗଳ - ପଦ୍ମକଳିକା, ଉଡ୍ଡୀୟମାନ ଗନ୍ଧର୍ବ ଓ ଅପସରାଙ୍କ ପିଚୁଳା ସ୍ଥାନିତ ହୋଇଛି। ମୂର୍ତ୍ତିଟିର ମୁଖର ଅଗ୍ରାଂଶ ଭଗ୍ନ। କଳା ମୁଗୁନିପଥରରେ ଉତ୍କୀର୍ଣ୍ଣ, ଭୟଙ୍କର ଓ ସୁନ୍ଦର ରଚନାଟିର ଉଚ୍ଚତା ପ୍ରାୟ ୧.୦୦ମିଟର ଓ ପ୍ରସ୍ଥ ପ୍ରାୟ ୦.୪୮ମିଟର ହେବ।

ଭାରତର ବିଭିନ୍ନ ପ୍ରାନ୍ତରେ ଚନ୍ତଦେବୀ ବାରାହୀଙ୍କ ଅର୍ଚ୍ଚାବିଗ୍ରହ ପ୍ରାପ୍ତ ହେଉଥିଲେ ହେଁ ଏହାର ସଂଖ୍ୟା ସୀମିତ। ବିଷ୍ଣୁ ଜଳତତ୍ତ୍ୱର ଦେବତା ଏବଂ ତାଙ୍କ ଉଗ୍ର ବରାହ ଅବତାର ସମୁଦ୍ର ସହିତ ସମ୍ପର୍କିତ ଏହି ପରିପ୍ରେକ୍ଷୀରେ ଦେବୀ ପୂର୍ବେ ମୁଖ୍ୟତଃ ନୌଚାଳକ, ନୌଯାତ୍ରା କରୁଥିବା ବଣିକଗୋଷ୍ଠୀ ଏବଂ ମତ୍ସ୍ୟଜୀବୀମାନଙ୍କ ଦ୍ୱାରା ପୂଜିତ ହେଉଥିଲେ। ଏହା ବ୍ୟତୀତ 'ବରାହ' ଗୋତ୍ରୀ କ୍ଷତ୍ରୀୟମାନଙ୍କର ମଧ୍ୟ ସେ ଆରାଧ୍ୟଦେବୀ ଯେ କି,ତନ୍ତ୍ର ପୂଜାରେ ଏକ ପ୍ରମୁଖ ସ୍ଥାନର ଅଧିକାରିଣୀ।

# ଚଉଷଠିଯୋଗିନୀ

ଶକ୍ତି ପରମ୍ପରାର ଦେବୀମାନଙ୍କ ମଧ୍ୟରେ ଯୋଗିନୀଙ୍କ ସଂଖ୍ୟା ସର୍ବାଧିକ ଅର୍ଥାତ୍, ଏମାନେ ଚଉଷଠି ଅଟନ୍ତି। ସାଧାରଣତଃ ଏମାନେ ଦୁର୍ଗାଙ୍କ ବିଭିନ୍ନ ରୂପ, ଚଣ୍ଡୀକା ଓ ବିଭିନ୍ନ ଦେବତାଙ୍କ ଶକ୍ତି ଅର୍ଥାତ୍, ମାତୃକାଗଣ। ଭାରତରେ ଥିବା ସର୍ବମୋଟ ସାତଗୋଟି ଯୋଗିନୀପୀଠ ମଧ୍ୟରୁ ଓଡ଼ିଶାର ଦୁଇଟି ଓ ମଧ୍ୟପ୍ରଦେଶରେ ଗୋଟିଏ ପୀଠ ଅନେକାଂଶରେ ଭଲ ଅବସ୍ଥାରେ ରହିଥିବାବେଳେ ମଧ୍ୟଭାରତ ଓ ଉତ୍ତରଭାରତରେ ଥିବା ଅନ୍ୟ ପୀଠଗୁଡ଼ିକ ବହୁଭାବରେ କ୍ଷତିଗ୍ରସ୍ତ ହୋଇପଡ଼ିଛି। ଓଡ଼ିଶାର ବଲାଙ୍ଗୀର ନିକଟ ରାଣୀପୁର-ଝରିଆଲ୍‌ଠାରେ ଥିବା ପୀଠର କଳାଶୈଳୀ ଅଧ୍ୟୟନ କରି କୁହାଯାଇପାରେ ଯେ, ଏହା ଖ୍ରୀ: ୮ମ-୯ମ ଶତାବ୍ଦୀର କୃତି। ଭୁବନେଶ୍ୱର ନିକଟ ହୀରାପୁର ପୀଠର ଉନ୍ନତମାନ ମୂର୍ତ୍ତିକଳା ଖ୍ରୀ: ୧୦ମ ଶତାବ୍ଦୀର ହୋଇଥିବା ପ୍ରତୀୟମାନ ହୁଏ। ମଧ୍ୟପ୍ରଦେଶର ଭେରାଘାଟ ଠାରେ ଥିବା ଯୋଗିନୀପୀଠଟିକୁ ପ୍ରତ୍ନତତ୍ତ୍ୱବିତମାନେ ଖ୍ରୀ: ୧୧ଶ-୧୨ଶ ଶତାବ୍ଦୀର କୃତି ବୋଲି ମତ ଦିଅନ୍ତି ଏବଂ ଏଠାକାର ମୂର୍ତ୍ତିଗୁଡ଼ିକ ଦୁଇପର୍ଯ୍ୟାୟରେ ନିର୍ମିତ ହୋଇଥିବା ଜଣାଯାଏ। ଏହି ପୀଠଗୁଡ଼ିକର ନିର୍ମାଣ ଶୈଳୀ ଅନ୍ୟ ମନ୍ଦିରଠାରୁ ସମ୍ପୂର୍ଣ୍ଣ ଭିନ୍ନ। ଏହା ଚକ୍ରକାର ସ୍ଥାନରେ, ଚିକ୍କଣକାରୀ ପ୍ରାଚୀରର ଭିତର ପାଖରେ ଯୋଗିନୀଙ୍କ ମୂର୍ତ୍ତିଗୁଡ଼ିକ ଏକ କ୍ରମାନ୍ୱୟ ଧାରାରେ ସ୍ଥାନିତ ହୋଇଥାଏ ଏବଂ ଏହାର ମଧ୍ୟଭାଗରେ ଏକ ଛାତଯୁକ୍ତ ମଣ୍ଡପ ଉପରେ ଶିବଙ୍କ ଏକମୂର୍ତ୍ତି ରହିଥାଏ। ତେବେ, ଭେରାଘାଟ ପୀଠର ଏହି ଶିବମନ୍ଦିରଟି ଗୋଟିଏ ପାର୍ଶ୍ୱରେ ରହିଛି। ଏହି ପ୍ରକାର ନିର୍ମାଣଗୁଡ଼ିକ ଶକ୍ତିଚକ୍ର ମଧ୍ୟରେ ଶିବଙ୍କ ସ୍ଥିତିକୁ ବୁଝାଏ।

ପୂର୍ବ ସୂଚିତ ଓଡ଼ିଶାର ଦୁଇ ଯୋଗିନୀ ପୀଠର ମୌଳିକତା ଏକ ହେଲେ ହେଁ, ନିର୍ମାଣ ଶୈଳୀ ଓ ମୂର୍ତ୍ତିକଳାରେ ବହୁ ପାର୍ଥକ୍ୟ ଦେଖାଯାଏ। ରାଣୀପୁର-ଝରିଆଲ୍, ପୀଠ ଓ ତା'ର ମୂର୍ତ୍ତିଗୁଡ଼ିକ ଆକାରରେ ବଡ଼ ହୋଇଥିବାବେଳେ ହୀରାପୁରପୀଠ ଓ ତା'ର ମୂର୍ତ୍ତିଗୁଡ଼ିକ ଅପେକ୍ଷାକୃତ ଛୋଟ। ରାଣୀପୁର-ଝରିଆଲ୍ ପୀଠ ଓ ମୂର୍ତ୍ତିଗୁଡ଼ିକ ଏକ ପ୍ରକାର ଈଷତ୍‌ଧଳା କନ୍ଦାପଥରରେ ନିର୍ମିତ

ହୋଇଥିବାବେଳେ ହୀରାପୁରର ପୀଠଟି ନିମ୍ନମାନର ବଗଡ଼ା କନ୍ଦାପଥରରେ ନିର୍ମିତ ଏବଂ ଯୋଗିନୀ ମୂର୍ତ୍ତି ସମେତ କେତେକ ଭୈରବମୂର୍ତ୍ତି କଳା ମୁଗୁନିପଥରର ମସୃଣ କୃତି । ରାଣୀପୁର-ଝରିଆଲ୍‌ର ଯୋଗିନୀ ମୂର୍ତ୍ତିଗୁଡ଼ିକ ଭିତରପାଖ ବାଡ଼ର ମଧ୍ୟଭାଗରେ ରହିଥିବାବେଳେ ହୀରାପୁରର ମୂର୍ତ୍ତିଗୁଡ଼ିକ ଭିତରପାଖ ବାଡ଼ର ନିମ୍ନଭାଗରେ ସ୍ଥାନିତ ହୋଇଛି । ରାଣୀପୁର-ଝରିଆଲ୍, ମୂର୍ତ୍ତିଗୁଡ଼ିକ ଅବକ୍ଷୟ ଯୋଗୁ ଅସ୍ପଷ୍ଟ ହୋଇପଡ଼ିଥିବାବେଳେ ହୀରାପୁରର କଳା ମୁଗୁନିପଥର ମୂର୍ତ୍ତିଗୁଡ଼ିକର ଅଙ୍ଗ ପ୍ରତ୍ୟଙ୍ଗ ଓ ଅଳଙ୍କରଣ ଭଗ୍ନ ହେଲେ ହେଁ ସ୍ପଷ୍ଟ । ରାଣୀପୁର-ଝରିଆଲ୍‌ର ସମସ୍ତ ଯୋଗିନୀ 'ଚଉକ- ନୃତ୍ୟଭଙ୍ଗୀ' ରେ ଉଭାହୋଇଥିବାବେଳେ ହୀରାପୁରର ଯୋଗିନୀଗଣ ବିଭିନ୍ନ ଭଙ୍ଗୀରେ ଦଣ୍ଡାୟମାନ ତଥା ଅଳ୍ପ କେତେକ ନୃତ୍ୟଭଙ୍ଗୀର ମୂର୍ତ୍ତି ଦେଖିବାକୁ ମିଳେ । ରାଣୀପୁର-ଝରିଆଲ୍ ପୀଠର ଭିତର ପାଖ ଚଉଷଠିଟି ଖୋପରେ ବର୍ତ୍ତମାନ ୪୮ଟି ମୂର୍ତ୍ତି ରହିଛି ଓ ଅନ୍ୟ ମୂର୍ତ୍ତିଗୁଡ଼ିକ ଅପହରଣ ହୋଇଯାଇଛି । ଏହି ପୀଠର ମଧ୍ୟଭାଗରେ ଥିବା ମଣ୍ଡପରେ ଏକ ଅଷ୍ଟଭୁଜ ନଟରାଜ-ଶିବଙ୍କ ମୂର୍ତ୍ତି ବ୍ୟତୀତ ଅନ୍ୟ କୌଣସି ପ୍ରତିମା ନାହିଁ । ହୀରାପୁର ପୀଠର ଭିତରପାଖ ୬୦ଟି ଖୋପରେ ୬୦ଯୋଗିନୀ ମୂର୍ତ୍ତି ସ୍ଥାନିତ ହେବା ସହିତ ମଧ୍ୟଭାଗ ମଣ୍ଡପର ବାଡ଼ରେ ତିନିଗୋଟି ଯୋଗିନୀ ଓ ଚାରିଗୋଟି ଭୈରବମୂର୍ତ୍ତି ସ୍ଥାନିତ ହୋଇଛି । ଏଠାରେ ଏହି ବାଡ଼ରୁ ଗୋଟିଏ ମାତ୍ର ଯୋଗିନୀ ପ୍ରତିମା ଅପହରଣ ହୋଇଯାଇଛି । ରାଣୀପୁର-ଝରିଆଲ୍ ଯୋଗିନୀ ପୀଠରେ ଅନ୍ୟ କୌଣସି ମୂର୍ତ୍ତି ନଥିବାବେଳେ ହୀରାପୁର ଠାରେ ପୀଠର ପ୍ରବେଶ ଦ୍ୱାରାରେ ଦୁଇ ଦ୍ୱାରପାଳ, ପ୍ରବେଶ ପଥରେ ଦୁଇ ବାମଦେବ-ଶିବମୂର୍ତ୍ତି ଓ ବାହାର ପାଖ ବାଡ଼ରେ ନବଚଣ୍ଡୀକାଙ୍କ ମୂର୍ତ୍ତି ଦେଖିବାକୁ ମିଳେ । ରାଣୀପୁର-ଝରିଆଲ୍‌ର ଯୋଗିନୀଗଣ ବାହନ ବିହୀନ ଏବଂ ଅବକ୍ଷୟ ଯୋଗୁଁ ଆୟୁଧ ଓ ବସ୍ତ୍ର ଭୂଷଣ ଅସ୍ପଷ୍ଟ, କିନ୍ତୁ ହୀରାପୁରର ପ୍ରତ୍ୟେକ ଯୋଗିନୀ କୌଣସି ପ୍ରାଣୀ କିମ୍ବା ବସ୍ତୁ ଉପରେ ଦଣ୍ଡାୟମାନ ଏବଂ ପ୍ରତ୍ୟେକଙ୍କ ଶିରଭୂଷା ଓ ବସ୍ତ୍ରାଳଙ୍କାର ସ୍ପଷ୍ଟ ଓ ସୁନ୍ଦର । ରାଣୀପୁର-ଝରିଆଲ୍‌ର ଯୋଗିନୀ ଓ ନଟରାଜ ଶିବମୂର୍ତ୍ତିର କଳାଶୈଳୀ ରୁକ୍ଷ ହୋଇଥିବାବେଳେ ହୀରାପୁରର କମନୀୟ ଓ ସ୍ପଷ୍ଟ ମୂର୍ତ୍ତିଗୁଡ଼ିକର ସଂକ୍ଷିପ୍ତ ସୂଚନା ନିମ୍ନରେ ପ୍ରଦତ୍ତ ହେଲା ।

ହୀରାପୁର ପୀଠର ପ୍ରତ୍ୟେକ ଯୋଗିନୀ ମୂର୍ତ୍ତିର ଉଚ୍ଚତା ପ୍ରାୟ ୦.୫୦ରୁ ୦.୫୫ମିଟର ଓ ପ୍ରସ୍ଥ ପ୍ରାୟ ୦.୨୫ରୁ ୦.୩୦ ମିଟର ଅଟେ । ପ୍ରତ୍ୟେକ ଦେବୀଙ୍କ ମସ୍ତକରେ କମନୀୟ କେଶବିନ୍ୟାସ କିମ୍ବା ମୁକୁଟ, ଗଳାରେ ରତ୍ନହାର ଓ କଙ୍କଣ, କଟିରେ ମେଖଳା ଦେଖିବାକୁ ମିଳେ । ହସ୍ତ ଓ ପାଦ ଭଗ୍ନଯୋଗୁଁ ଅଳଙ୍କାର, ମୁଦ୍ରା ଓ ଆୟୁଧ ବିଷୟରେ ସମ୍ପୂର୍ଣ୍ଣ ଧାରଣା କରିହୁଏ ନାହିଁ । ତେବେ,ପୀଠର ଭିତର ପାଖ ଦକ୍ଷିଣ ପାର୍ଶ୍ୱରୁ ମୂର୍ତ୍ତିଗୁଡ଼ିକର କ୍ରମାନ୍ୱୟ ବର୍ଣ୍ଣନା ଏହିପ୍ରକାର:-

୧. ଚତୁର୍ଭୁଜା ଦେବୀ ସାବଲୀଳ ଭଙ୍ଗୀରେ ଶବ ଉପରେ ଦଣ୍ଡାୟମାନ । ବୋଧ ହୁଏ ଦେବୀ ମାୟା ବା ବହୁରୂପା ହୋଇପାରନ୍ତି ।

୨. ଦ୍ୱିଭୁଜା ଦେବୀଙ୍କ । ପାଦଗୁଡ଼ିକ ଭଗ୍ନ ହେଲେ ହେଁ ଶବ ଉପରେ ମହାପାଦ ଭଙ୍ଗୀରେ ଦଣ୍ଡାୟମାନ ହୋଇଥିବା ସୂଚନା ମିଳେ ।

୩. ଦ୍ୱିଭୁଜା ଦେବୀଙ୍କ ଦକ୍ଷିଣହସ୍ତ ଭଗ୍ନ ହେଲେ ହେଁ ବାମହସ୍ତରେ ଧାରଣ କରିଥିବା କପାଳର ରକ୍ତପାତ୍ରଟି ମୁଖ ନିକଟରେ ରହିଛି । ହସ୍ତୀ ଉପରେ ଦଣ୍ଡାୟମାନ ଦେବୀ ନର୍ମଦା ହୋଇପାରନ୍ତି ।

୪. ମସ୍ତକରେ ଚକ୍ରାକାର କୁଞ୍ଚିତ କେଶ ଥିବା ଦେବୀ ଚତୁର୍ଭୁଜା।ଦେବୀଙ୍କ ତିନିହସ୍ତ ଭଗ୍ନ ହୋଇଥିବା

ବେଳେ ଦକ୍ଷିଣ ଉପରେ ହସ୍ତରେ ଏକ କପାଳପାତ୍ର ଦେଖାଯାଏ । ଦେବୀ ଆଲୀଢ଼ ଭଙ୍ଗୀରେ କଚ୍ଛପ ଉପରେ ଉଭା ହୋଇଛନ୍ତି । ସେ ଯମୁନା ହୋଇପାରନ୍ତି ।

୫. ଦ୍ୱିଭୁଜା ଦେବୀଙ୍କ ବାହୁରେ ନାଗ-ବାଜୁବନ୍ଧ ଦେଖିବାକୁ ମିଳେ । ଦୁଇପାର୍ଶ୍ୱରେ ପତ୍ରଯୁକ୍ତ ଏକ ପ୍ରସ୍ଫୁଟିତ ପଦ୍ମ ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି । ଦେବୀ ଲକ୍ଷ୍ମୀ, ଶାନ୍ତୀ କିମ୍ବା କାନ୍ତୀ ହୋଇପାରନ୍ତି ।

୬. ସୁଦର୍ଶନା, ଦ୍ୱିଭୁଜା ଦେବୀ ଜଳତରଙ୍ଗ ଉପରେ ସମପାଦ ଭଙ୍ଗୀରେ ଦଣ୍ଡାୟମାନ । ବୋଧହୁଏ ଦେବୀ ବୃଦ୍ଧି ବା କ୍ରିୟା ଅଟନ୍ତି ।

୭. ଚର୍ତୁଭୁଜା ଦେବୀ, ମର୍ଯ୍ୟାଦାପୂର୍ଣ୍ଣ ସାବଲୀଳ ଭଙ୍ଗୀରେ ଏକ ଗୋଧିସର୍ପ ଉପରେ ଦଣ୍ଡାୟମାନ ।

୮. ଚର୍ତୁଭୁଜା ଦେବୀ, ଏକ ଉତ୍ଥୁୟମାନ ହସ୍ତୀ ଉପରେ ଦଣ୍ଡାୟମାନ । ବୋଧହୁଏ ସେ ଅନିଦ୍ରା ଅଟନ୍ତି ।

୯. ବରାହମୁଖୀ, ଚର୍ତୁଭୁଜା ଦେବୀ ଗୋଟିଏ ବାମ ହସ୍ତରେ ଖପୁରୀର ସୁରାପାତ୍ର ଓ ଅନ୍ୟ ହସ୍ତରେ ଧନୁ ଧାରଣ କରିଥିବା ଦେଖାଯାଏ । ଦେବୀଙ୍କ ଦୁଇ ଦକ୍ଷିଣହସ୍ତ ଭଗ୍ନ । ସେ ପ୍ରତ୍ୟାଲୀଢ଼ ଭଙ୍ଗୀରେ ମହିଷ ଉପରେ ଉଭା ହୋଇଛନ୍ତି । ଦେବୀ ବାରାହୀ ହୋଇପାରନ୍ତି ।

୧୦. ଭଗ୍ନମୁଖା, ଦ୍ୱିଭୁଜା ଦେବୀଙ୍କ ମସ୍ତକରେ ଅଳକା ଓ ଗଳାରେ କପାଳମାଳା ରହିଛି । ସେ ଦକ୍ଷିଣ ହସ୍ତରେ ଏକ ଉତ୍ତୋଳିତ ଖଡ୍ଗ ଧାରଣ କରିଥିବାବେଳେ ତାଙ୍କ ବାମହସ୍ତଟି ଭଗ୍ନ । ସେ ସାବଲୀଳ ଭଙ୍ଗୀରେ ସର୍ପମସ୍ତକ ଉପରେ ଉଭା ହୋଇଛନ୍ତି । ଦେବୀ ରଣବୀରା ହୋଇପାରନ୍ତି ।

୧୧. ମର୍କଟମୁଖୀ ଦେବୀ, ଏକ ଉଷ୍ଟ୍ର ବା ଓଟ ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି । ସେ ମାରୁତୀ ହୋଇପାରନ୍ତି ।

୧୨. ସହାସ୍ୟବଦନା ଦେବୀଙ୍କ ମସ୍ତକରେ କୁଞ୍ଚିତ କେଶଭାର ଦେଖାଯାଏ । ଦ୍ୱିଭୁଜା ଦେବୀ ଏକ ପେଚକ ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି ।

୧୩. ସହାସ୍ୟବଦନା, ଦ୍ୱିଭୁଜା ଦେବୀଙ୍କ ହସ୍ତପାଦ ଭଗ୍ନ । ସେ ଏକ ଶୁକର ଉପରେ ଦଣ୍ଡାୟମାନ ହୋଇଛନ୍ତି । ଦେବୀ ବିରୂପା ବା କାଳରାତ୍ରୀ ହୋଇପାରନ୍ତି ।

୧୪. ଦ୍ୱିଭୁଜା ଦେବୀ ବ୍ୟାଘ୍ର ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ।

୧୫. ଦ୍ୱିଭୁଜା ଦେବୀଙ୍କ ମସ୍ତକରେ କୁଞ୍ଚିତକେଶ, ଦକ୍ଷିଣହସ୍ତରେ ଏକ ପଦ୍ମକଳିକା ଓ କଟିରେ କର୍ତ୍ତରୀ ଧାରଣ କରିଥିବା ଦେଖାଯାଏ । ଦେବୀ ଏକ ବ୍ୟାଘ୍ର ଉପରେ ଦଣ୍ଡାୟମାନ ।

୧୬. ଚର୍ତୁଭୁଜା ଦେବୀଙ୍କ ମସ୍ତକରେ ସୁନ୍ଦର କବରୀ ଓ ଗଳାରେ କପାଳମାଳା ଦେଖିବାକୁ ମିଳେ । ସେ ଏକ ମତ୍ସ୍ୟ ଉପରେ ସମଭଙ୍ଗରେ ଦଣ୍ଡାୟମାନ ହୋଇଛନ୍ତି ।

୧୭. ଚର୍ତୁଭୁଜା ଦେବୀଙ୍କ ତଳ ବାମହସ୍ତରେ ଏକ ଖଡ୍ଗ ରହିଛି । ସେ ଏକ ଯକ୍ଷ ମସ୍ତକ ଉପରେ ଦଣ୍ଡାୟମାନ ହୋଇଥିବା ଦେଖାଯାଏ ।

୧୮. ଭଗ୍ନ ମହିଷମୁଖୀ, ଦ୍ୱିଭୁଜାଦେବୀ ଏକ ଗୃହ ବା ଭବନ ସଦୃଶ ନିର୍ମାଣ ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି ।

୧୯. ସୁନ୍ଦର ଗଭାଯୁକ୍ତା, ଦ୍ୱିଭୁଜା ଦେବୀ ଏକ ମସ୍ତକ ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି ।



ଯୋଗିନୀ ସଂଖ୍ୟା: ୩୮ ଓ ୩୯

୨୦. ମସ୍ତକରେ ରୁକ୍ଷକେଶ ଥିବା ଦ୍ୱିଭୁଜାଦେବୀ ମସ୍ତକ ଉପରେ ଧନୁ ସଦୃଶ୍ୟ ଏକ ହସ୍ତୀଚର୍ମ ଧାରଣ କରି ସିଂହ ଉପରେ ନୃତ୍ୟ ଭଙ୍ଗୀରେ ଉଭା ହୋଇଛନ୍ତି।

୨୧. ମସ୍ତକରେ ସୁନ୍ଦର ଗଭାଯୁକ୍ତା, ଦ୍ୱିଭୁଜା ଦେବୀ 'କଣ୍ଟକ-ଉତ୍ପାଟୀକା' ବା ପାଦରୁ କଣ୍ଟା କାଢୁଥିବା ଭଙ୍ଗୀରେ ଏକ ଶ୍ୱାନ ଉପରେ ଦଣ୍ଡାୟମାନ ହୋଇଛନ୍ତି। ଦେବୀଙ୍କ ନାମ ବିକରାଳୀ ହୋଇପାରେ।

୨୨. ଉଗ୍ରମୁଖା, ଚର୍ତୁଭୁଜା ଦେବୀଙ୍କ ବାମକାନ୍ଧରେ ତାରଯୁକ୍ତ ଏକ ବାଦ୍ୟଯନ୍ତ୍ରଭଳି ପଦାର୍ଥ ଦେଖିବାକୁ ମିଳେ। ସେ ଏକ ଅସ୍ପଷ୍ଟ ପଦାର୍ଥ କିମ୍ୱା ପ୍ରାଣୀ ଉପରେ ଦଣ୍ଡାୟମାନ ହୋଇଥିବାବେଳେ ସେଠାରେ ଏକ ସର୍ପ ରହିଛି।

୨୩. ସୁବେଶା, ଦ୍ୱିଭୁଜାଦେବୀ ସାବଲୀଳ ଭଙ୍ଗୀରେ ଜଳତରଙ୍ଗ ଉପରେ ଦଣ୍ଡାୟମାନ। ସେ ଜଳଦେବୀ ବା ସରସ୍ୱତୀ ହୋଇପାରନ୍ତି।

୨୪. ମସ୍ତକରେ 'କିରୀଟମୁକୁଟ' ପରିଧାନ କରିଥିବା ଦ୍ୱିଭୁଜାଦେବୀ ପଦ୍ମ ଉପରେ ଥିବା ସପ୍ତପିଣ୍ଡିକା ଉପରେ ସମପାଦ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି।

୨୫. ଭଲ୍ଲୁକମୁଖୀ, ଦ୍ୱିଭୁଜାଦେବୀ ଦକ୍ଷିଣହସ୍ତରେ ଏକ ମେରୁ ବା ପର୍ବତ ଧାରଣ କରିଥିବା ସୂଚନାମିଳେ। ସେ ଏକ ପୁଷ୍ପିତ ବୃକ୍ଷ ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି।

୨୬. ଉଗ୍ର, ସିଂହମୁଖୀ ଦେବୀଙ୍କ ମସ୍ତକରେ ସିଂହର କୁଞ୍ଚିତ କେଶର ଦେଖିବାକୁମିଳେ। ଚର୍ତୁଭୁଜା ଦେବୀ ତଳ ଦୁଇ ହସ୍ତରେ ପୂର୍ଣ୍ଣକୁମ୍ଭ ସଦୃଶ ପଦାର୍ଥ ଧାରଣ କରି ବୃକ୍ଷ ଓ ପର୍ବତମାଳା ଉପରେ ନୃତ୍ୟ ଭଙ୍ଗୀରେ ରହିଛନ୍ତି।

୨୭. ସୁବେଶା, ଦ୍ୱିଭୁଜାଦେବୀ, ସାବଲୀଳ ଭଙ୍ଗୀରେ ପଦ୍ମଲତା ଉପରେ ଦଣ୍ଡାୟମାନ ହୋଇଛନ୍ତି।

୨୮. ମସ୍ତକରେ କୁଞ୍ଚିତ ଜଟାଭାର ଥିବା ଉଗ୍ରମୁଖା ଦେବୀ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଥିବା ବେଳେ ମୂର୍ତ୍ତିର ବାହନ ଅଂଶଟି ଭଗ୍ନ।

୨୯. ପ୍ରସନ୍ନ ବଦନା ସୁବେଶା, ଦ୍ୱିଭୁଜାଦେବୀଙ୍କ ଗଳାରେ ନାଗ, ଦକ୍ଷିଣହସ୍ତରେ ବଜ୍ର ଓ ବାମ ହସ୍ତରେ ଢାଲ ଧାରଣ କରି ଏକ ପ୍ରସ୍ଫୁଟିତ ପଦ୍ମକେଶର ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି।

୩୦. ପ୍ରସନ୍ନ ବଦନା, ଦ୍ୱିଭୁଜାଦେବୀ, ବାମ ହସ୍ତରେ ଏକ ଢାଲ ଧାରଣ କରିଥିବା ସୂଚନା ମିଳେ। ଦେବୀ ମୟୂର ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି। ସେ କୌମାରୀ ହୋଇପାରନ୍ତି।

୩୧. ଚକ୍ରପୀଠର ମଧ୍ୟଭାଗରେ ଥିବା ମୁଖ୍ୟଦେବୀ ଅନ୍ୟ ମୂର୍ତ୍ତିଠାରୁ ଆକାରରେ ସାମାନ୍ୟ ବଡ଼। ଦଶଭୁଜା ଭବ୍ୟମୂର୍ତ୍ତିର ଶରୀର ଭାଗ ବହୁଭାବରେ ଭଗ୍ନ। ବିଶ୍ୱପଦ୍ମ ଉପରେ ଦଣ୍ଡାୟମାନ ଦେବୀଙ୍କ ଆସନ ସହିତ ଏକ ଛୋଟ ପୀଠ ରହିଛି। ଦେବୀ ମହାମାୟା ନାମରେ ପରକୀର୍ତ୍ତିତା। ତାଙ୍କରି ନାମରେ ହୀରାପୁରପୀଠ 'ମହାମାୟା ପୀଠ' ବା ମନ୍ଦିର ଭାବରେ ସୁପରିଚିତ।

୩୨. ଉଗ୍ରମୁଖା ଦେବୀଙ୍କ ମସ୍ତକରେ ଚକ୍ରାକାର କୁଞ୍ଚିତକେଶ ରହିଛି। ଦ୍ୱିଭୁଜାଦେବୀ ଉଦଣ୍ଡ ନୃତ୍ୟ ଭଙ୍ଗୀରେ ଉଭାହୋଇଛନ୍ତି। ମୂର୍ତ୍ତିର ନିମ୍ନ ଭାଗରେ କାନ୍ଧରେ ତୂଣୀର ଧାରଣକରି ଧର୍ନୁବାଣ କ୍ଷେପଣ କରୁଥିବା ଏକ ସୁଦର୍ଶନ ଢକ୍ଷର ପିତୁଳା ସ୍ଥାନିତ ହୋଇଛି। ଦେବୀ 'ଉଷା' ହୋଇପାରନ୍ତି।

୩୩. ସୁଦର୍ଶନା, ଦ୍ୱିଭୁଜା ଦେବୀ ଏକ କର୍କଟ ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି।

୩୪. ସର୍ପମୁଖୀ, ଚତୁର୍ଭୁଜା ଦେବୀଙ୍କ ହସ୍ତ ଓ ନିମ୍ନଭାଗ ଭଗ୍ନ।

୩୫. ମୁକ୍ତାମୁକୁଟ ପରିଧାନକରିଥିବା ଚର୍ତୁଭୁଜାଦେବୀ ଏକ ପଲଙ୍କ ଉପରେ ଉଭା ହୋଇଛନ୍ତି।

୩୬. ମସ୍ତକରେ ରୁକ୍ଷ କେଶରାଶି ଥିବା, ଉଗ୍ରମୁଖା, ଦ୍ୱିଭୁଜାଦେବୀ ଏକ ବନ୍ୟମହିଷ ଉପରେ ତ୍ରିଭଙ୍ଗ ଠାଣିରେ ଦଣ୍ଡାୟମାନ ହୋଇଛନ୍ତି।

୩୭. ଦ୍ୱିଭୁଜାଦେବୀ, ଦକ୍ଷିଣହସ୍ତରେ ଖଡ୍ଗ ଧାରଣ କରିଥିବାବେଳେ ବାମହସ୍ତଟି ଭଗ୍ନ। ଦେବୀ ଏକ କାକ ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି।

୩୮. ହସ୍ତୀମୁଖା, ସୁଠାମ ଶରୀରା ଦେବୀଙ୍କ ମସ୍ତକରେ ଜଟାଭାର ଦେଖାଯାଏ। ଦ୍ୱିଭୁଜା ଦେବୀ ଏକ ଗଧ କିମ୍ବା ମୂଷା ଉପରେ ଦଣ୍ଡାୟମାନ ହୋଇଛନ୍ତି।

୩୯. ସୁଦର୍ଶନା ଦ୍ୱିଭୁଜାଦେବୀ ଧର୍ନୁବାଣ ପେଷଣ-ନୃତ୍ୟ ଭଙ୍ଗୀରେ ଏକ ପଶୁ ଉପରେ ଦଣ୍ଡାୟମାନ ହୋଇଛନ୍ତି।

୪୦. ମସ୍ତକରେ କିରୀଟ ପରିଧାନ କରିଥିବା ଚର୍ତୁଭୁଜାଦେବୀ, ଉପର ଦୁଇହସ୍ତ ଉତ୍ତୋଳିତକରି ଉଦ୍ଦାମ ଭଙ୍ଗୀରେ ଏକ ବିଛା ଉପରେ ଉଭା ହୋଇଛନ୍ତି।

୪୧. ସୁବେଶା, ଦ୍ୱିଭୁଜାଦେବୀ ଏକ ବୃଷଭ ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି। ସେ ଶିବାନୀ ହୋଇପାରନ୍ତି।



ଯୋଗିନୀ ସଂଖ୍ୟା: ୩୩

୪୨. ସୁବେଶା, ଚର୍ତୁଭୁଜା ଦେବୀ ମୁଖ୍ୟ ଦୁଇହସ୍ତ ତଳକୁ ଇମ୍ପାଇ ଦୁଇ ଜାନୁ ଉପରେ ରଖିଥିବାବେଳେ ଉପର ଦକ୍ଷିଣ ହସ୍ତରେ ଏକ ଡ୍ମରୁ ଧାରଣ କରିଛନ୍ତି । ଦେବୀ ନକୁଳ ବାହନ ଉପର ଥିବା ଯୁଗଳ ଚକ୍ର ଉପରେ ଦୁଇ ପାଦରଖି ନୃତ୍ୟ ଭଙ୍ଗୀରେ ରହିଛନ୍ତି ।

୪୩. ସୁଦର୍ଶନା,ଦ୍ୱିଭୁଜା ଦେବୀ କୁକୁଟ ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି ।

୪୪. ଉଗ୍ରମୁଖା, ଦ୍ୱିଭୁଜା ଦେବୀଙ୍କ ମସ୍ତକରେ ଚକ୍ରାକାର କୁଞ୍ଚିତକେଶ ରହିଛି । ଦେବୀ ସାବଲୀଳ ଭଙ୍ଗୀରେ ଏକ ସିଂହ ଉପରେ ଉଭା ହୋଇଛନ୍ତି ।

୪୫. ସୁଦର୍ଶନା, ଚର୍ତୁଭୁଜା ଦେବୀ, ଏକ ଚକ୍ରାକାର ପଦ୍ମାସନ ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି ।

୪୬. ସୁଦର୍ଶନା, ଦ୍ୱିଭୁଜା ଦେବୀ, ଦକ୍ଷିଣହସ୍ତରେ ଏକ ତ୍ରିଶୂଳ ଧାରଣ କରିଥିବା ସୂଚନାମିଳେ । ସେ ମୁକୁଟ ପରିଧାନ କରିଥିବା ଏକ ଶୟନ ପୁରୁଷ ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି ।

୪୭. ମସ୍ତକରେ କିରୀଟମୁକୁଟ ପରିଧାନ କରିଥିବା ତ୍ରିନେତ୍ରା, ଚର୍ତୁଭୁଜା ଦେବୀ ଉପର ବାମହସ୍ତରେ ନାଗପାଶ ଧାରଣ କରିଥିବାବେଳେ ତଳ ହସ୍ତରେ ଅଭୟ ମୁଦ୍ରା ପ୍ରଦର୍ଶନ କରୁଛନ୍ତି । ଦେବୀ ପଦ୍ମପୁଷ୍କରିଣୀର ଏକ ପଦ୍ମ ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି ।

୪୮. ସୁଦର୍ଶନା, ଦ୍ୱିଭୁଜା ଦେବୀ ଦକ୍ଷିଣହସ୍ତରେ ଏକ ଖଡ୍ଗ ଧାରଣ କରିଥିବାବେଳେ ତାଙ୍କ ବାମହସ୍ତଟି ଏକ ବାଦ୍ୟ ସଦୃଶ୍ୟ ସୁଉଚ୍ଚ ଭାଣ୍ଡ ଉପରେ ରହିଛି । ଦେବୀ ବାଦ୍ୟ ବାଦନ କରୁଥିବା ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି ।

୪୯. ଦ୍ୱିଭୁଜା ଦେବୀଙ୍କ ମସ୍ତକ ଭାଗ ଭଗ୍ନ । ସେ ସାବଲୀଳ ଭଙ୍ଗୀରେ ଏକ ପକ୍ଷୀ କିମ୍ବା ଶଙ୍ଖ ଉପରେ ଉଭା ହୋଇଛନ୍ତି ।

୫୦. ତିନିମୁଖ ବିଶିଷ୍ଟା, ଚର୍ତୁଭୁଜା ଦେବୀ ସାବଲୀଳ ଭଙ୍ଗୀରେ ଉଭା ହୋଇଥିବା ପାଦାସନ ବା ବାହନ ଅଂଶଟି ଭଗ୍ନ । ତାଙ୍କର ବାମ ପାର୍ଶ୍ୱରେ ଏକ ବିଡ଼ାଳର ମୂର୍ତ୍ତି ଦେଖିବାକୁ ମିଳେ ।

୫୧. ମସ୍ତକରେ ରୁକ୍ଷ କେଶରାଶି ଥିବା ଉଗ୍ରମୁଖା, ଦ୍ୱିଭୁଜାଦେବୀ, ଅଷ୍ଟଖୁରାଯୁକ୍ତ ଏକ କାଷ୍ଠାସନ ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି ।

୫୨. ଦ୍ୱିଭୁଜା ଦେବୀ ଦକ୍ଷିଣହସ୍ତରେ ଦଣ୍ଡାୟମାନ ଖଡ୍ଗ ଧାରଣ କରି ଏକ ମେଷ ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି । ଦେବୀଙ୍କ ପୃଷ୍ଠଦରେ ଅଗ୍ନିଶିଖାର ଚିତ୍ର ରହିଥିବାରୁ ସେ ଅଗ୍ନେୟୀ ଅଟନ୍ତି ।

୫୩. ଦ୍ୱିଭୁଜା ଦେବୀ ଏକ ଶୁକପକ୍ଷୀ ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି ।

୫୪. ସୁବେଶା, ଦ୍ୱିଭୁଜା ଦେବୀ ଏକ ପଲଙ୍କ ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ।



ଯୋଗିନୀ ସଂଖ୍ୟା: ୪୨

୫୫. ଦ୍ୱିଭୁଜା ଗାମ୍ଭିର୍ଯ୍ୟ ମୂର୍ତ୍ତି, ସାବଲୀଳ ଭଙ୍ଗୀରେ ଏକ ବଣ୍ୟସୁକର ଉପରେ ଦଣ୍ଡାୟମାନ।

୫୬. ଚର୍ତୁଭୁଜା, ଅସ୍ଥିକଙ୍କାଳ ଶରୀରା, ଲୋଳିତ କୁଚଯୁଗଳା, ଦେବୀଙ୍କ ଗଳାରେ ମୁଣ୍ଡମାଳା, ଉପରେ ଦୁଇ ହସ୍ତରେ ମସ୍ତକ ଉପରେ ଏକ ସିଂହ ଚର୍ମ / ମୃତ ସିଂହ ଧାରଣ କରିଥିବାବେଳେ ତାଙ୍କ ତଳ ଦକ୍ଷିଣହସ୍ତରେ ଏକ କର୍ତ୍ତରୀ ଓ ବାମହସ୍ତରେ ଏକ ଛିନ୍ନମସ୍ତକ ଦେଖିବାକୁ ମିଳେ। ଦେବୀ ନୃତ୍ୟ ଭଙ୍ଗୀରେ ଏକ ଗଧ ( ? ) ଉପରେ ଉଭା ହୋଇଛନ୍ତି। ସେ ଚାମୁଣ୍ଡା ହୋଇପାରନ୍ତି।

୫୭. ସୁଦର୍ଶନା, ଦ୍ୱିଭୁଜା ଦେବୀ, ଏକ ମୃଗ ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି।

୫୮. ଚର୍ତୁଭୁଜା, ସୁବେଷା ଦେବୀ, ଗୋଟିଏ ହସ୍ତରେ ଏକ ପଦ୍ମଲତା ଓ ଅନ୍ୟ ହସ୍ତରେ ଏକ ନାଗପାଶ ଧାରଣ କରିଛନ୍ତି। ଦେବୀ ମକର ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ।

୫୯. ଉଗ୍ରମୁଖା, ଦ୍ୱିଭୁଜା ଦେବୀ ହସ୍ତରେ ଏକ କୁଲା ଧାରଣ କରି ସମପାଦ ଭଙ୍ଗୀରେ, ହଂସ ଉପରେ ଦଣ୍ଡାୟମାନ ହୋଇଛନ୍ତି। ଦେବୀଙ୍କୁ ଧୂମାବତୀ ଭାବେ ଚିହ୍ନିତ କରାଯାଏ।

୬୦. ସୁଦର୍ଶନା, ଦ୍ୱିଭୁଜା ଦେବୀଙ୍କ ପୃଷ୍ଠ ଭାଗରେ ଏକ ବୃକ୍ଷ ରହିଛି। ସେ ସାବଲୀଳ ଭଙ୍ଗୀରେ ଏକ ଗଧ ଉପରେ ଉଭା ହୋଇଛନ୍ତି।

ଉପରୋକ୍ତ ୬୦ ପ୍ରତିମା ଚକ୍ରକାର ପୀଠର ଭିତର ପାଖରେ ଗୋଟିକ ପରେ ଗୋଟିଏ କ୍ରମାନ୍ୱୟରେ ସ୍ଥାନିତ ହୋଇଥିବାବେଳେ, ବୋଧହୁଏ ନିର୍ମାଣ ବେଳେ ପୀଠର ସଠିକ ବ୍ୟାସ ନିଶ୍ଚୟ କରାଯାଇ ନପାରିବାରୁ ଅନ୍ୟ ୪ ଦେବୀଙ୍କ ପ୍ରତିମା ଏହା ସହିତ ଏକତ୍ର ସଂଯୋଗ ହୋଇପାରିନାହିଁ। ଏଣୁ, ଅନ୍ୟ ଉପାୟ ବିନା ପୀଠର ମଧ୍ୟଭାଗରେ ଥିବା ମଣ୍ଡପର ଉତ୍ତର ଓ ଦକ୍ଷିଣ ବାଡ଼ରେ ଏହି ଚାରିମୂର୍ତ୍ତି ସ୍ଥାନିତ ହୋଇଛି। ତେବେ, ଏହା ମଧ୍ୟରୁ ଗୋଟିଏ ମୂର୍ତ୍ତି ଅପହରଣ ହୋଇଯାଇଥିବାରୁ ଏଠାରେ ଅନ୍ୟ ତିନୋଟି ମୂର୍ତ୍ତିର ସୂଚନା ନିମ୍ନରେ ପ୍ରଦତ୍ତ ହେଲା।

୬୧. ମଣ୍ଡପର ପଶ୍ଚିମ ପାର୍ଶ୍ୱ ବାଡ଼ରେ ସ୍ଥାନିତ, ଉଗ୍ରମୁଖା, ଚର୍ତୁଭୁଜା ଦେବୀ ଏକ ଧାବମାନ ମୃଗ ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି।

୬୨. ଉତ୍ତର ପାର୍ଶ୍ୱ ବାଡ଼ର, ଚର୍ତୁଭୁଜା ଦେବୀ ଦକ୍ଷିଣ ସ୍କନ୍ଧରେ ତୂଣୀର ଓ ବାମ ହସ୍ତରେ ଧନୁ ଧାରଣକରି ସାବଲୀଳ ଭଙ୍ଗୀରେ ଏକ ଅଶ୍ୱ କିମ୍ୱା ଖଚର ଉପରେ ଦଣ୍ଡାୟମାନ ହୋଇଛନ୍ତି।

୬୩. ଉତ୍ତର ପାର୍ଶ୍ୱ ବାଡ଼ର ସୁଦର୍ଶନା ଦ୍ୱିଭୁଜା ଦେବୀ ଏକ କୃଷ୍ଣସାର ମୃଗ ଉପରେ ନୃତ୍ୟ ଭଙ୍ଗୀରେ ଉଭା ହୋଇଥିବାବେଳେ ତାଙ୍କ ନିକଟରେ ଏକ ପୁଷ୍ପଲତା ଦେଖିବାକୁ ମିଳେ।

ଏହି ଯୋଗିନୀ ପୀଠର ଭିତର ପାଖ ମଣ୍ଡପର ବାଡ଼ରେ ଶିବଙ୍କ ଚାରିଗୋଟି ଭୈରିବ ମୂର୍ତ୍ତି ସ୍ଥାନିତ ହୋଇଛି। ଏହା ମଧ୍ୟରୁ ପୂର୍ବ ପାଖ ବାଡ଼ର ଖୋପରେ ଅଜୈକପାଦ, ଚର୍ତୁଭୁଜା ଭୈରବ, ଅପସ୍ମାରପୁରୁଷ ଉପର ବିଶ୍ୱପଦ୍ମ ଉପରେ ଦଣ୍ଡାୟମାନ ହୋଇଛନ୍ତି। ଉତ୍ତରପାର୍ଶ୍ୱ ବାଡ଼ରେ ଦଶଭୁଜା ଭୈରବ, ଅପସ୍ମାରପୁରୁଷ ଉପର ବିଶ୍ୱପଦ୍ମ ଉପରେ ଲଳିତଭଙ୍ଗୀରେ ଆସନ ଗ୍ରହଣ କରିଛନ୍ତି। ଏହି ଊର୍ଦ୍ଧ୍ୱଲିଙ୍ଗ ପ୍ରତିମାର ମସ୍ତକରେ ଜଟାମୁକୁଟ ଓ ଶରୀରରେ ପାରମ୍ପରିକ ଅଳଙ୍କାର ଦେଖିବାକୁ ମିଳେ। ମୂର୍ତ୍ତିର ଅନ୍ୟ ହସ୍ତଗୁଡ଼ିକ ବହୁଭାବରେ ଭଗ୍ନ ହୋଇଥିବାବେଳେ ଗୋଟିଏ ଦକ୍ଷିଣହସ୍ତର ଡ଼ମ୍ବରୁଟି ମାତ୍ର ଦୃଶ୍ୟମାନ ହେଉଛି। ମୂର୍ତ୍ତିର ନିମ୍ନ ଭାଗରେ ନୃତ୍ୟରତା ଏକ ଡ଼ାକିନୀର ପିତୁଳା ସ୍ଥାନିତ

ହୋଇଛି । ଦକ୍ଷିଣପାର୍ଶ୍ୱ ବାଡ଼ର ଦକ୍ଷିଣ ଭାଗରେ ଥିବା ଭୈରବ ମୂର୍ତ୍ତିଟି ମଧ୍ୟ ଏହି ଅନୁରୂପ । ମୂର୍ତ୍ତିର ଭଗ୍ନ ହସ୍ତମାନଙ୍କ ମଧ୍ୟରୁ ଦକ୍ଷିଣହସ୍ତମାନଙ୍କରେ ଡ଼ମରୁ, ଢାଲେଇ ଓ ବାମହସ୍ତ ଦ୍ୱୟରେ ବଜ୍ରଖେଟକ ଏବଂ ଜପମାଳା ଥିବା ସୂଚନା ମିଳେ । ଏହି ପାର୍ଶ୍ୱରେ ଥିବା ଚତୁର୍ଥ ପ୍ରତିମାଟି 'ବୀଣାଧର ଶିବ' ଅଟନ୍ତି । ମୂର୍ତ୍ତିର ବୀଣା ଓ ହସ୍ତଗୁଡ଼ିକ ବହୁଭାବରେ ଭଗ୍ନ । ଏହି ଭୈରବ ମାନଙ୍କ ମସ୍ତକରେ କିରୀଟ ଓ ଶରୀରରେ ସୁନ୍ଦର ବସ୍ତ୍ରାଳଙ୍କାର ରହିଛି । ଏହା ବ୍ୟତୀତ କେତେକ ମୂର୍ତ୍ତିର ନିମ୍ନରେ ଅନୁଚର, ଅନୁଚରୀ ବିଭିନ୍ନ ଭଙ୍ଗୀରେ ଦେଖାଯାଉଥିବାବେଳେ ପ୍ରଚ୍ଛଦରେ ପ୍ରଭାମଣ୍ଡଳ, ଊର୍ଦ୍ଧ୍ୱକୋଣରେ ଉଡ୍ଡୀୟମାନ ଗନ୍ଧର୍ବ ଓ ଅପ୍‌ସରାଙ୍କ ପିତୁଳା ସ୍ଥାନିତ ହୋଇଛି । ଯୋଗିନୀମାନଙ୍କ ମୂର୍ତ୍ତିଭଳି ଏଗୁଡ଼ିକ ମଧ୍ୟ କଳା ମୁଗୁନିପଥରର ମସୃଣ କୃତି ଏବଂ ଏଗୁଡ଼ିକର ଉଚ୍ଚତା ମଧ୍ୟ ଯୋଗିନୀ ମୂର୍ତ୍ତି ଅନୁରୂପ ଅଟେ । ଅର୍ଥାତ୍, ଏହି ସମସ୍ତ କୃତି ସମକଳା ଶୈଳୀର । ତେବେ, ମୂର୍ତ୍ତିଗୁଡ଼ିକର ହସ୍ତ ଓ ଆୟୁଧ ବହୁ ଭାବରେ ଭଗ୍ନ ହୋଇଥିବାରୁ ଏଗୁଡ଼ିକର ସମ୍ପୂର୍ଣ୍ଣ ମୂର୍ତ୍ତିତତ୍ତ୍ୱ ଅଧ୍ୟୟନ ସମ୍ଭବ ହୁଏନାହିଁ ।

ହୀରାପୁର, ପୀଠ ସହିତ ଥିବା ଅନ୍ୟ ମୂର୍ତ୍ତିଗୁଡ଼ିକ କନ୍ଦାପଥରରେ ନିର୍ମିତ । ଏଗୁଡ଼ିକ ହେଉଛି ପ୍ରବେଶ ଦ୍ୱାରର ଦୁଇ ପାର୍ଶ୍ୱରେ ଥିବା ଦୁଇ ଦ୍ୱାରପାଳ, ପ୍ରବେଶ ପଥର ଦୁଇ ପାର୍ଶ୍ୱରେ ଥିବା ଦୁଇ ବାମଦେବ-ଶିବ ଓ ପୀଠ ପ୍ରାଚୀରର ବାହାର ପାଖରେ ଥିବା ନଅଗୋଟି ଦେବୀ ପ୍ରତିମା । ଏହି ଦେବୀ ପ୍ରତିମାଗୁଡ଼ିକୁ ଐତିହାସିକ ସ୍ୱର୍ଗତ କେଦାରନାଥ ମହାପାତ୍ର 'କାତ୍ୟାୟନୀ' ଭାବେ ଚିହ୍ନିତ କରିଛନ୍ତି । କିନ୍ତୁ, ଶାସ୍ତ୍ରୀୟ ମୂର୍ତ୍ତିତତ୍ତ୍ୱ ଅନୁସାରେ ଏହି ନଅଗୋଟି ମୂର୍ତ୍ତିର ସାମଞ୍ଜସ୍ୟ ଦେଖାଯାଏ ନାହିଁ ।

ପୌରାଣିକ ତଥ୍ୟ ଅନୁଯାଇ କାତ୍ୟାୟନ ଋଷି ଯେଉଁ ଦେବୀଙ୍କୁ ପୂଜାର୍ଚ୍ଚନା କରୁଥିଲେ ତାଙ୍କରି ନାମ 'କାତ୍ୟାୟନୀ' । ଏହି ପରିପ୍ରେକ୍ଷୀରେ ନବଦୁର୍ଗା ତଥା ନବକାତ୍ୟାୟନୀଙ୍କ ବର୍ଣ୍ଣନା ପୁରାଣ ଓ ତନ୍ତ୍ରଶାସ୍ତ୍ରମାନଙ୍କରେ ଦେଖିବାକୁମିଳେ । ତେବେ, ହୀରାପୁରର ଏହି ନଅମୂର୍ତ୍ତିରେ ତା'ର ପ୍ରତିଫଳନ ଦେଖାଯାଏନାହିଁ । ଏଣୁ ଏଗୁଡ଼ିକୁ କେବଳ ଚଣ୍ଡୀମୂର୍ତ୍ତି ଭାବେ ଗ୍ରହଣ କରାଯାଇପାରେ । ଏହି ମୂର୍ତ୍ତି ମଧ୍ୟରୁ ସାତମୂର୍ତ୍ତି ସୌମ୍ୟା ଅଟନ୍ତି । ପ୍ରବେଶ ଦ୍ୱାରର ଦୁଇ ଦ୍ୱାରପାଳ ନିକଟରେ ଉଭୟ ଦେବୀ ପ୍ରତିମା ଛିନ୍ନମସ୍ତକ ଉପରେ ନୃତ୍ୟ ଭଙ୍ଗୀରେ ଉଭା ହୋଇଛନ୍ତି । ଦକ୍ଷିଣ ପାର୍ଶ୍ୱର ଦେବୀ ଉତ୍ତୋଳିତ ଦକ୍ଷିଣହସ୍ତରେ ଏକ କଟାରୀ ଧାରଣ କରିଥିବାବେଳେ ତାଙ୍କ ବାମହସ୍ତଟି ଭଗ୍ନ । ମୂର୍ତ୍ତି ନିମ୍ନରେ ଥିବା ମସ୍ତକର ଦୁଇ ପାର୍ଶ୍ୱରେ ଦୁଇ ଗଣ ବାଦ୍ୟ ବାଦନ କରୁଥିବା ଦେଖିବାକୁମିଳେ । ବାମ ପାର୍ଶ୍ୱର ଉଗ୍ରମୁଖା, ରୁକ୍ଷକେଶା ଦେବୀଙ୍କ ଦକ୍ଷିଣହସ୍ତରେ ଉତ୍ତୋଳିତ କଟାରୀ ଓ ବାମ ହସ୍ତରେ ଶୂଳ ଏବଂ ରକ୍ତପାତ୍ର ରହିଛି । ଏହା ବ୍ୟତୀତ ସେ ବାମ ସ୍କନ୍ଧରେ ଏକ ଧନୁ ଧାରଣ କରିଥିବା ସୂଚନା ମିଳେ । ଏହାସହିତ ଦେବୀଙ୍କ ପାଦାସନର ଦୁଇ ପାର୍ଶ୍ୱରେ ଶ୍ୱାନ ଓ ଶୃଗାଳର ପିତୁଳା ରହିଛି । ଉଭୟ ମୂର୍ତ୍ତିର ଉଚ୍ଚତା ଯଥାକ୍ରମେ ୦.୭୫ ମିଟର ଓ ୦.୮୨ମିଟର ଅଟେ । ପୀଠରେ ପଶ୍ଚିମ, ଦକ୍ଷିଣ ଓ ଉତ୍ତର ପାର୍ଶ୍ୱରେ ଥିବା ସାତଦେବୀଙ୍କ ଉପସ୍ଥାପନ ଶୈଳୀ ପ୍ରାୟ ଏକ ପ୍ରକାର । ଏମାନେ ସମସ୍ତେ ଦ୍ୱିଭୁଜା, ସରଳ ମୁଖମଣ୍ଡଳ । ଦେବୀମାନଙ୍କ ମସ୍ତକରେ ସୁନ୍ଦର କବରୀ ଓ ଦେହରେ ସାଧାରଣ ବସ୍ତ୍ରାଳଙ୍କାର ଦେଖିବାକୁ ମିଳେ । ପ୍ରତ୍ୟେକ ମୂର୍ତ୍ତି ଏକ ଛିନ୍ନମସ୍ତକ ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଥିବା ବେଳେ ପ୍ରତ୍ୟେକଙ୍କ ଦକ୍ଷିଣହସ୍ତରେ ଏକ ଅସ୍ତ୍ର (ଖଡ୍ଗ, ଛୁରୀକା କିମ୍ବା କଟାରୀ) ଏବଂ ବାମ ହସ୍ତରେ ଖପୁରୀର ପାତ୍ର ଧାରଣ କରିଥିବା ସୂଚନାମିଳେ । ତେବେ, କେତେକ ମୂର୍ତ୍ତିର ହସ୍ତ ଓ ଆୟୁଧ ଭଗ୍ନ । ଏହା ବ୍ୟତୀତ ପ୍ରତ୍ୟେକ ମୂର୍ତ୍ତିର ମସ୍ତକ ଉପରେ ଛତ୍ର ଧାରଣ କରିଥିବା ଜଣେ ପରିଚାରିକାଙ୍କ ପିତୁଳା

ସ୍ଥାନିତ ହୋଇଛି। ଏହା ରାଜକୀୟତାର ସଙ୍କେତ ଅଟେ। ଏହି ସାତ ମୂର୍ତ୍ତି ମଧ୍ୟରୁ ଚରିମୂର୍ତ୍ତିର ଛିନ୍ନମସ୍ତକ ପାଦାସନ ନିକଟରେ ଶ୍ୱାନ ଓ ଶୃଗାଳ ରହିଥିବାବେଳେ ଗୋଟିଏ ମୂର୍ତ୍ତି ସହିତ ଜଣେ ଭକ୍ତ ଓ ଅନ୍ୟ ଗୋଟିକର ଦକ୍ଷିଣ ପାର୍ଶ୍ୱରେ ଗୋଟିଏ ବୃକ୍ଷର ଚିତ୍ର ଉତ୍‌କୀର୍ଣ୍ଣ ହୋଇଛି। ଏହି ଦେବୀ ମୂର୍ତ୍ତିଗୁଡ଼ିକର ଉଚ୍ଚତା ପ୍ରାୟ ୦.୮୦ ରୁ ୦.୯୦ ମିଟର ମଧ୍ୟରେ। ହୀରାପୁରର ଏହି ଚଣ୍ଡୀକା ଓ ଯୋଗିନୀ ମୂର୍ତ୍ତିଗୁଡ଼ିକର କଳାଶୈଳୀ ଭୁବନେଶ୍ୱରର ମୁକ୍ତେଶ୍ୱର ଓ ଗୌରୀମନ୍ଦିରର କନ୍ୟାମୂର୍ତ୍ତି ଗୁଡ଼ିକ ସହିତ ବହୁ ଭାବରେ ସମତା ରକ୍ଷାକରେ। ଏଣୁ ଏହା ସୋମବଂଶୀ କାଳୀନ କୀର୍ତ୍ତି ବୋଲି ପ୍ରମାଣିତ ହୁଏ।



# ନାଗମାତା ଆସ୍ତିକ-ଜରତ୍‌କାରୁ ଓ ମନଷା

ନାଗମାତା ମନଷା ଅନନ୍ତନାଗ ବା ବାସୁକିଙ୍କ ଭଗନୀ ଅଟନ୍ତି। ଦେବୀଙ୍କ ଅନ୍ୟ ଏକ ନାମ ଜରତ୍‌କାରୁ। ନାମାନ୍ତରରେ ଦେବୀଙ୍କ ମୂର୍ତ୍ତିତତ୍ତ୍ୱ ମଧ ଭିନ୍ନ। ପୌରାଣିକ ତଥ୍ୟ ଅନୁଯାୟୀ ଦେବୀ ଜରତ୍‌କାରୁ ପ୍ରତିଜ୍ଞା କଲେ ଯେ, ତାଙ୍କରି ନାମର କୌଣସି ବ୍ୟକ୍ତିଙ୍କୁ ହିଁ ସେ ବିବାହ କରିବେ। ଘଟଣା କ୍ରମେ ଋଷି ଜରତ୍‌କାରୁଙ୍କ ସହିତ ତାଙ୍କର ବିବାହ ହେଲା। ଏହି ଦମ୍ପତିଙ୍କ ପୁତ୍ର ହେଲେ ଆସ୍ତିକ। ଅନ୍ୟ ଏକ ପର୍ଯ୍ୟାୟରେ ତକ୍ଷକ ନାଗର ଦଂଶନରେ ରାଜା ପରିକ୍ଷିତଙ୍କ ମୃତ୍ୟୁ ହେଲା। ପିତୃ ହତ୍ୟାର ପ୍ରତିଶୋଧ ନେବାନିମନ୍ତେ ତାଙ୍କ ପୁତ୍ର ଜନ୍ମେଜୟ ଏକ ସର୍ପଯଜ୍ଞର ଆୟୋଜନ କଲେ। ଆହୁତି ଦେବା ମାତ୍ରେ ସର୍ପମାନେ ଯଜ୍ଞାଗ୍ନିରେ ପଡ଼ି ପ୍ରାଣତ୍ୟାଗ କଲେ। ସର୍ପକୁଳ ବିନାଶ ହେବାକୁ ଲାଗିଲା। ଏହି ଦୁର୍ଦ୍ଦିନରେ ନିଜ ମାତୁଳ ବଂଶ ରକ୍ଷା କରିବା ନିମନ୍ତେ ଆସ୍ତିକ ଜନ୍ମେଜୟଙ୍କୁ ପ୍ରବର୍ତ୍ତାଇଲେ। ଏଥିରେ ଜନ୍ମେଜୟ ସମ୍ମତହୋଇ ସର୍ପଯଜ୍ଞ ସମାପନ କଲେ। ଏହା ଦ୍ୱାରା ସର୍ପକୁଳ ରକ୍ଷା ପାଇଲା। ଏଥିରେ ସର୍ପମାନେ ପ୍ରୀତ ହୋଇ ଆସ୍ତିକଙ୍କୁ ବର ଦେଲେ ଯେ, 'ଯେଉଁ ବ୍ୟକ୍ତି 'ଆସ୍ତିକ' ନାମ ଉଚ୍ଚାରଣ କରିବ ତାହାକୁ ସର୍ପମାନେ ଦଂଶନ କରିବେ ନାହିଁ।'

ପୂର୍ବରୁ ଓଡ଼ିଶାରେ ବିଭିନ୍ନ ଭାବରେ ନାଗପୂଜା ପରମ୍ପରା ପ୍ରଚଳିତ ଥିଲେ ହେଁ ମହାଭାରତ ତଥା ବ୍ରହ୍ମବୈବର୍ତ୍ତ ପୁରାଣର ଆସ୍ତିକ-ଜରତ୍‌କାରୁଙ୍କୁ ଆଖ୍ୟାନ ଉପରେ ଆଧାରିତ ନାଗପୂଜା ପରମ୍ପରା ଖ୍ରୀ:୯ମ ଶତାବ୍ଦୀରୁ ସୃଷ୍ଟି ହୋଇଥିବା ଜଣାଯାଏ। ଏହି ପରିପ୍ରେକ୍ଷୀରେ 'ଆସ୍ତିକ-ଜରତ୍‌କାରୁ'ଙ୍କ ପ୍ରତିମା ବହୁ ଶିବମନ୍ଦିର ପରିସରରେ ଦେଖିବାକୁମିଳେ। ମୂର୍ତ୍ତିକଳାରେ ନାଗମାତା ଜରତ୍‌କାରୁ ସାଧାରଣତଃ ଏକ ବିଶ୍ୱପଦ୍ମ ଆସନ ଉପରେ, ଲଳିତ ଭଙ୍ଗୀରେ ବସି ପୁତ୍ର ଆସ୍ତିକଙ୍କୁ କୋଳରେ ବସାଇଥାଆନ୍ତି। ଦେବୀଙ୍କ ତଳକୁ ଝୁଲିଥିବା ପାଦଟି ମଧ ଅନ୍ୟ ଏକ ପଦ୍ମ ଉପରେ ରହିଥାଏ। ମୂର୍ତ୍ତିର ପୃଷ୍ଠଦରେ ବା ମସ୍ତକ ଉପରେ ଏକ ସୃଷ୍ଟିବୃକ୍ଷ ବା ସିଜୁଗଛର ଚିତ୍ର ଏବଂ ଆସନ ନିମ୍ନରେ ଜଣେ କିମ୍ବା ଦୁଇଜଣ ଭକ୍ତ ଏକ ସର୍ପ ନିକଟର ନମସ୍କାର ମୁଦ୍ରାରେ ଥିବା ଦେଖାଯାଏ। ମୂର୍ତ୍ତିରେ ପୁତ୍ର ଆସ୍ତିକଙ୍କୁ ବାଳକ ପରିବର୍ତ୍ତେ ଯୁବକ କିମ୍ବା ପ୍ରୌଢ଼ ରୂପରେ ଦେଖିବାକୁ ମିଳେ। ତାଙ୍କ ଶରୀରରେ ସାଧାରଣ ବସ୍ତ୍ରାଳଙ୍କରା ଓ କେତେକ ମୂର୍ତ୍ତିରେ ତାଙ୍କ ମୁଖର ଦାଢ଼ି ରହିଥାଏ। ଦେବୀ ଜରତ୍‌କାରୁ ସାଧାରଣ ବସ୍ତ୍ରାଳଙ୍କାର ପରିଧାନ କରିଥାଆନ୍ତି। ସମୟାନୁକ୍ରମେ ନାଗପୂଜା ଗୁରୁତ୍ୱ ହରାଇବାରୁ ଲୋକେ ଏହି ମୂର୍ତ୍ତିଗୁଡ଼ିକୁ 'ସତ୍ୟବାନ୍‌ସାବିତ୍ରୀ'ଙ୍କ ମୂର୍ତ୍ତିବୋଲି ମନେକଲେ।



ଆସ୍ତିକ-ଜରତ୍କାରୁ, ଭୁବନେଶ୍ୱର
ଓଡ଼ିଶା ରାଜ୍ୟ ସଂଗ୍ରହାଳୟ



ଆସ୍ତିକ-ଜରତ୍କାରୁ, ପିତାପଡ଼ା
ପ୍ରାଚୀନଦୀ ଅବବାହୀକା

ଆସ୍ତିକ ଜରତ୍କାରୁଙ୍କ ମୂର୍ତ୍ତି ନିମନ୍ତେ କୌଣସିଠାରେ ମନ୍ଦିର ଦେଖାଯାଏ ନାହିଁ । ସର୍ବତ୍ର ଏହି ପ୍ରତିମା ମୁକ୍ତାକାଶ ତଳେ ସ୍ଥାପିତ ହୋଇଥାଏ । ଏହି ପ୍ରକାର ଅଧିକାଂଶ ମୂର୍ତ୍ତି କନ୍ଦାପଥର ରେ ନିର୍ମିତ ହୋଇଥିବାବେଳେ ରାଜ୍ୟ ସଂଗ୍ରହାଳୟର ଏକ କୃତି କଳା ମୁଗୁନିପଥରରେ ନିର୍ମିତ ହୋଇଛି । ଦୁର୍ଭାଗ୍ୟ ବଶତଃ ଏହି ସୁନ୍ଦର କୃତିଟିରେ ଜରତ୍କାରୁଙ୍କ ମସ୍ତକଟି ଭଗ୍ନ । ଆସ୍ତିକ-ଜରତ୍କାରୁଙ୍କ ଏହି ପ୍ରକାର ମୂର୍ତ୍ତି ପୁରୀ ଓ କଟକ ଜିଲ୍ଲା ତଥା ପ୍ରାଚୀନଦୀ ଅବବାହିକାର ଅଧିକାଂଶ ମଧ୍ୟଯୁଗୀୟ ମନ୍ଦିର ପରିସରରେ ଦେଖିବାକୁ ମିଳେ । ଏହା ମଧ୍ୟରେ ଖେଜାର, ବେରବୋଇ, ଘୋରଡ଼ିଆ, ବଟେଶ୍ୱର, ପ୍ରାଚୀ ଅବବାହିକାର ସୋମେଶ୍ୱର, ଅଡ଼ସପୁର ଓ ପିତାପଡ଼ା ସମେତ ଦକ୍ଷିଣ ଓଡ଼ିଶାର ପାଇକପଡ଼ା, ନାଇକପଡ଼ା, ଉତ୍ତର ଓଡ଼ିଶାର ଅଯୋଧ୍ୟା ଓ ସେରଗଡ଼ରେ ଥିବା ମୂର୍ତ୍ତିଗୁଡ଼ିକ ଉଲ୍ଲେଖଯୋଗ୍ୟ । ଯାଜପୁରରେ ଥିବା ଦୁଇଟି କୃତି ମଧ୍ୟରୁ ଗୋଟିଏ ସାଧାରଣ ଶୈଳୀର ହୋଇଥିବାବେଳେ ଅନ୍ୟ ଗୋଟିଏ ରଚନାରେ ଆସ୍ତିକ ମାତାଙ୍କ କୋଳରେ ବସିବା ପରିବର୍ତ୍ତେ ଶୟନ କରିଛନ୍ତି । ପିତା ପଡ଼ାରେ ମଧ ଆସ୍ତିକଙ୍କୁ ଶୟନ ଭଙ୍ଗୀର ଦେଖିବାକୁମିଳେ । ଖୋର୍ଦ୍ଧା ନିକଟ ମାଣିତ୍ରିରେ ଥିବା ଆସ୍ତିକ ଜରତ୍କାରୁଙ୍କ ମୂର୍ତ୍ତି ତଳେ ନାଗ ସହିତ ଏକ ସିଂହମୂର୍ତ୍ତି ମଧ ରହିଛି । କେତେକ ପୁରାଣରେ ଜରତ୍କାରୁଙ୍କୁ ପାର୍ବତୀଙ୍କ ଅନ୍ୟରୂପ ବୋଲି ବର୍ଣ୍ଣିତ ହୋଇଥିବାରୁ ବୋଧହୁଏ ଏହିଠାରେ ସିଂହମୂର୍ତ୍ତି ସ୍ଥାନିତ ହୋଇଛି । ମଧ୍ୟଯୁଗ ପରେପରେ ଓଡ଼ିଶାର ନାଗପୂଜା ପରମ୍ପରାରେ ଆସ୍ତିକଜରତ୍କାରୁ ଗୁରୁତ୍ୱ ହରାଇଥିବା ଲକ୍ଷ୍ୟ କରାଯାଏ ।

## ନାଗମାତା ମନସା

ନାଗମାତା ମନସା ବାସୁକିଙ୍କ ଭଗିନୀ ଅଟନ୍ତି । କେତେକ ପୁରାଣରେ ତାଙ୍କୁ ଶିବଙ୍କ ଭଗିନୀ ଓ ଅନ୍ୟ କେତେକରେ ଶିବଙ୍କ ପତ୍ନୀ ବୋଲି ଉଲ୍ଲେଖ କରାଯାଇଛି । ଅନନ୍ତନାଗ ବିଷ୍ଣୁ ତଥା ବଳରାମଙ୍କ

ସହିତ ସମ୍ପର୍କିତ ହୋଇଥିବାରୁ ନାଗମାନେ ବୈଷ୍ଣବ ମତବାଦ ସହିତ ମଧ୍ୟ ଜଡ଼ିତ । ଏଣୁ ମନଷାଙ୍କ ପୂଜାକୁ ଉଭୟ ମତବାଦରେ ସମାନ ସ୍ଥାନ ଦିଆଯାଇଥାଏ । ତେବେ,ଦକ୍ଷିଣଭାରତରେ ଏହି ଦେବୀଙ୍କ ପୂଜା ଅତ୍ୟନ୍ତ ଲୋକପ୍ରିୟ । ଓଡ଼ିଶାର ମୂର୍ତ୍ତିକଳାରେ ଦ୍ୱିଭୁଜା ଦେବୀ ହସ୍ତରେ ଅମୃତକଳସ ଧାରଣ କରିଥିବାବେଳେ ତାଙ୍କ ମସ୍ତକ ଉପରେ ପ୍ରସାରିତ ସର୍ପର ପଞ୍ଚଫଣା କିମ୍ବା ସପ୍ତଫଣା ଦେଖିବାକୁମିଳେ । ମନସାଙ୍କ ଉଭୟ ଆସନ ଓ ସ୍ଥାନକ ଭଙ୍ଗୀର ମୂର୍ତ୍ତି ରହିଛି ।

ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ପ୍ରାଚୀନଦୀ ଅବବାହିକାର ଅମରେଶ୍ୱର, ପୁରୀ ଜିଲ୍ଲାର ଭିଲ୍ଲିଗ୍ରାମ, କଟକ ଜିଲ୍ଲାର ବଟେଶ୍ୱର, କୋଣାର୍କ ନିକଟ ବୟାଳିଶିବାଟୀ ଠାରେ ମନଷାଙ୍କ ପଦ୍ମାସନ ପ୍ରତିମା ଦେଖିବାକୁମିଳେ । ଏଠାରେ ଦେବୀ ବକ୍ଷଃ ନିକଟରେ, ଦୁଇ ହସ୍ତରେ ଅମୃତକଳସଟିକୁ ଧାରଣ କରିଛନ୍ତି । କେତେକ ସ୍ଥାନରେ ଦେବୀ ବାମହସ୍ତରେ ଅମୃତକଳସ ଧାରଣକରି ଦକ୍ଷିଣହସ୍ତରେ ଅଭୟ ମୁଦ୍ରା ପ୍ରଦର୍ଶନ କରିଥାଆନ୍ତି । ଏହିପ୍ରକାର ରଚ଼ନା ବଟେଶ୍ୱର ଓ ବାଲେଶ୍ୱର ଜିଲ୍ଲାର ସେରଗଡ଼ ଠାରେ ଦେଖିବାକୁମିଳେ । ଏହା ବ୍ୟତୀତ ବୟାଳିଶିବାଟୀର ଉପରୋକ୍ତ ମୂର୍ତ୍ତିର ଆସନ ତଳେ ସାତଗୋଟି ପୂର୍ଣ୍ଣକୁମ୍ଭ ବା ନିଧିଭାଣ୍ଡ ସ୍ଥାନିତ ହୋଇଛି । କାରଣ, ନାଗମାନେ ଧନସମ୍ପଦର ରକ୍ଷକ । ଭଦ୍ରକ ନିକଟ କାଉପୁରଠାରେ ମନଷା ଲଳିତାସନରେ ବସିଥିବାବେଳେ ଦେବୀଙ୍କ ଆସନ ନିମ୍ନରେ କେତେକ ପୂଜା ସାମଗ୍ରୀ ଓ ନମସ୍କାର ମୁଦ୍ରାରେ ପାଞ୍ଚଜଣ ଭକ୍ତଙ୍କ ପିତୁଳା ଉତ୍‌କୀର୍ଣ୍ଣ ହୋଇଛି । ଏହି କୃତିଟି କିଞ୍ଚିତ୍ ପରବର୍ତ୍ତୀ ସମୟର ଅଟେ ।



ନାଗମାତା ମନଷା
ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର



ମନଷା, ବାରାହୀ ମନ୍ଦିର
ଚଉରାଶୀ, ପ୍ରାଚୀନଦୀ ଅବବାହୀକା

ଏକ ଭିନ୍ନ ମୂର୍ତ୍ତିତତ୍ତ୍ୱର ନାଗମାତା ପ୍ରତିମା ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ରହିଛି । ଏଠାରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ଦ୍ୱିଭୁଜା ଦେବୀଙ୍କ ଦକ୍ଷିଣହସ୍ତରେ ଭୂମିସ୍ପର୍ଶ କରୁଥିବା ଏକ କୁଠାର ଏବଂ ବାମହସ୍ତରେ କଟିଉପରେ ଏକ ଶିଶୁ ଧାରଣ କରିଛନ୍ତି । ଦେବୀଙ୍କ ମସ୍ତକରେ ଉଚ୍ଚ କିରୀଟ ମୁକୁଟ, ଦେହରେ ସୁନ୍ଦର ବସ୍ତ୍ରାଳଙ୍କାର ରହିଥିବାବେଳେ ଅମୃତ କଳସଟି କଟିସୂତ୍ର ସହିତ ବନ୍ଧା ଯାଇଥିବା ଦେଖାଯାଏ । ମୂର୍ତ୍ତି ସହିତ ଦକ୍ଷିଣ ପାର୍ଶ୍ୱରେ କଳସ ଧାରଣ କରିଥିବା ଜଣେ ଗଣ ଓ ବାମ ପାର୍ଶ୍ୱରେ ନମସ୍କାର ମୁଦ୍ରାରେ ଜଣେ ଭକ୍ତଙ୍କ ପିତୁଳା ସ୍ଥାନିତ ହୋଇଛି । ଏହି ତିନିମୂର୍ତ୍ତି ବିଶ୍ୱପଦ୍ମ ଉପରେ ଦଣ୍ଡାୟମାନ ହୋଇଛନ୍ତି । ଏହା ଏକ ବିରଳ ରଚନା ।

ଓଡ଼ିଶାରେ କେତେକ ଭିନ୍ନ ପ୍ରକାର ନାଗମାତା ବା ନାଗୀମୂର୍ତ୍ତି ମଧ୍ୟ ଦେଖିବାକୁମିଳେ । ଭୁବନେଶ୍ୱର, ବୈତାଳଦେଉଳ ମଧ୍ୟରେ ଥିବା ଏକ ରଚନାରେ ମସ୍ତକ ଉପରେ ନାଗର ପ୍ରସାରିତ ସପ୍ତଫଣା ଥିବା ଦେବୀ ପଦ୍ମାସନରେ ବସିଛନ୍ତି । ତାଙ୍କର ଆସନ ତଳେ ପୁଷ୍ପମଣ୍ଡିତ ଏକ ପୂର୍ଣ୍ଣଘଟ ଓ କେତେକ ପୂଜା ସାମଗ୍ରୀ ସ୍ଥାନିତ ହୋଇଛି । ଏହା ଖ୍ରୀ:୯ମ ଶତାବ୍ଦୀର କୃତି ଅଟେ । ବ୍ରହ୍ମେଶ୍ୱର ମନ୍ଦିର, ଜଗମୋହନର ଗବାକ୍ଷ ଦଣ୍ଡଗୁଡ଼ିକରେ ବିଭିନ୍ନ ଭଙ୍ଗୀରେ ନାରୀପ୍ରତିମାମାନ ଉତ୍କୀର୍ଣ୍ଣ ହୋଇଛି । ଏହାର ଉତ୍ତରପାର୍ଶ୍ୱର ଗବାକ୍ଷର ଏକ ରଚନାରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଥିବା ଜଣେ ଚର୍ତୁଭୁଜା ଦେବୀଙ୍କ ଗୋଟିଏ ହସ୍ତରେ କଳସ ଓ ମସ୍ତକ ଉପରେ ନାଗର ପ୍ରସାରିତ ପଞ୍ଚଫଣା ଦେଖିବାକୁମିଳେ । ଏହା ବ୍ରହ୍ମେଶ୍ୱର ମନ୍ଦିର ସମସାମୟିକ ଅର୍ଥାତ୍ ଖ୍ରୀ: ୧୧ଶ ଶତାବ୍ଦୀର କୃତି ଅଟେ । ବହୁ ପ୍ରାଚୀନ କାଳରୁ ଓଡ଼ିଶାରେ ନାଗପୂଜା ପରମ୍ପରା ବିଭିନ୍ନ ଭାବରେ ପ୍ରଚଳିତ ଥିବା ସତ୍ତ୍ୱେ ମନଷାଙ୍କ ମୂର୍ତ୍ତିର ସଂଖ୍ୟା ସୀମିତ ।

## କେନ୍ଦୁଲିର ଦୁଇଟି ସ୍ୱତନ୍ତ୍ର ଚଣ୍ଡୀ ମୂର୍ତ୍ତି

ପ୍ରାଚୀନଦୀ କୂଳ କେନ୍ଦୁଲି ଗ୍ରାମ କବି ଜୟଦେବଙ୍କ ଜନ୍ମସ୍ଥାନ ଭାବେ ପରିଚିତ । ପୂର୍ବେ ଏହି ଗ୍ରାମ ଉପକଣ୍ଠରେ ଥିବା ଏକ ପୁରୁଣା ଭଗ୍ନ ଇଟାମନ୍ଦିର ମଧ୍ୟରେ ଗୋଟିଏ ଦେବୀମୂର୍ତ୍ତି ଓ ମନ୍ଦିର ନିକଟ ଏକ ବୃକ୍ଷମୂଳେ ଅନ୍ୟ ଏକ ଦେବୀମୂର୍ତ୍ତି ରହିଥିଲା । ଗ୍ରାମବାସୀମାନେ ଏହି ଦୁଇ ଦେବୀଙ୍କୁ ଯଥାକ୍ରମେ ଅମ୍ବା ଓ ଅମ୍ବାଳିକା ନାମରେ ଚିହ୍ନିତ କରିଥିଲେ । ପରବର୍ତ୍ତୀ ସମୟରେ ଓଡ଼ିଶା, ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ଏକ ନୂତନ ମନ୍ଦିର ନିର୍ମାଣକରି ତା'ର ଗର୍ଭଗୃହରେ ଅମ୍ବା ଓ ଜଗମୋହନ ମଧ୍ୟରେ ଅମ୍ବାଳିକା ମୂର୍ତ୍ତିଟି ସ୍ଥାପନ କରିଛନ୍ତି । କୌତୂହଳର ବିଷୟ ଏହି କି, ଏହି ଦେବୀମାନଙ୍କ ମୁଖମଣ୍ଡଳର ଗଠନ ଓ ମୂର୍ତ୍ତିତତ୍ତ୍ୱ ହିନ୍ଦୁଦେବୀ ପାର୍ବତୀ,ଅମ୍ବା,ଅମ୍ବାଳିକା କିମ୍ବା ତାଙ୍କ ନାମାନ୍ତର କୌଣସି ଦେବୀଙ୍କ ସହିତ ସମତା ରକ୍ଷା କରେନାହିଁ । ଏପରିକି, ଓଡ଼ିଶାରେ ଦେଖାଯାଉଥିବା ବିଭିନ୍ନ ବୌଦ୍ଧ ଓ ଜୈନ ଦେବୀଙ୍କଠାରୁ ମଧ୍ୟ ଏହି ଦୁଇ ମୂର୍ତ୍ତିର ମୂର୍ତ୍ତିତତ୍ତ୍ୱ ଭିନ୍ନ ।

ଏହି ଦୁଇ ରଚନାର କଳାଶୈଳୀରେ ପାର୍ଥକ୍ୟ ଥିଲେ ହେଁ ଅନ୍ୟ ବହୁ ବିଷୟରେ ସମତା ଦେଖାଯାଏ । ଉଭୟ ଦେବୀ ବିଶ୍ୱପଦ୍ମ ଉପରେ ପଦ୍ମାସନରେ ବସିଥିବାବେଳେ ସେମାନଙ୍କ ମସ୍ତକ ଉପରେ ନାଗର ପ୍ରସାରିତ ସପ୍ତଫଣା ରହିଛି । ଉଭୟ ଦେବୀ ଦ୍ୱିଭୁଜା (ଭଗ୍ନ) ଓ ପ୍ରତ୍ୟେକ ବାମହସ୍ତରେ ଗୋଟିଏ ଗୋଟିଏ ପ୍ରସ୍ଫୁଟିତପଦ୍ମ ଧାରଣ କରିଛନ୍ତି । ତେବେ, ମନ୍ଦିର ଗର୍ଭଗୃହ ମଧ୍ୟର ଦେବୀଙ୍କ ଦକ୍ଷିଣହସ୍ତରେ ପଞ୍ଚପଦ୍ମକଳିକା କିମ୍ବା ଆମ୍ରକଳିକା ରହିଥିବାବେଳେ ଜଗମୋହନରେ ଥିବା ଅମ୍ବାଳିକାଙ୍କ ହସ୍ତରେ ଅରଖ ଫୁଲର ଏକ



ଅମ୍ବା, କେନ୍ଦୁଲି



ଅମ୍ବାଳିକା, କେନ୍ଦୁଲି

ପେନ୍ଥା ( ? ) ଦେଖାଯାଏ। ମୁଖମଣ୍ଡଳର ଭିନ୍ନତା ମଧ୍ୟରେ ଅମ୍ବାଙ୍କ ମୁଖ ଧାଉଁଆ ବା ଲମ୍ବା ଓ ଅମ୍ବାଳିକାଙ୍କ ମୁଖ କ୍ଷୀଣ-ଗୋଲ। କ୍ଷୀଣକଟି, କମନୀୟ ତନୁ, ଉଭୟ ଦେବୀଙ୍କ ମସ୍ତକରେ ଅଳଙ୍କାର ଯୁକ୍ତ ଊର୍ଦ୍ଧ୍ୱଯୁଡ଼ା, ବକ୍ଷଃରେ ଯଜ୍ଞୋପବିତ ଓ ବସ୍ତ୍ରାଳଙ୍କାର ପରିଧାନ କରିଥିବା ଦେଖାଯାଏ। ଉଭୟ ମୂର୍ତ୍ତିର ଊର୍ଦ୍ଧ୍ୱ କୋଣରେ ପୁଷ୍ପମାଳା ଧାରଣ କରିଥିବା ଅପ୍‌ସରାଙ୍କ ପିତୁଳା ସ୍ଥାନିତ ହୋଇଛି। ତେବେ, ଅମ୍ବାଙ୍କ ପଦ୍ମାସନର ନିମ୍ନରେ କେତେକ ଭକ୍ତ, ନର୍ତ୍ତକୀ ଓ ବାଦୀକାଙ୍କ ପିତୁଳା ରହିଥିବାବେଳେ ଅମ୍ବାଳିକାଙ୍କ ମୂର୍ତ୍ତି ନିମ୍ନରେ ଭକ୍ତଜନ ଓ ସିଂହର ମୂର୍ତ୍ତି ଦେଖିବାକୁମିଳେ। କଳା ମୁଗୁନିପଥରରେ ନିର୍ମିତ ଏହି ମୂର୍ତ୍ତି ଦ୍ୱୟ ଖ୍ରୀ:୧୦ମ - ୧୧ମ ଶତାବ୍ଦୀରେ ନିର୍ମିତବୋଲି ଅନୁମାନ କରାଯାଏ। ଏହା ମଧ୍ୟରେ ଅମ୍ବା ମୂର୍ତ୍ତିର ମାପ ୪୨"/୨୦" ଓ ଅମ୍ବାଳିକା ମୂର୍ତ୍ତି ୪୩"/୨୩" ଅଟେ। ମନେହୁଏ କୃତି ଦ୍ୱୟ ସ୍ୱତନ୍ତ୍ରଭାବେ ପରିକଳ୍ପିତ 'ନାଗ ପରମ୍ପରା'ର କୌଣସି ଦେବୀଙ୍କ ମୂର୍ତ୍ତି ହୋଇପାରେ।

## ଗୌଣ ମୂର୍ତ୍ତି: ଲକ୍ଷ୍ମୀ, ସରସ୍ୱତୀ

ବିଷ୍ଣୁ ବା ନାରାୟଣଙ୍କ ପତ୍ନୀ ଲକ୍ଷ୍ମୀ ଭାରତୀୟ ଧର୍ମଧାରଣାରେ ଏକ ପ୍ରମୁଖ ସ୍ଥାନର ଅଧିକାରିଣୀ ହୋଇଥିଲେ ହେଁ ଓଡ଼ିଶାର ମନ୍ଦିର ଗାତ୍ରରେ ତାଙ୍କ ମୂର୍ତ୍ତି ଗୌଣ ହୋଇପଡ଼ିଛି କହିଲେ ଅତ୍ୟୁକ୍ତି ହେବ ନାହିଁ। ବୈଦିକ ଯୁଗର 'ଶ୍ରୀ' ପୌରାଣିକ ଯୁଗରେ ଧନସମ୍ପଦ ତଥା ସମୃଦ୍ଧିର ଦେବୀ 'ଲକ୍ଷ୍ମୀ' ଭାବେ ପରିକୀର୍ତ୍ତିତା। ଦେବୀ ପଦ୍ମାସନା ଓ ପଦ୍ମ ତାଙ୍କର ମୁଖ୍ୟ ଆୟୁଧ। ଏହା ବ୍ୟତୀତ ସେ ହସ୍ତୀନାଦ ପ୍ରିୟା ଓ ସର୍ବଦା ହସ୍ତି ଯୁଗଳ ଦ୍ୱାରା ଅଭିଷେକ ହେଉଥିବା ଦେଖାଯାଏ। ଏଣୁ ଅନ୍ୟ ଭାବରେ ସେ 'ଗଜଲକ୍ଷ୍ମୀ' ନାମରେ ପରିଚିତା। ଭାରତର କେତେକ ଅଞ୍ଚଳରେ ଭିନ୍ନ ଭିନ୍ନ ମୂର୍ତ୍ତିତତ୍ତ୍ୱର ଲକ୍ଷ୍ମୀ ପ୍ରତିମା ମିଳୁଥିବାବେଳେ ଓଡ଼ିଶାର ମୂର୍ତ୍ତିକଳାରେ ବଶେଷ ଭିନ୍ନତା ପରିଲକ୍ଷିତ ହେଉନଥିବାବେଳେ ସମୟାନୁକ୍ରମ କଳାଶୈଳୀରେ ହିଁ ପାର୍ଥକ୍ୟ ଦେଖାଯାଏ।

ବହୁ ପ୍ରାଚୀନ କାଳରୁ ଲକ୍ଷ୍ମୀ ଲୋକଦେବତୀ ବା ଲୋକମାତା ଭାବେ ଖ୍ୟାତ ହୋଇଥିବାରୁ ବ୍ରାହ୍ମଣ୍ୟ ଧର୍ମ ସମେତ ଜୈନ ଓ ବୌଦ୍ଧମାନେ ମଧ୍ୟ ଦେବୀଙ୍କୁ ପୂଜା କରନ୍ତି। ଏଣୁ ଓଡ଼ିଶାରେ ପ୍ରାଚୀନ ଲକ୍ଷ୍ମୀମୂର୍ତ୍ତି ଖ୍ରୀ:ପୂ: ୧ମ ଶତାବ୍ଦୀର ଖଣ୍ଡଗିରି ଓ ଉଦୟଗିରିର ଏକ ଗୁମ୍ଫା ତୋରଣରେ ଦେଖିବାକୁମିଳେ। ଏହାର ପରବର୍ତ୍ତୀ ସମୟରେ ନିର୍ମିତ ବହୁ ମନ୍ଦିର ପ୍ରବେଶଦ୍ୱାର ଉପରବନ୍ଧର ମଧ୍ୟ ସ୍ଥାନରେ ଗଜଲକ୍ଷ୍ମୀଙ୍କ ଛୋଟ ପିଢ଼ୁଳା ସ୍ଥାନିତ ହୋଇଥିବା ଦେଖାଯାଏ। ମନ୍ଦିର ଶିଳ୍ପରେ ଏହା 'ଲଲାଟବିମ୍ବ ମୂର୍ତ୍ତି' ଭାବେ ପରିଚିତ। ଏହି ରଚନାଗୁଡ଼ିକରେ ଲକ୍ଷ୍ମୀ ମୁଖ୍ୟତଃ ଦ୍ୱିଭୁଜା, ଦକ୍ଷିଣହସ୍ତରେ ପଦ୍ମ ଧାରଣକରି ବାମ ହସ୍ତରେ ବରଦମୁଦ୍ରା ପ୍ରଦର୍ଶନ କରିଥାଆନ୍ତି। କେତେକ ରଚନାରେ ସେ ପଦ୍ମ ଉପରେ ଯୋଗାସନରେ ଓ ଅନ୍ୟ କେତେକରେ ଲଳିତାସନରେ ବସିଥିବା ଦେଖାଯାଏ। ଏହା ସହିତ ଦୁଇ ପାର୍ଶ୍ୱରେ ଦୁଇ ହସ୍ତୀ କଳସ ଧାରଣ କରି ତାଙ୍କୁ ଅଭିଷେକ କରୁଥାଆନ୍ତି। ଅଧିକାଂଶ ସ୍ଥଳେ ହସ୍ତୀଯୁଗଳ ମଧ୍ୟ ପଦ୍ମ ଉପରେ ଉଭା ହୋଇଥାଆନ୍ତି।

ଭୁବନେଶ୍ୱରର ପ୍ରାଚୀନ ମନ୍ଦିର ଗୁଡ଼ିକରେ ଲକ୍ଷ୍ମୀଙ୍କ ପଦ୍ମ ଉପରେ, ପଦ୍ମାସନ ମୂର୍ତ୍ତିଗୁଡ଼ିକ ଲୋକପ୍ରିୟ ହୋଇଥିଲା। ଏହି ପ୍ରକାର ରଚନା ପରଶୁରାମେଶ୍ୱର, ଶିଶିରେଶ୍ୱର, ମୁକ୍ତେଶ୍ୱର ଓ ତାଳେଶ୍ୱର ମନ୍ଦିରର ପ୍ରବେଶ ଦ୍ୱାରରେ ଦେଖିବାକୁମିଳେ। ଭୁବନେଶ୍ୱର ବାହାର କୁଆଳୋର କନକେଶ୍ୱର ମନ୍ଦିର, ସିଂହନାଥର ବୈଦ୍ୟେଶ୍ୱର, ମୁଖଲିଙ୍ଗମ୍‌ର ସୋମେଶ୍ୱର ମନ୍ଦିର, ବାଲେଶ୍ୱର ଜିଲ୍ଲା ସେରଗଡ଼, ବେଣୁସାଗର, ଖିଚିଂ ଏବଂ କଳାହାଣ୍ଡି ଜିଲ୍ଲାର ବୁଢ଼ୀକୋମନାସ୍ଥିତ ପାତାଳେଶ୍ୱର ମନ୍ଦିର ଓ ବିଷ୍ଣୁପୁରର ସୋମନାଥ ମନ୍ଦିରରେ ରହିଛି। ତେବେ, ଏହିସବୁ ମୂର୍ତ୍ତି ଦ୍ୱିଭୁଜା ହୋଇଥିବାବେଳେ ବିଷ୍ଣୁପୁରର କୃତିଟି ଚର୍ତୁଭୁଜା ଅଟେ।

ଲକ୍ଷ୍ମୀଙ୍କ ପଦ୍ମାସନ ମୂର୍ତ୍ତି ମଧ୍ୟରେ ମୁକ୍ତେଶ୍ୱର ମନ୍ଦିର ପ୍ରବେଶଦ୍ୱାର ଉପର କୃତିଟିର ଉପସ୍ଥାପନା ଶୈଳୀ ଅନ୍ୟ ମୂର୍ତ୍ତିଠାରୁ ଭିନ୍ନ। ଏଥିରେ ଦେବୀ ବୃନ୍ତଯୁକ୍ତ ବିଶ୍ୱପଦ୍ମ ଉପରେ ତ୍ରିଭଙ୍ଗ ଠାଣିରେ, ପଦ୍ମାସନରେ ବସି ଦକ୍ଷିଣହସ୍ତରେ ବରଦମୁଦ୍ରା ପ୍ରଦର୍ଶନ କରୁଥିବାବେଳେ ବାମହସ୍ତରେ ଲମ୍ବ ବୃନ୍ତଯୁକ୍ତ ପଦ୍ମ ଧାରଣ କରିଛନ୍ତି। ଦୁଇ ହସ୍ତୀ ଦେବୀଙ୍କ ମସ୍ତକ ଉପରେ କଳସ ଧରି ଅଭିଷେକ କରୁଛନ୍ତି ଓ ମୂର୍ତ୍ତିର ନିମ୍ନ ଦୁଇ ପାର୍ଶ୍ୱରେ ଦୁଇ ପରିଚାରିକା ଚାମର ସେବାରେ ରତ ଅଛନ୍ତି। ଏହା ସହିତ କୃତିଟିରେ ଲତାଡ଼ାଳି ପୂର୍ଣ୍ଣ ପ୍ରଚ୍ଛଦ ଦେଖିବାକୁମିଳେ। ସୋମବଂଶୀକାଳୀନ କମନୀୟ ମୂର୍ତ୍ତିଟି ଖ୍ରୀ: ୧୦ମ ଶତାବ୍ଦୀର ଅଟେ।



ପରିଚାରିକାଙ୍କ ସହିତ ଗଜଲକ୍ଷ୍ମୀ, ମୁକ୍ତେଶ୍ୱର ମନ୍ଦିର, ଭୁବନେଶ୍ୱର



ଗଜଲକ୍ଷ୍ମୀ,
ଦ୍ୱାରଲଲାଟବିମ୍ବ ମୂର୍ତ୍ତି

ଲକ୍ଷ୍ମୀଙ୍କ ଲଳିତାସନ ମୂର୍ତ୍ତିଗୁଡ଼ିକ ମଧ୍ୟଯୁଗ ତଥା ତା'ର ପରବର୍ତ୍ତୀ କାଳରେ ଲୋକପ୍ରିୟ ହୋଇଥିଲା। ଏହି ପ୍ରକାର ରଚନା ଭୁବନେଶ୍ୱରର ମୁକ୍ତେଶ୍ୱର, ବ୍ରହ୍ମେଶ୍ୱର, ମେଘେଶ୍ୱର, ଯମେଶ୍ୱର ଓ ତୀର୍ଥେଶ୍ୱର ମନ୍ଦିରରେ ଦେଖିବାକୁମିଳେ। ଭୁବନେଶ୍ୱର ବାହାର କଳାରାହାଙ୍ଗର ଜଳେଶ୍ୱର ମନ୍ଦିର, ଗାରିଡ଼ିପାଞ୍ଚଣର ବୃଦ୍ଧନାଥ ମନ୍ଦିର, କାକୁଡ଼ିଆର ସୋମନାଥ ମନ୍ଦିର, ବୟାଳିଶିବାଟୀର ଗଙ୍ଗେଶ୍ୱରୀମନ୍ଦିର ଓ ଖିଚିଂର କିଚକେଶ୍ୱରୀ ମନ୍ଦିରର ପ୍ରବେଶଦ୍ୱାରରେ ଲକ୍ଷ୍ମୀଙ୍କ ଲଳିତାସନ ପ୍ରତିମା ରହିଛି। ବାଣପୁରର ଦକ୍ଷପ୍ରଜାପତି ମନ୍ଦିର ଗାତ୍ରର ଆବରଣଦେବତା ମଧ୍ୟରେ ମଧ ଏହି ପ୍ରକାର କୃତି ଦେଖିବାକୁମିଳେ।

ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ପରିସରରେ ଲକ୍ଷ୍ମୀଙ୍କ ସ୍ୱତନ୍ତ୍ର ମନ୍ଦିର ରହିଛି। ଏହାର ଅଧିଷ୍ଠାତ୍ରୀ ଦେବୀ ଗଜଲକ୍ଷ୍ମୀ ଚତୁର୍ଭୁଜା ଓ ପଦ୍ମ ଉପରେ ପଦ୍ମାସନରେ ଆସନ ଗ୍ରହଣ କରିଛନ୍ତି। ଦେବୀ ଉପର ଦୁଇ ହସ୍ତରେ ପଦ୍ମ ଧାରଣ କରିଥିବାବେଳେ ମୁଖ୍ୟ ଦୁଇ ହସ୍ତରେ ଅଭୟ ଓ ବରଦ ମୁଦ୍ରା ପ୍ରଦର୍ଶନ କରୁଥିବା ଦେଖାଯାଏ। ଏହି ପ୍ରକାର ରଚନା ମନ୍ଦିରର ପାର୍ଶ୍ୱ ଦେବତା ଓ ଆବରଣ ଦେବତାରେ ମଧ ଦେଖିବାକୁମିଳେ। ଏହା ବ୍ୟତୀତ ପଶ୍ଚିମଓଡ଼ିଶାର କେତେକ ସ୍ଥାନରେ ଲକ୍ଷ୍ମୀଙ୍କ ସ୍ୱତନ୍ତ୍ର ଅର୍ଚ୍ଚାବିଗ୍ରହ ରହିଛି।

## ସରସ୍ୱତୀ

ବ୍ରହ୍ମାଙ୍କ ଶକ୍ତି ସରସ୍ୱତୀଙ୍କୁ କେତେକ ପୁରାଣରେ ବ୍ରହ୍ମାଙ୍କ ପତ୍ନୀ ତଥା ବିଷ୍ଣୁଙ୍କ ପତ୍ନୀଭାବେ ବର୍ଣ୍ଣନା କରାଯାଇଛି। ସେ ଯାହାହେଉ, ଦେବୀ ଭାରତୀୟ ଧର୍ମ ଧାରଣାରେ ବିଦ୍ୟା ଓ ସଂସ୍କୃତିର ଅଧିଷ୍ଠାତ୍ରୀ ଦେବୀ ଅଟନ୍ତି। ବ୍ରାହ୍ମଣ୍ୟ ଧର୍ମ ବ୍ୟତୀତ ଜୈନମାନେ ମଧ ସରସ୍ୱତୀଙ୍କୁ ଏହି ଭାବରେ ଗ୍ରହଣ କରିଛନ୍ତି। ସରସ୍ୱତୀ ଶ୍ୱେତବର୍ଣ୍ଣା, ଶ୍ୱେତପଦ୍ମାସନା, ଶ୍ୱେତବସ୍ତ୍ରା ସହିତ ବୀଣା ତାଙ୍କର ମୁଖ୍ୟ ଆୟୁଧ। ଏହା ସହିତ କେତେକ ସ୍ଥଳେ ଦେବୀ ଜପମାଳା, କମଣ୍ଡଳୁ ଓ ପୁସ୍ତକ ମଧ ଧାରଣ କରିଥାଆନ୍ତି। ବ୍ରାହ୍ମଣ୍ୟ ଧର୍ମ ସରସ୍ୱତୀଙ୍କ ବାହନ ମୟୂର ହୋଇଥିବାବେଳେ ଜୈନଧର୍ମରେ ହଂସ ତାଙ୍କ ବାହନ ଅଟେ। ଲକ୍ଷ୍ମୀଙ୍କ ଭଳି ଓଡ଼ିଶାର ମନ୍ଦିର ଗାତ୍ରରେ ସରସ୍ୱତୀଙ୍କ ମୂର୍ତ୍ତି ମଧ ଯଥେଷ୍ଟ କମ୍।

ଭୁବନେଶ୍ୱର ବୈତାଳଦେଉଳ ସମ୍ମୁଖରେ ଥିବା ଏକ ଛୋଟ ନମୁନା ମନ୍ଦିରର ଚାରିପାଖରେ ଥିବା ମୂର୍ତ୍ତି ମଧ୍ୟରୁ ଗୋଟିଏ ପାର୍ଶ୍ୱରେ ବୀଣାଧାରିଣୀ ସରସ୍ୱତୀଙ୍କ ପିତୁଳା ଉତ୍‌କୀର୍ଣ୍ଣ ହୋଇଛି। ଏହା ଏକ ପ୍ରାଚୀନ କୃତି। ଅନ୍ୟ ଗୋଟିଏ ସରସ୍ୱତୀ ମୂର୍ତ୍ତି ମୁକ୍ତେଶ୍ୱର ମନ୍ଦିରର ପ୍ରାଚୀରରେ ଦେଖିବାକୁମିଳେ। ଏହି ଦେବୀ ଲଳିତାସନରେ ବସି ବୀଣାବାଦନ କରୁଥିବାବେଳେ ତାଙ୍କ ଆସନ ନିମ୍ନରେ ଏକ ପୂର୍ଣ୍ଣଘଟ ସ୍ଥାନିତ ହେଇଛି। ଏହା ବ୍ୟତୀତ ମୂର୍ତ୍ତିର ଦୁଇ ପାର୍ଶ୍ୱରେ ଦୁଇ ପରିଚାରିକା ପୁଷ୍ପ ଧାରଣକରି ଉଭା ହୋଇଛନ୍ତି। ଭୁବନେଶ୍ୱର ନିକଟ କଳାରାହାଙ୍ଗର ଜଳେଶ୍ୱର ମନ୍ଦିର ପ୍ରବେଶଦ୍ୱାର ତୋରଣ ଉପରେ ସରସ୍ୱତୀଙ୍କ ସହିତ ଗଣେଶଙ୍କ ମୂର୍ତ୍ତି ଦେଖିବାକୁ ମିଳେ। ମୁଖଲିଙ୍ଗମ୍‌ର ମଧୁକେଶ୍ୱର ମନ୍ଦିର ଓ ବାଣପୁରର ଦକ୍ଷ ପ୍ରଜାପତି ମନ୍ଦିରର ଆବରଣଦେବତା ମଧ୍ୟରେ ଦେବୀଙ୍କ ମୂର୍ତ୍ତି ରହିଛି। ଏଥିରେ ଦେବୀମାନେ ସାଧାରଣତଃ ବିଶ୍ୱପଦ୍ମାସନ ଉପରେ ବସିଥିବାବେଳେ ଓଡ଼ିଶାର କୌଣସି ମୂର୍ତ୍ତିରେ ତାଙ୍କ ବାହନ ମୟୂର ଦେଖିବାକୁ ମିଳେନାହିଁ।



# ଓଡ଼ିଶାରେ ବୈଷ୍ଣବ ମୂର୍ତ୍ତିକଳାର ପୃଷ୍ଠଭୂମି

ପ୍ରାଚୀନ ଓଡ଼ିଶା ଅର୍ଥାତ୍ କଳିଙ୍ଗର କେତେକ ଶାସକ ନିଜକୁ 'ପରମବୈଷ୍ଣବ' ବୋଲାଉଥିବା ସେମାନଙ୍କ ଦ୍ୱାରା ପ୍ରଦତ୍ତ ତାମ୍ରପତ୍ର ଲେଖମାନଙ୍କରୁ ଜଣାଯାଏ। ତେବେ, ସେସମୟର ଶିବମନ୍ଦିର ଭଳି କୌଣସି ପ୍ରାଚୀନ ବିଷ୍ଣୁମନ୍ଦିର ଦେଖିବାକୁ ମିଳେନାହିଁ। କିନ୍ତୁ, ଅଳ୍ପ କେତେକ ପ୍ରାଚୀନ ବିଷ୍ଣୁ ଓ ବଳରାମଙ୍କ ମୂର୍ତ୍ତି ଯାଜପୁର, ଭୁବନେଶ୍ୱର, ପ୍ରାଚୀନଦୀ ଅବବାହିକା ଓ କୋରାପୁଟ ଜିଲ୍ଲାର କେତେକ ସ୍ଥାନରୁ ପ୍ରାପ୍ତ ହୋଇଛି। ସୂଚନା ଯୋଗ୍ୟ ଯେ, କୋରାପୁଟ ଜିଲ୍ଲାର କେଶରୀବେଡ଼ା ଠାରେ ଥିବା ଏକ ପ୍ରାଚୀନ ବିଷ୍ଣୁ ପ୍ରତିମା ନଳ ରାଜବଂଶ ଶାସନ ସମୟରବୋଲି ଅନୁମାନ କରାଯାଏ। ଏହି ନଳମାନେ ଉତ୍ତରଭାରତର ଗୁପ୍ତ ରାଜବଂଶ ସମସାମୟିକ ଅର୍ଥାତ୍, ପ୍ରାୟ ଖ୍ରୀ: ୪ର୍ଥ-୫ମ ଶତାବ୍ଦୀର ଅଟନ୍ତି। ଭୁବନେଶ୍ୱରର ବିନ୍ଦୁସାଗର କୂଳର ଏକ ପ୍ରାଚୀରରେ ବଳରାମ ବା ଶଙ୍କର୍ଷଣଙ୍କ ଏକ ପ୍ରାଚୀନ ପ୍ରତୀମା ସ୍ଥାନିତ ହୋଇଥିଲା। ପୂର୍ବେ ପୂଜା ପାଉଥିବା ତ୍ରିମୂର୍ତ୍ତି ଶଙ୍କର୍ଷଣ, ବାସୁଦେବ ଓ ଏକନଂଶାଙ୍କ ମଧ୍ୟରୁ ଏହା ଅନ୍ୟତମ।ଏହାର ପରୁବର୍ତ୍ତୀ ପର୍ଯ୍ୟାୟରେ ପ୍ରାଚୀନଦୀ ଅବବାହିକାରେ କେତୋଟି ମାଧବ ମନ୍ଦିର, ଖ୍ରୀ: ୯ମ ଶତାବ୍ଦୀରେ ପଶ୍ଚିମ ଓଡ଼ିଶାର ରାଣୀପୁର-ଝରିଆଲ୍ ଠାରେ ଇନ୍ଦ୍ରଲାଥଙ୍କ ଇଟାମନ୍ଦିର ଓ ବୌଦ୍ଧ ନିକଟ ଗନ୍ଧରାଡ଼ି ଠାରେ ନୀଳମାଧବଙ୍କ ପଥର ମନ୍ଦିର ନିର୍ମିତ ହୋଇଥିବା ଜଣାଯାଏ। ଗନ୍ଧରାଡ଼ି ମନ୍ଦିରର ନୀଳମାଧବମୂର୍ତ୍ତି ଭଗ୍ନ ହେଲେହେଁ ଯଥା ସ୍ଥାନରେ ଉଭାହୋଇଛନ୍ତି। ଏହାର ସମସମୟରେ ଉପକୂଳ ଅଞ୍ଚଳର ପ୍ରାଚୀନଦୀ ଅବବାହିକାରେ କେତେକ ଛୋଟ ଇଟାମନ୍ଦିର ମଧ୍ୟରେ ସୁନ୍ଦର ସରଳ ବିଷ୍ଣୁପ୍ରତିମା ପ୍ରତିଷ୍ଠା ହୋଇଥିଲା। ଏହା ମଧ୍ୟରେ ଚଉରାଶି ଗ୍ରାମ ନିକଟ ନୀଳମାଧବ, ମୁଦ୍ଗଳଗ୍ରାମର ମୁଦ୍ଗଳ-ମାଧବ ଓ ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁଲିର କେତୋଟି ମାଧବ ଓ ଲକ୍ଷ୍ମୀନାରାୟଣ ମୂର୍ତ୍ତି ଉଲ୍ଲେଖଯୋଗ୍ୟ। ଯାଜପୁର, ଗଞ୍ଜାମ ଜିଲ୍ଲାର ବଡ଼ଗାଁ, ବାଣପୁର ନିକଟ ନୀଳାଦ୍ରିପ୍ରସାଦରେ ମଧ୍ୟ ପ୍ରାଚୀନ ଓ ସମସମୟର କେତେକ ବିଷ୍ଣୁମୂର୍ତ୍ତି ରହିଛି । ମହାନଦୀ କୂଳ କଣ୍ଟିଲୋର ନୀଳମାଧବଙ୍କ ମୂର୍ତ୍ତି ମଧ୍ୟଯୁଗ ପ୍ରାରମ୍ଭର କୃତିବୋଲି ମନେହେଉଥିବାବେଳେ ଏହାର ମନ୍ଦିରଟି ପରବର୍ତ୍ତୀ ସମୟର ଅଟେ।

ପରବର୍ତ୍ତୀ ପର୍ଯ୍ୟାୟ ଅର୍ଥାତ୍ ଖ୍ରୀ: ୧୦ମ ଓ ୧୨ଶ ଶତାବ୍ଦୀରେ ସୋମବଂଶୀ ଓ ଗଙ୍ଗବଂଶୀ ନରପତିଙ୍କ ପୃଷ୍ଠପୋଷକତାରେ ଓଡ଼ିଶାରେ ବୈଷ୍ଣବଧର୍ମ, ମନ୍ଦିର ଓ ମୂର୍ତ୍ତିକଳାର ବିଶେଷ ବିକାଶ ଘଟିଥିଲା। ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ପୂର୍ବେ ପୁରୁଷୋତ୍ତମକ୍ଷେତ୍ର ଭାବରେ ପରିଚିତ ଥିଲା। ଭୁବନେଶ୍ୱରର ଅନନ୍ତ-ବାସୁଦେବ ମନ୍ଦିର ତା'ର ପରବର୍ତ୍ତୀ ସମୟର ପ୍ରଖ୍ୟାତ ବୈଷ୍ଣବକୀର୍ତ୍ତି ଅଟେ। ଏହା ବ୍ୟତୀତ କଟକ ଜିଲ୍ଲା ଗଣେଶ୍ୱରପୁରର ଏକ ବିଷ୍ଣୁମନ୍ଦିର ଓ ପ୍ରାଚୀ ଅବବାହିକା, ମାଧବ ଗ୍ରାମର ମାଧବାନନ୍ଦ ମନ୍ଦିର ପୁରୀ ନିକଟ ବ୍ରହ୍ମଗିରିର ଅଲରାନାଥ ମନ୍ଦିର ଉଲ୍ଲେଖଯୋଗ୍ୟ । ପୁରୀ, ଭୁବନେଶ୍ୱର ଅଞ୍ଚଳ ବ୍ୟତୀତ ପ୍ରାଚୀନଦୀ ଅବବାହିକା ନିକଟରେ ବହୁ ସୁନ୍ଦର ବିଷ୍ଣୁ, ଗୋପୀନାଥ ଓ ଅନ୍ୟ ବୈଷ୍ଣବ ଦେବଦେବୀଙ୍କ ମୂର୍ତ୍ତି ଦେଖିବାକୁ ମିଳେ। ତେବେ,ଓଡ଼ିଶାରେ ବହୁ ସ୍ଥାନରେ ବିଷ୍ଣୁ 'ମାଧବ' ନାମରେ ପରିଚିତ। ପରବର୍ତ୍ତୀ ସମୟରେ ଓଡ଼ିଶାର ବିଭିନ୍ନ ସ୍ଥାନରେ ବହୁ ବୈଷ୍ଣବ ମନ୍ଦିର ନିର୍ମିତ ହୋଇଛି। ଏହା ମଧ୍ୟରେ ଗଞ୍ଜାମ ଜିଲ୍ଲା, ପୁରୁଷୋତ୍ତମପୁରର 'ସୁନ୍ଦରମାଧବ' ଓ ବାଲେଶ୍ୱର ଜିଲ୍ଲା ରେମୁଣାର କ୍ଷୀରଚୋରା-ଗୋପୀନାଥଙ୍କ ମୂର୍ତ୍ତି ଉଲ୍ଲେଖଯୋଗ୍ୟ। ଏହା ବ୍ୟତୀତ ଭୁବନେଶ୍ୱରର ଲିଙ୍ଗରାଜମନ୍ଦିର ପରିସର ଓ ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ପରିସରରେ ବିଷ୍ଣୁଙ୍କ ସୁନ୍ଦର ମୂର୍ତ୍ତିମାନ ରହିଛି।

ବୈଷ୍ଣବମନ୍ଦିରର ଗର୍ଭଗୃହରେ ବିଷ୍ଣୁଙ୍କ ଏକ ପ୍ରତିମା, ଅନ୍ୟ ରୂପର ତ୍ରିମୂର୍ତ୍ତି ଯଥା: ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ କିମ୍ବା ଅନନ୍ତ, ଏକନଂଶା ଏବଂ ବାସୁଦେବଙ୍କ ମୂର୍ତ୍ତି ସ୍ଥାନିତ ହୋଇଥିବାବେଳେ ମନ୍ଦିରର ପାର୍ଶ୍ୱଦେବତା ଭାବେ ବିଷ୍ଣୁଙ୍କ ତୃତୀୟ, ଚତୁର୍ଥ ଓ ପଞ୍ଚମ ଅବତାର ଯଥା: ବରାହ, ନୃସିଂହ ଓ ବାମନ ବା ତ୍ରିବିକ୍ରମଙ୍କ ମୂର୍ତ୍ତିକୁ ଗୁରୁତ୍ୱ ଦିଆଯାଇଥାଏ। ଆବରଣଦେବତା ମଧ୍ୟରେ ବିଷ୍ଣୁଙ୍କ ବିଭିନ୍ନ ରୂପ, ଦଶାବତାର, ରାମ କିମ୍ବା କୃଷ୍ଣଙ୍କ ଲୀଳାମୂର୍ତ୍ତିମାନ ଦେଖିବାକୁମିଳେ। ମଧ୍ୟଯୁଗର ଦ୍ୱିତୀୟାର୍ଦ୍ଧ ଓ ପରବର୍ତ୍ତୀ ସମୟରେ ବୈଷ୍ଣବ ଧର୍ମର ଲୋକପ୍ରିୟତା ଯୋଗୁଁ କେତେକ ଶୈବମନ୍ଦିରର ଆବରଣଦେବତା ମଧ୍ୟରେ ବୈଷ୍ଣବମୂର୍ତ୍ତିମାନ ସ୍ଥାନିତ ହୋଇଥିଲା। କେତେକ ମନ୍ଦିରରେ ବରାହ ଓ ନୃସିଂହଙ୍କୁ ପୀଠଦେବତା ଭାବେ ପୂଜା କରାଯାଏ। ଆନ୍ଧ୍ରପ୍ରଦେଶ, ସୀମାଚଳମ୍ ଓ ପୁରୀ ଶ୍ରୀଜଗନ୍ନାଥ ମନ୍ଦିର ପରିସରର ନୃସିଂହ ମନ୍ଦିର, ଯାଜପୁରର ବରାହନାଥ ମନ୍ଦିର, ଆଳିର ଲକ୍ଷ୍ମୀ-ବରାହ ମନ୍ଦିର ଓ ପ୍ରାଚୀ ଅବବାହିକା, ଅଡ଼ଶପୁରର ବରାହ ମନ୍ଦିର ଏହାର ଉଦାହରଣ। ଓଡ଼ିଶାରେ ଗଙ୍ଗବଂଶୀ ରାଜଙ୍କ ଦ୍ୱାରା ନିର୍ମିତ, ବର୍ତ୍ତମାନ ଆନ୍ଧ୍ରପ୍ରଦେଶରେ ଥିବା ଶ୍ରୀକୂର୍ମମ୍‌ରେ ବିଷ୍ଣୁଙ୍କ କୂର୍ମ ଅବତାର ପୂଜାପାଆନ୍ତି।ଏହା ବ୍ୟତୀତ ବିଷ୍ଣଙ୍କ ଅବତାର, ରାମଙ୍କୁ କେନ୍ଦ୍ରକରି ରାମାୟଣର କେତେକ ବିଷୟ ଏବଂ କୃଷ୍ଣଙ୍କୁ କେନ୍ଦ୍ରକରି ଭାଗବତ ଓ ମହାଭାରତର କେତେକ ଆଖ୍ୟାନ ମନ୍ଦିର ମୂର୍ତ୍ତିକଳାରେ ପ୍ରତିଫଳିତ ହୋଇଛି।

## ବିଷ୍ଣୁ

ବ୍ରାହ୍ମଣ୍ୟ ଧର୍ମର ତିନି ମୁଖ୍ୟ ଦେବତାଙ୍କ ମଧ୍ୟରେ ବିଷ୍ଣୁ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ। ସେ ପରମପୁରୁଷ,ଯଜ୍ଞପୁରୁଷ, ଅବତାରପୁରୁଷ ତଥା ପୁରୁଷୋତ୍ତମ ଭାବେ ଖ୍ୟାତ। ବିଷ୍ଣୁଙ୍କୁ କେନ୍ଦ୍ରକରି ଯେଉଁ ବିଶ୍ୱାସ ବା ମତବାଦ ସୃଷ୍ଟି ହୋଇଛି ତାହା 'ବୈଷ୍ଣବଧର୍ମ'ଭାବେ ପରିଚିତ। ବାସ୍ତବରେ ବିଷ୍ଣୁ ଜଳ ଓ ଆକାଶ ତତ୍ତ୍ୱର ଦେବତା। ଏହି ମର୍ମରେ 'ବିଷ୍ଣୁ'ଙ୍କ ନାମର ଆଖ୍ୟରିକ ଅର୍ଥ ହେଉଛି, ଯେ ବିଶ୍ୱକୁ ବ୍ୟାପି ରହିଛନ୍ତି କିମ୍ବା ଯେ, ଚରାଚର ଜଗତର ସମସ୍ତ ବସ୍ତୁ ବା ପ୍ରାଣୀମାନଙ୍କ ଠାରେ ନିହିତ ଅଛନ୍ତି। ବୈଦିକ ଓ ପୌରାଣିକ ମୂର୍ତ୍ତିତତ୍ତ୍ୱ ଅନୁଯାୟୀ ବିଷ୍ଣୁଙ୍କ ଶରୀର ମେଘ କିମ୍ବା ନୀଳବର୍ଣ୍ଣ। ସେ ଦ୍ୱିଭୁଜ କିମ୍ବା ଚର୍ତୁଭୁଜ। ତା'ଙ୍କ ମୁଖ୍ୟ ଆୟୁଧ ହେଉଛି; ଶଙ୍ଖ, ଚକ୍ର, ଗଦା ଓ ପଦ୍ମ। ତା'ଙ୍କ ପରିଧାନ ଶ୍ୱେତ କିମ୍ବା ପୀତବସ୍ତ୍ର। ସେ ଗଳାରେ କୌସ୍ତୁଭ ମଣିରହାର ପରିଧାନ କରିଥିବାବେଳେ ତାଙ୍କ ହୃଦୟରେ ଶ୍ରୀବତ୍ସ ସଙ୍କେତ ରହିଥାଏ। ସେ ସର୍ବଦା କ୍ଷୀରସାଗରର ଅନନ୍ତ ନାଗ ଉପରେ ଶୟନ କରିଥାଆନ୍ତି। ତାଙ୍କର ଦୁଇ ପତ୍ନୀ ଲକ୍ଷ୍ମୀ ଓ ସରସ୍ୱତୀ କିମ୍ବା ଅନ୍ୟ କେତେକ ସ୍ଥଳେ ଭୂଦେବୀ ଓ ଶ୍ରୀଦେବୀ। ବିଷ୍ଣୁଙ୍କ ବାହନ ପକ୍ଷୀରାଜ ଗରୁଡ଼ ଅଟନ୍ତି। ବିଷ୍ଣୁଙ୍କ ଅବତାରଗୁଡ଼ିକ ବ୍ୟତୀତ କେତେକ ପୁରାଣ ଓ ଧର୍ମ ଶାସ୍ତ୍ରରେ ତା'ଙ୍କ ଅନ୍ୟ କେତେକ ରୂପ ଓ ଆୟୁଧର ବର୍ଣ୍ଣନା ଦେଖିବାକୁମିଳେ। ଭାରତର ବିଭିନ୍ନ ପ୍ରାନ୍ତରେ ବିଷ୍ଣୁଙ୍କ ବହୁବିଧ ରପୂର ମୂର୍ତ୍ତି ମିଳୁଥିବାବେଳେ ଓଡ଼ିଶାରେ ଏହାର ବିବିଧତା ସ୍ୱଳ୍ପ। ମହାଭାରତର 'ବିଷ୍ଣୁସହସ୍ରନାମ' ରୁ ଚବିଶଗୋଟି ନାମକୁ ନେଇ 'ବୃହଦ ହାରୀତସ୍ମୃତି' ତାଙ୍କ ଚବିଶ ରୂପର ପରିକଳ୍ପନା କରିଥିବା ଦେଖାଯାଏ। ଏଥିରେ ବିଷ୍ଣୁଙ୍କ ଚର୍ତୁଭୁଜର ଆୟୁଧଗୁଡ଼ିକର ସ୍ଥାନ ପରିବର୍ତ୍ତନ ଘଟିଥାଏ। କିନ୍ତୁ, ଓଡ଼ିଶାର ବହୁ ବିଷ୍ଣୁମୂର୍ତ୍ତିର ନାମ ସହିତ ଏହାର ସମତା ଦେଖାଯାଏନାହିଁ। ବିଷ୍ଣୁଙ୍କ ଅବତାର ମୂର୍ତ୍ତି, ରାମଲୀଳା ଓ କୃଷ୍ଣଲୀଳା ଦୃଶ୍ୟ ବ୍ୟତୀତ କେବଳ ବିଷ୍ଣୁ ପ୍ରତିମାଗୁଡ଼ିକୁ ଚାରି ଶ୍ରେଣୀରେ ବିଭକ୍ତ କରାଯାଇପାରେ। ଯଥା:-ସ୍ଥାନକମୂର୍ତ୍ତି, ଆସନମୂର୍ତ୍ତି, ଶୟନମୂର୍ତ୍ତି ଓ ଯୁଗଳମୂର୍ତ୍ତି। ଓଡ଼ିଶାରେ ପ୍ରାପ୍ତ ହେଉଥିବା ଏହି ପ୍ରକାର କେତେକ କୃତିର ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା।

## ବିଷ୍ଣୁ: ସ୍ଥାନକମୂର୍ତ୍ତି

ଅଧିକାଂଶ ସ୍ଥଳେ ସ୍ଥାନକମୂର୍ତ୍ତିରେ ବିଷ୍ଣୁ ସମଭଙ୍ଗରେ ଦଣ୍ଡାୟମାନ ହୋଇଥାଆନ୍ତି। ଭାରତର ସର୍ବତ୍ର ପ୍ରାଚୀନ ମୂର୍ତ୍ତିଗୁଡ଼ିକ ଏହି ଭଙ୍ଗୀରେହିଁ ଦେଖିବାକୁମିଳେ। ପ୍ରଥମ ପର୍ଯ୍ୟାୟ ବା ପ୍ରାଚୀନ ମୂର୍ତ୍ତିଗୁଡ଼ିକ ସାଧାରଣତଃ ଦ୍ୱିଭୁଜ ହୋଇଥିବାସ୍ଥଳେ ପରବର୍ତ୍ତୀ ସମୟରେ ଚର୍ତୁଭୁଜ ପ୍ରତିମାଗୁଡ଼ିକ ଲୋକପ୍ରିୟ ହୋଇଥିବା ଜଣାଯାଏ। ଓଡ଼ିଶାରେ ଦ୍ୱିଭୁଜ ବିଷ୍ଣୁ ପ୍ରତିମା ବିରଳ ହେଲେହେଁ ଭୁବନେଶ୍ୱର ବିନ୍ଦୁସାଗର କୂଳ ଏକ ପ୍ରାଚୀରରେ ବୈଷ୍ଣବ ଦେବତା ସଙ୍କର୍ଷଣଙ୍କ ଏକ ଦ୍ୱିଭୁଜ ପ୍ରତିମା ସ୍ଥାନିତ ହୋଇଛି। କଳାଶୈଳୀ ଓ ମୂର୍ତ୍ତିର ବେଶପୋଷାକରୁ କୃତିଟିର ପ୍ରାଚୀନତା ସ୍ପଷ୍ଟ ହେଉଥିବାବେଳେ ଉତ୍ତରଭାରତର ବହୁ ସ୍ଥାନରେ ଖ୍ରୀ:ପୂ: ୨ୟ ଶତାବ୍ଦୀରୁ ସଙ୍କର୍ଷଣ,ବାସୁଦେବ ଓ ଏକାନଂଶାଙ୍କୁ ନେଇ ତ୍ରିମୂର୍ତ୍ତି ପୂଜାର ପରମ୍ପରା ଥିବା ପ୍ରମାଣ ମିଳେ। ଏହି ପରିପ୍ରେକ୍ଷୀରେ ମୂର୍ତ୍ତି ସହିତ ଥିବା ଅନ୍ୟ ଦୁଇଟି ପ୍ରତିମା ନଷ୍ଟ ହୋଇଯାଇଥିବା ସମ୍ଭବ। ଏଠାରେ ଶଙ୍କର୍ଷଣ ସମଭଙ୍ଗରେ ଦଣ୍ଡାୟମାନ ହୋଇ ଦକ୍ଷିଣ ହସ୍ତରେ ଲଙ୍ଗଳ ଓ ବାମହସ୍ତରେ ଗଦା ଧାରଣ କରିଥିବା ଦେଖାଯାଏ। ଏହା ବ୍ୟତୀତ ମୂର୍ତ୍ତିର ମସ୍ତକରେ ପତ୍ରଯୁକ୍ତ ଏକ ମୁକୁଟ ଓ ଦେହରେ ସରଳ ବସ୍ତ୍ରଭୂଷଣ ରହିଛି।

କୋରାପୁଟ ଜିଲ୍ଲା, କେଶରୀବେଢ଼ାର ପ୍ରାଚୀନ ବିଷ୍ଣୁ ପ୍ରତିମାଟି ମଧ୍ୟମ ଉଚ୍ଚତା ବିଶିଷ୍ଟ କଳାମୁଗୁନି ପଥରର ମୂର୍ତ୍ତି, ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ଏହି ଚର୍ତୁଭୁଜ ମୂର୍ତ୍ତିର ଉପର ଦକ୍ଷିଣହସ୍ତରେ ଚକ୍ର, ତଳହସ୍ତରେ ଢାଲେଲ ସହିତ ଗଦା ଏବଂ ବାମ ଉପର ହସ୍ତରେ ଶଂଖ ଓ ନିମ୍ନ ହସ୍ତଟି ପଦ୍ମ ସହିତ କଟି ଉପରେ ରହିଛି। ମୂର୍ତ୍ତିର ମସ୍ତକରେ ମଧ୍ୟଭାରତୀୟ ଶୈଳୀର ସୁଉଚ୍ଚ ଟୋପି, କର୍ଣ୍ଣରେ କୁଣ୍ଡଳ, ଗଳାରେ



ପ୍ରାଚୀନ ସଙ୍କର୍ଷଣ ମୂର୍ତ୍ତି,
ବିନ୍ଦୁସାଗର କୂଳ,ଭୁବନେଶ୍ୱର



ପ୍ରାଚୀନ ବିଷ୍ଣୁ ମୂର୍ତ୍ତି
କେଶରୀବେଢ଼ା, କୋରାପୁଟ ଜିଲ୍ଲା

ପୋହଳାର ମାଳା, ବାହୁରେ ବୁଟିର ବାଜୁବନ୍ଧ, ହସ୍ତରେ କଙ୍କଣ ଓ ଆଣ୍ଠୁଯାଏଁ ପରିଧାନ କରିଥିବା ଝିନ୍ନ ବସ୍ତ୍ର ଉପରେ ଚାରିଧାରର ରଜ୍ଜୁ ମେଖଳା ଦେଖିବାକୁମିଳେ। ମୂର୍ତ୍ତିର ନିରାଡ଼ମ୍ବର, ସରଳ ଉପସ୍ଥାପନା ଶୈଳୀରୁ ଏହାର ପ୍ରାଚୀନତା ସ୍ପଷ୍ଟହୁଏ।

ଅନ୍ଥ କେତେକ ପ୍ରାଚୀନ ଚର୍ତୁଭୁଜ ବିଷ୍ଣୁ ପ୍ରତିମା ମଧ୍ୟରେ ଯାଜପୁର ସିଦ୍ଧେଶ୍ୱର ମନ୍ଦିର ନିକଟରେ ଥିବା ଏକ ରଚନାରେ ବିଷ୍ଣୁଙ୍କ ମସ୍ତକରେ ଜଟାମୁକୁଟ, ଦେହରେ ସରଳ ବସ୍ତ୍ରାଳଙ୍କାର ରହିଥିବା ସହିତ ତାଙ୍କ ଚାରିହସ୍ତ ନିମ୍ନକୁ ରହିଛି। ହସ୍ତଗୁଡ଼ିକ ଅନେକାଂଶରେ ଭଗ୍ନ ହୋଇଥିବାରୁ ଆୟୁଧଗୁଡ଼ିକ ସ୍ପଷ୍ଟ ହୁଏନାହିଁ। ତେବେ, ମୂର୍ତ୍ତି ନିମ୍ନ ଭାଗର ଦକ୍ଷିଣ ପାର୍ଶ୍ୱରେ 'ଚକ୍ରପୁରୁଷ' ଓ ବାମରେ 'ଗଦାଦେବୀ'ଙ୍କ ପିତୁଳା ଦେଖିବାକୁମିଳେ। ଏହାର କିଞ୍ଚିତ୍ ପରବର୍ତ୍ତୀ ସମୟର ଅନେକ ରଚନାରେ ବିଷ୍ଣୁଙ୍କ ଉପର ଦୁଇ ହସ୍ତରେ ଯଥାକ୍ରମେ; ପଦ୍ମ ଓ ଶଙ୍ଖ ରହିଥିବାବେଳେ ମୁଖ୍ୟ ଦୁଇହସ୍ତ ମୂର୍ତ୍ତିର ନିମ୍ନରେ ଥିବା ଚକ୍ରପୁରୁଷ ଓ ଗଦାଦେବୀଙ୍କ ମସ୍ତକ ଉପରେ ରହିଛି। ଭୁବନେଶ୍ୱରର ସୁବର୍ଣ୍ଣଜଳେଶ୍ୱର ଓ ପରଶୁରାମେଶ୍ୱର ମନ୍ଦିରର ଆବରଣ ଦେବତା ମଧ୍ୟରେ ବିଷ୍ଣୁଙ୍କର କେତୋଟି ଭଗ୍ନ ସ୍ଥାନକମୂର୍ତ୍ତି ଦେଖିବାକୁମିଳେ। ଏହି ସମୟର ଅନ୍ୟ କେତୋଟି ପ୍ରାଚୀନ ବିଷ୍ଣୁ ପ୍ରତିମା ମହାନଦୀ କୂଳ ବୈଦ୍ୟେଶ୍ୱରର ସିଂହନାଥ ଓ ଗଞ୍ଜାମ ଜିଲ୍ଲା, ବଡ଼ଗାଁର ଶିବମନ୍ଦିର ପରିସରରେ ରହିଛି।

ପ୍ରାଚୀନଦୀ ଅବବାହିକାର ଦୁଇଟି ସମ୍ପୂର୍ଣ୍ଣ ଭିନ୍ନ ଶୈଳୀର ବିଷ୍ଣୁମୂର୍ତ୍ତି ସମ୍ପର୍କରେ ସୂଚନା ଦେବା ଅନିବାର୍ଯ୍ୟ ମନେହୁଏ। ଏଥିରୁ ଗୋଟିଏ କୃତି ମୁଦ୍‌ଗଲ ଗ୍ରାମରେ, ମୁଦ୍ଗଲ ଋଷିଙ୍କ ନାମରେ ଓ ଅନ୍ୟଟି ଭିଲ୍ଲିଦେଉଳି ଗ୍ରାମର ପୂର୍ଣ୍ଣେଶ୍ୱରମନ୍ଦିର ପରିସରରେ ଅନନ୍ତ-ବାସୁଦେବ ନାମରେ ପୂଜା ପାଉଛନ୍ତି। ମୁଦ୍ଗଲ ଗ୍ରାମର 'ମୁଦ୍‌ଗଳମାଧବ'ମୂର୍ତ୍ତି ଦ୍ୱିଭୁଜ ଅଟନ୍ତି। ସେ ସମଭଙ୍ଗରେ ଦଣ୍ଡାୟମାନ ହୋଇଥିବାବେଳେ ତା'ଙ୍କ ଦକ୍ଷିଣହସ୍ତରେ ଜପମାଳା ଓ ବାମହସ୍ତରେ କମଣ୍ଡଳୁ ରହିଛି। ସେ ମସ୍ତକରେ କିରୀଟମୁକୁଟ, କର୍ଣ୍ଣରେ ମକର କୁଣ୍ଡଳ, ଗଳାରେ କୌସ୍ତୁଭମଣିର ହାର, ବାହୁରେ ବାଜୁବନ୍ଧ, ହସ୍ତରେ କଙ୍କଣ, ସ୍କନ୍ଧରେ ଯଜ୍ଞୋପବୀତ ଓ ପରିଧାନ ବସ୍ତ୍ର ଉପରେ ଏକ କ୍ଷୀଣ କଟିସୂତ୍ର ପିନ୍ଧିଥିବା ଦେଖାଯାଏ। ସୌମ୍ୟ ସୁନ୍ଦର ମୂର୍ତ୍ତିଟିର ପ୍ରଚ୍ଛଦରେ ଏକ ସରଳ ପ୍ରଭାମଣ୍ଡଳ ଏବଂ ନିମ୍ନର ଦୁଇ ପାର୍ଶ୍ୱରେ ଚକ୍ରପୁରୁଷ ଓ ଗଦାଦେବୀଙ୍କ ମୂର୍ତ୍ତି ରହିଥିବାରୁ ଏହା ବିଷ୍ଣୁଙ୍କ ପ୍ରତିମାବୋଲି ପ୍ରତିୟମାନ ହୁଏ। କଳା ମୁଗୁନିପଥରରେ ନିର୍ମିତ କୃତିଟିର ଉଚ୍ଚତା ପ୍ରାୟ ଦେଢ଼ମିଟର। ଭିଲ୍ଲିଦେଉଳି ଗ୍ରାମର ଅନନ୍ତବାସୁଦେବ ସମଭଙ୍ଗରେ ଦଣ୍ଡାୟମାନ ହୋଇଥିବାବେଳେ ତା'ଙ୍କ ମସ୍ତକର ପ୍ରଚ୍ଛଦରେ ଅନନ୍ତନାଗର ପ୍ରସାରିତ ସପ୍ତଫଣା ଦେଖାଯାଏ। ଏହି ମୂର୍ତ୍ତି ମୁଖ୍ୟ ଦୁଇ ହସ୍ତରେ ଜପମାଳା ଓ ଶଙ୍ଖ ଧାରଣ କରିଥିବାବେଳେ ଅନ୍ୟ ଦୁଇ ହସ୍ତ ଯଥାକ୍ରମେ; ଦୁଇ ପର୍ଶ୍ୱରେ ଥିବା ଚକ୍ରପୁରୁଷ ଓ ଗଦାଦେବୀଙ୍କ ମସ୍ତକ ଉପରେ ରହିଛି। କୃତିଟିର ଉଚ୍ଚତାପ୍ରାୟ ୦.୬୫ ମିଟର। ଉଭୟ କୃତି ଆନୁମାନିକ ଖ୍ରୀ:୮ମ-୯ମ ଶତାବ୍ଦୀରେ ଜଣେ ଶିଳ୍ପୀଙ୍କ ଦ୍ୱାରା ନିର୍ମିତ ହୋଇଥିବା ମନେହୁଏ।

ସମସ୍ତ ପ୍ରାଚୀନ ସ୍ଥାନକ ବିଷ୍ଣୁ ପ୍ରତିମାର ଉପସ୍ଥାପନା ଶୈଳୀ ନିରାଡ଼ମ୍ବର ପ୍ରଚ୍ଛଦରେ ଏକ ସରଳ ପ୍ରଭାମଣ୍ଡଳ ରହିଥିବାବେଳେ ମଧ୍ୟଯୁଗ ଓ ପରବର୍ତ୍ତୀକାଳ ମୂର୍ତ୍ତିଗୁଡ଼ିକର କଳାଶୈଳୀ କ୍ରମଶଃ ଉନ୍ନତ। ଏଗୁଡ଼ିକରେ ତା'ଙ୍କ ମସ୍ତକରେ କିରୀଟମୁକୁଟ, ଦେହରେ ସମ୍ଭ୍ରାନ୍ତ ବସ୍ତ୍ରାଳଙ୍କାର, ଦୁଇ ପାର୍ଶ୍ୱରେ ଭୂଦେବୀ ଓ ଶ୍ରୀଦେବୀଙ୍କ ସମତେ ବିଷ୍ଣୁଙ୍କ ବାହନ, ଗରୁଡ଼ ଯୋଡ଼ହସ୍ତରେ ଉଭାହୋଇଥିବା ଦେଖାଯାଏ। ଏହା ବ୍ୟତୀତ ମୂର୍ତ୍ତିର ନିମ୍ନରେ ପଦ୍ମାସନ ଓ ପ୍ରଚ୍ଛଦରେ ମକରତୋରଣ ସହିତ ଗନ୍ଧର୍ବ, ଅପ୍ସରା, ପରିଚାରକ ଓ ପରିଚାରିକାଙ୍କ ପିତୁଳା ମଧ୍ୟ ସ୍ଥାନିତ ହୋଇଥାଏ। ଓଡ଼ିଶାରେ ବିଷ୍ଣୁଙ୍କ ହସ୍ତରେ ଆୟୁଧର



ଅନନ୍ତ ବିଷ୍ଣୁ, ଚିଲ୍ଲିଦେଉଳି



ବିଷ୍ଣୁ, ଗାରେଡ଼ିପଞ୍ଚଣ

ସ୍ଥାନ ପରିବର୍ତ୍ତନ ଘଟିଥିବା ଅଳ୍ପକେତେକ ପ୍ରକାର ମୂର୍ତ୍ତି ହିଁ ଦେଖିବାକୁମିଳେ। ଏହି ପ୍ରକାର କେତେକ ବିକଶିତ କଳାଶୈଳୀ ମୂର୍ତ୍ତିର ସୂଚନା ନିମ୍ନରେ ପ୍ରଦତ୍ତ ହେଲା।

ବିଷ୍ଣୁଙ୍କ ଉପର ଦକ୍ଷିଣ ହସ୍ତରେ ଚକ୍ର, ବାମହସ୍ତରେ ଶଙ୍ଖ, ତଳ ଦକ୍ଷିଣ ହସ୍ତରେ ପଦ୍ମ ଓ ବାମ ହସ୍ତରେ ଗଦା ରହିଥିବା ମୂର୍ତ୍ତିଗୁଡ଼ିକ ଶାସ୍ତାନୁଯାଇ ଜନାର୍ଦ୍ଦନ ଅଟନ୍ତି। ଏହି ପ୍ରକାର ମଧ୍ୟଯୁଗୀୟ ମୂର୍ତ୍ତି ବିଭିନ୍ନ ନାମରେ ପ୍ରାଚନଦୀ ଅବବାହିକାର ଚହଟା, ନିଆଳି, ଅମରେଶ୍ୱର, କେନ୍ଦୁଲି ସମେତ ବହୁ ସ୍ଥାନରେ ଓ ମୁଖଲିଙ୍ଗମ୍, ଗନ୍ଧରାଡ଼ି, ବାଲେଶ୍ୱର ଜିଲ୍ଲାର ଖେରଗଡ଼ରେ ଦେଖିବାକୁମିଳେ।

ଉପର ଦକ୍ଷିଣ ହସ୍ତରେ ଶଙ୍ଖ, ବାମହସ୍ତରେ ଚକ୍ର, ତଳ ଦକ୍ଷିଣ ହସ୍ତରେ ପଦ୍ମ ଓ ବାମ ହସ୍ତରେ ଗଦା ଧାରଣ କରିଥିବା ବିଷ୍ଣୁ 'କେଶବ' ଅଟନ୍ତି। ଏହି ପ୍ରକାର ପ୍ରତିମା ଦକ୍ଷିଣଓଡ଼ିଶାର ରାୟଗଡ଼ା ନିକଟ ପାଇକପଡ଼ା, ପ୍ରାଚୀନଦୀ 'ଅବବାହିକା ର କୃଷ୍ଣପ୍ରସାଦଗଡ଼, ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ପରିସର ଓ ଉତ୍ତରଓଡ଼ିଶାର ଖିଚିଂ ଠାରେ ରହିଛି।

ବିଷ୍ଣୁଙ୍କ ଉପର ଦକ୍ଷିଣହସ୍ତରେ ପଦ୍ମ, ବାମହସ୍ତରେ ଶଙ୍ଖ, ତଳ ଦକ୍ଷିଣହସ୍ତରେ ଚକ୍ର (ଚକ୍ରପୁରୁଷ ସହିତ) ଓ ତଳ ବାମହସ୍ତରେ ଗଦା (ଗଦାଦେବୀଙ୍କ ସହିତ) ରହିଥିଲେ ସେ 'ପୁରୁଷୋତ୍ତମ' ଭାବେ ପରିଚିତ ହୁଅନ୍ତି। ଏହି ପ୍ରକାର ଏକ ପ୍ରାଚୀନ ପ୍ରତିମା ଯାଜପୁରରେ ଦେଖିବାକୁମିଳେ।

ଉପର ଦକ୍ଷିଣହସ୍ତରେ ଗଦା, ବାମହସ୍ତରେ ଚକ୍ର, ତଳ ଦକ୍ଷିଣହସ୍ତରେ ପଦ୍ମ ଓ ବାମହସ୍ତରେ ଶଙ୍ଖ ଧାରଣ କରିଥିବା ବିଷ୍ଣୁ 'ତ୍ରିବିକ୍ରମ' ଅଟନ୍ତି। ବାଣପୁରର ଦକ୍ଷପ୍ରଜାପତି ଶିବମନ୍ଦିର ଗାତ୍ରରେ ଏହି ପ୍ରକାର ମୂର୍ତ୍ତି ଦେଖାଯାଏ।

'ନାରାୟଣ ବିଷ୍ଣୁ' ଉପର ଦକ୍ଷିଣହସ୍ତରେ ପଦ୍ମ, ବାମହସ୍ତରେ ଗଦା, ତଳ ଦକ୍ଷିଣହସ୍ତରେ ଶଙ୍ଖ ଓ ବାମହସ୍ତରେ ଚକ୍ର ଧାରଣ କରିଥାଆନ୍ତି। ଏହି ପ୍ରକାର ଏକ ପ୍ରତିମା ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ରହିଛି।

'ଶ୍ରୀଧର ବିଷ୍ଣୁ'ଙ୍କ ଉପର ଦକ୍ଷିଣହସ୍ତରେ ଚକ୍ର, ବାମହସ୍ତରେ ଗଦା ତଳ ଦକ୍ଷିଣହସ୍ତରେ ପଦ୍ମ ଓ ବାମହସ୍ତରେ ଶଙ୍ଖ ଦେଖାଯାଏ। ଏହି ପ୍ରକାର ଛୋଟ ପ୍ରତିମା ଯାଜପୁରର ଦଶାଶ୍ୱମେଧଘାଟର ଏକ ଛୋଟ ମନ୍ଦିରରେ ପୂଜାପାଉଛନ୍ତି।

ପୁରୀ ଶ୍ରୀଜଗନ୍ନାଥ ମନ୍ଦିର ଦେହରୁ ଚୂନ ଆସ୍ତରଣ ଛଡ଼ାଇ ଦିଆଯିବାପରେ ମନ୍ଦିର ବାଡ଼ର ପାଗମାନଙ୍କରେ ଥିବା ଅନେକ ବିଷ୍ଣୁପ୍ରତିମା ଲୋକଲୋଚନକୁ ଆସିଛି। ତେବେ, ଏଗୁଡ଼ିକର ହସ୍ତ ଓ ଆୟୁଧ ବହୁ ଭାବରେ ଭଗ୍ନ ହୋଇଥିବାରୁ ସଠିକ୍‌ଭାବେ ଚିହ୍ନଟ କରିବା ସହଜ ହୁଏନାହିଁ। ଓଡ଼ିଶାର କେତେକ ସ୍ଥାନରେ ଭିନ୍ନ ମୂର୍ତ୍ତିତତ୍ତ୍ୱର ବିଷ୍ଣୁମୂର୍ତ୍ତି ମଧ ଦେଖିବାକୁମିଳେ। ଏହା ମଧ୍ୟରେ ବଲାଙ୍ଗୀର ଜିଲ୍ଲା, ସଇଁତଲାର ଏକ ଭଗ୍ନ ବିଷ୍ଣୁ ମୂର୍ତ୍ତିର ଦୁଇପାର୍ଶ୍ୱରେ ଦଶାବତରା ପ୍ରତିମାମାନ ରହିଛି। ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ପରିସର ନୃସିଂହ ମନ୍ଦିର ପାର୍ଶ୍ୱଦେବତା ବିଷ୍ଣୁ ଉତ୍ତୋଳିତ ଦକ୍ଷିଣ ହସ୍ତରେ ଏକ ଖଡ୍ଗ ଏବଂ ବାମହସ୍ତରେ ସୂର୍ଯ୍ୟଙ୍କ ଭଳି ଏକ ଲମ୍ବ ବୃନ୍ତଯୁକ୍ତ ପଦ୍ମ ଧାରଣ କରିଛନ୍ତି। ମୂର୍ତ୍ତିର ଅନ୍ୟ ଦୁଇହସ୍ତ ଭଗ୍ନ ହୋଇଥିବାରୁ ଆୟୁଧଗୁଡ଼ିକର ସୂଚନା ମିଳୁନାହିଁ। ପ୍ରାଚୀନଦୀ ଅବବାହିକା, ନୂଆପାଟଣା ଗ୍ରାମର ଲକ୍ଷ୍ମୀନୃସିଂହ ମନ୍ଦିର ପାର୍ଶ୍ୱଦେବତା ବିଷ୍ଣୁ ତ୍ରିଭଙ୍ଗରେ ଦଣ୍ଡାୟମାନ ହୋଇଥିବା ଅଷ୍ଟଭୁଜ ମୂର୍ତ୍ତି ଅଟନ୍ତି। ସେ ମୁଖ୍ୟ ଦୁଇହସ୍ତରେ ଖଡ୍ଗ ଓ ଗଦା ଧାରଣ କରିଥିବାବେଳେ ଅନ୍ୟ ଦକ୍ଷିଣହସ୍ତ ଗୁଡ଼ିକରେ ମୂଷଳ, ମୁଦ୍ଗର ଓ ଚକ୍ର ଏବଂ ବାମହସ୍ତ ଗୁଡ଼ିକରେ ପାଶ, ଧନୁ ଓ ଶଙ୍ଖ ଧାରଣ କରିଛନ୍ତି। ଏହା ଏକ ବିରଳ ପ୍ରତିମା।

## ବିଷ୍ଣୁ: ଆସନମୂର୍ତ୍ତି

ଆସନମୂର୍ତ୍ତି ବା ବସିଥିବା ଭଙ୍ଗୀର ଅଳ୍ପକେତେକ ବିଷ୍ଣୁ ପ୍ରତିମା ଉତ୍ତରଭାରତରେ ଗୁପ୍ତଯୁଗ ଓ ତା'ର କିଞ୍ଚିତ୍ ପରବର୍ତ୍ତୀ ସମୟରେ ନିର୍ମିତ ହୋଇଥିବା ଜଣାଯାଏ। ଯୋଗାସନ ବା ପଦ୍ମାସନରେ ବସି ଯୋଗମୁଦ୍ରା ପ୍ରଦର୍ଶନ କରୁଥିବା ବିଷ୍ଣୁ ପ୍ରତିମାଗୁଡ଼ିକ 'ଯୋଗନାରାୟଣ' ଭାବେ ପରିଚିତ ହୁଅନ୍ତି। ଓଡ଼ିଶାରେ କ୍ୱଚିତ୍ ଦେଖାଯାଉଥିବା ଏହି ପ୍ରକାର ପ୍ରତିମା ଭୁବନେଶ୍ୱରର ସୁବର୍ଣ୍ଣଜଳେଶ୍ୱର ଓ ପରଶୁରାମେଶ୍ୱର ମନ୍ଦିରର ଆବରଣଦେବତା ମଧ୍ୟରେ ଦେଖାଯାଆନ୍ତି। ତେବେ, ଏହି କୃତିଗୁଡ଼ିକ ଉତ୍ତରଭାରତୀୟ ଉପସ୍ଥାପନା ଶୈଳୀଠାରୁ କେତେକାଂଶରେ ଭିନ୍ନ। ପର୍ଶୁରାମେଶ୍ୱର ମନ୍ଦିର, ସମ୍ମୁଖ ଗଣ୍ଡିର ବ୍ରଜମସ୍ତକରେ ଥିବା ଆସନମୂର୍ତ୍ତି-ବିଷ୍ଣୁ ତା'ଙ୍କ ଉପର ଦକ୍ଷିଣହସ୍ତରେ ଚକ୍ର, ବାମହସ୍ତରେ



ବିଷ୍ଣୁ (ଆସନମୂର୍ତ୍ତି), ପରଶୁରାମେଶ୍ୱର ମନ୍ଦିର, ଭୁବନେଶ୍ୱର

ଗଦା, ତଳ ଦକ୍ଷିଣହସ୍ତରେ ପଦ୍ମସହ ବରଦମୁଦ୍ରା ପ୍ରଦର୍ଶନ କରୁଥିବାବେଳେ ବାମହସ୍ତରେ ଏକ କମଣ୍ଡଳୁ ଧାରଣ କରିଛନ୍ତି। ଆନ୍ଧ୍ରପ୍ରଦେଶ, ମୁଖଲିଙ୍ଗମ୍‌ର ମଧୁକେଶ୍ୱର ମନ୍ଦିର ଗାତ୍ରରେ ବିଷ୍ଣୁଙ୍କ ଏକ ଗରୁଡ଼ାସନ ମୂର୍ତ୍ତି ଦେଖାଯାଉଥିବାବେଳେ ଓଡ଼ିଶାରେ ଏହିପ୍ରକାର ମୂର୍ତ୍ତି ବିରଳ।

## ବିଷ୍ଣୁ: ଶୟନମୂର୍ତ୍ତି

ପୌରାଣିକ ତଥ୍ୟ ଅନୁଯାଇ, 'ଅନନ୍ତଶୟନ' ବିଷ୍ଣୁଙ୍କ ଏକ ଆଦ୍ୟରୂପ। ଉତ୍ତର,ମଧ୍ୟ ଓ ପଶ୍ଚିମଭାରତର ବହୁ ସ୍ଥାନରେ ବିଷ୍ଣୁଙ୍କ ପ୍ରାଚୀନ ଓ ମଧ୍ୟଯୁଗୀୟ ବିଭିନ୍ନ ଶୈଳୀର ଅନନ୍ତଶୟନମୂର୍ତ୍ତି ରହିଥିବାବେଳେ ଓଡ଼ିଶାରେ ଏହାର ସଂଖ୍ୟା ଯଥେଷ୍ଟ କମ୍। ତେବେ, ଏହା ମଧ୍ୟରେ ପୁରୀର ଶ୍ରୀଜଗନ୍ନାଥମନ୍ଦିର ପରିସରର ଦୁଇଟି ଅନନ୍ତଶୟନମୂର୍ତ୍ତି ସର୍ବପ୍ରାଚୀନ ମନେହୁଏ। ଏଥି ମଧ୍ୟରୁ ପ୍ରଥମ କୃତିଟି ଦକ୍ଷିଣପାର୍ଶ୍ୱ କଳ୍ପବଟ ଓ ମଙ୍ଗଳାବଟ ନିକଟ ଏକ ଛୋଟ ଦେଉଳ ମଧ୍ୟରେ ଓ ଅନ୍ୟଟି ଗରାବଡୁ ନିଯୋଗ ସମ୍ମୁଖ, ଗଣେଶ ମନ୍ଦିରର ପ୍ରବେଶଦ୍ୱାର ବାହାର ପାଖରେ ସ୍ଥାନିତ ହୋଇଛି। ଫିକାଲାଲ କନ୍ଦାପଥରରେ ନିର୍ମିତ ଉଭୟ ମୂର୍ତ୍ତିର କଳାଶୈଳୀ ଅପରିପକ୍ୱ, ଯାହାକି ଖ୍ରୀ: ୫ମ-୬ଷ୍ଠ ଶତାବ୍ଦୀର ହୋଇଥିବା ସମ୍ଭବ। ଏହା ବ୍ୟତୀତ ଉଭୟ କୃତିର ଅବକ୍ଷୟରୁ ମନେହୁଏ ପୂର୍ବେ ଏହା ମୁକ୍ତାକାଶ ତଳେ ପୂଜା ପାଉଥିଲେ। କିଞ୍ଚିତ୍ ପରବର୍ତ୍ତୀ ସମୟର ଅନ୍ୟ ଏକ 'ଅନନ୍ତଶୟନମୂର୍ତ୍ତି' ରୋହିଣୀକୁଣ୍ଡରେ ଦେଖିବାକୁମିଳେ। ଏଥିରୁ ବୈଷ୍ଣବ କ୍ଷେତ୍ରଭାବରେ ପୁରୀର ପ୍ରାଚୀନତା ଅନୁମେୟ।

ପଶ୍ଚିମଓଡ଼ିଶାର ସୋନପୁର ନିକଟ ବୈଦ୍ୟନାଥର କୋଶଳେଶ୍ୱର ମନ୍ଦିର ଓ ଚରଦାର କପିଳେଶ୍ୱର ମନ୍ଦିର ଗାତ୍ରରେ ଅନନ୍ତଶୟନ ମୂର୍ତ୍ତି ରହିଥିବାବେଳେ ଉପକୂଳ ଅଞ୍ଚଳର ମାହାଙ୍ଗା ନିକଟ ତଅଁରା ଗ୍ରାମର ତୀର୍ଥମଠ ଓ ପ୍ରାଚୀନଦୀ ଅବବାହିକାର କାକଟପୁର ନିକଟ ସୋମେଶ୍ୱର ମନ୍ଦିର ପରିସରରେ ମଧ ଏହି ପ୍ରକାର କୃତି ରହିଛି। ବାଲେଶ୍ୱରଜିଲ୍ଲା ପାଳିଆର ବିରଞ୍ଚିନାରାୟଣ ମନ୍ଦିରରେ ଥିବା ପରବର୍ତ୍ତୀ ସମୟର ଅନନ୍ତଶୟନ ମୂର୍ତ୍ତିଟି ଯଥେଷ୍ଟ ସ୍ପଷ୍ଟ ଓ ନିଖୁଣ। ଏଠାରେ ଅନନ୍ତ ନାଗର ବଳୟ ଉପରେ ବାମକଡ଼ ମାଡ଼ି ବିଷ୍ଣୁ ଶୟନ କରିଛନ୍ତି। ଏବଂ ତାଙ୍କ ନାଭିରୁ ଜାତ କମଳ ଉପରେ ଚର୍ତୁମୁଖ ବ୍ରହ୍ମା ଯୋଗାସନରେ ବସିଛନ୍ତି। ଏହା ବ୍ୟତୀତ ବିଷ୍ଣୁଙ୍କ ପୃଷ୍ଠଭାଗରେ ଦୁଇନାଗ କନ୍ୟା ଯୋଡ଼ହସ୍ତରେ ରହିଥିବାବେଳେ ଏଠାରେ ଲକ୍ଷ୍ମୀଙ୍କ ଉପସ୍ଥିତି ଦେଖାଯାଏନାହିଁ। ମୂର୍ତ୍ତିର ଊର୍ଦ୍ଧ୍ୱରେ ଦୁଇ ଗନ୍ଧର୍ବ ଓ ନିମ୍ନରେ ଦୁଇ ଯକ୍ଷ ଉଡ୍ଡୀୟମାନ ଭଙ୍ଗୀରେ ରହିବାସହ ମଧ୍ୟଭାଗରେ ଗରୁଡ଼ ନମସ୍କାର ମୁଦ୍ରାରେ ଉଭା ହୋଇଥିବା ଦେଖାଯାଏ।


ଅନନ୍ତଶୟନ ବିଷ୍ଣୁ, ପାଳିଆ

## ଭୀମକାଣ୍ଡ ଓ ସରାଙ୍ଗର ବିଶାଳ ଶୟନମୂର୍ତ୍ତି: ବିଷ୍ଣୁ

ଅନୁଗୁଳ ଜିଲ୍ଲାର ଭୀମକାଣ୍ଡ ଓ ସରାଙ୍ଗଠାରେ ଯଥାକ୍ରମେ ଭୂମି ଉପରେ ଓ ନଦୀଗର୍ଭରେ ଥିବା ପ୍ରସ୍ତର ଶଯ୍ୟାରେ ଦୁଇଟି ବିଶାଳ ବିଷ୍ଣୁ ପ୍ରତିମା ଶୟନ ଭଙ୍ଗୀରେ ଉତ୍କୀର୍ଣ୍ଣ ହୋଇଛି। ଏହି ପ୍ରକାର ଉପସ୍ଥାପନା ଓଡ଼ିଶା କାହିଁକି ଭାରତରେ ମଧ ବିରଳ। ପୂର୍ବତନ ପ୍ରତ୍ନତତ୍ତ୍ୱବିତ୍ ସ୍ୱର୍ଗତ ପଦ୍ମଶ୍ରୀ, ପରମାନନ୍ଦ ଆଚାର୍ଯ୍ୟ ପ୍ରଥମେ ଏହା ବିଷୟରେ ଉଲ୍ଲେଖକରି, ଏହା ଖ୍ରୀ: ୮ମ-୯ମ ଶତାବ୍ଦୀର କୃତିବୋଲି କହିଛନ୍ତି।

ଭୀମକାଣ୍ଡ ଗ୍ରାମ, ତାଳଚେର ଠାରୁ ପ୍ରାୟ ୩୫ କି.ମି ଦୂରରେ ଅବସ୍ଥିତ। ଏଠାରୁ ଅଳ୍ପ ଦୂରରେ ଟିକିରା ନଦୀର ପ୍ରାନ୍ତରେ ଥିବା

ଏକ ବିଶାଳ ପ୍ରସ୍ତରଶଯ୍ୟାରେ ଲମ୍ବଭାବେ ବିଷ୍ଣୁଙ୍କ ପ୍ରତିମା ଉତ୍‌କୀର୍ଣ୍ଣ ହୋଇଛି। ଏଠାରେ ବିଷ୍ଣୁ ଦକ୍ଷିଣ କଡ଼ମାଡ଼ି ଶୟନ କରିଥିବାବେଳେ ତାଙ୍କ ପଦଯୁଗଳ ଛନ୍ଦିତ ଅବସ୍ଥାରେ ରହିଛି। ଏଣୁ ଦକ୍ଷିଣ ପାର୍ଶ୍ୱର କୌଣସି ହସ୍ତ ଦୃଷ୍ଟିଗୋଚର ହେଉନଥିବାବେଳେ କେବେଳ ବାମ ଉପର ହସ୍ତରେ ଚକ୍ର ଓ ତଳ ହସ୍ତ ଲମ୍ବିତ ଅବସ୍ଥାରେ ରହିଛି। ଏହା ବ୍ୟତୀତ ଦେବତାଙ୍କ ମସ୍ତକରେ ମୁକୁଟ, କର୍ଣ୍ଣରେ କୁଣ୍ଡଳ ବକ୍ଷଃରେ କୌସ୍ତୁଭ, ହସ୍ତରେ  ବାଜୁବନ୍ଧ ଓ କଙ୍କଣ, ସ୍କନ୍ଧରେ ଯଜ୍ଞୋପବୀତ,  କଟିରେ ମେଖଳା ସମେତ ସୂକ୍ଷ୍ମବସ୍ତ୍ରର ପରିଧାନ ଦେଖିବାକୁମିଳେ। ଏଠାରେ ଅନନ୍ତନାଗ ନଥିବାରୁ ଏହା ବିଷ୍ଣୁଙ୍କ କେବେଳ 'ଶୟନମୂର୍ତ୍ତି' ଅଟେ। ଆପାଦ ମସ୍ତକ କୃତିଟିର ଲମ୍ବ ପ୍ରାୟ ୪୪ ଫୁଟ ୨ଇଞ୍ଚ। ମୁକ୍ତାକାଶ ତଳେ ରହିଥିବା ମୂର୍ତ୍ତିଟିର ସୁରକ୍ଷା ନିର୍ମନ୍ତେ ନିକଟସ୍ଥ ଏନ୍.ଟି.ପି.ସି. ସଂସ୍ଥା କେତେକ ପଦକ୍ଷେପ ନେଇଛନ୍ତି।

**ଲକ୍ଷ୍ମୀନାରାୟଣ**

ଲକ୍ଷ୍ମୀନାରାୟଣ ବା ବିଷ୍ଣୁଙ୍କ ସହିତ ତା'ଙ୍କ ଦୁଇବାମା ଭୂଦେବୀ ଓ ଶ୍ରୀଦେବୀ ଥିବା ମୂର୍ତ୍ତିର ସଂଖ୍ୟା ଓଡ଼ିଶାରେ ଯଥେଷ୍ଟ କମ୍ ଥିବାବେଳେ ନାରାୟଣଙ୍କ ସହିତ ଲକ୍ଷ୍ମୀ ଥିବା କେତେକ ରଚନା ଦେଖିବାକୁମିଳେ। ପ୍ରାଚୀନଦୀ ଅବବାହିକା, ଶ୍ରୀଜୟଦେବଙ୍କ ଜନ୍ମପୀଠ କେନ୍ଦୁଲିର ଏକ ଛୋଟ ପ୍ରତିମାରେ ବିଶ୍ୱପଦ୍ମାସନ ଉପରେ ଯୋଗମୁଦ୍ରାରେ ବସିଥିବା ନାରାୟଣଙ୍କ ଦୁଇ ଜାନୁ ଉପରେ ଭୂଦେବୀ ଓ ଶ୍ରୀଦେବୀ ଆସନ ଗ୍ରହଣ କରିଥିବା ଦେଖାଯାଏ। ଏଠାରେ ନାରାୟଣଙ୍କ ଚର୍ତୁଭୁଜରୁ ଉପର ଦକ୍ଷିଣହସ୍ତରେ ପଦ୍ମ, ତଳ ହସ୍ତରେ ଶଙ୍ଖ, ଉପର ବାମହସ୍ତରେ ଗଦା ଓ ତଳହସ୍ତରେ ଚକ୍ର ରହିଛି। ମୂର୍ତ୍ତିଟିର ଉପର କେତାକାଶଂ ଭଗ୍ନ ହୋଇଥିବା ସ୍ଥଳେ ପ୍ରସ୍ଥଦର ମାଳା ସଦୃଶ ଏକ ତୋରଣ, ଗନ୍ଧର୍ବ-ଅପ୍‌ସରାଙ୍କ ସ୍ଥାନିତ ହୋଇଥିବା ସୂଚନାମିଳେ। ଉତ୍ତର ଓ  ମଧ୍ୟଭାରତର ଅଧିକାଂଶ ପ୍ରାଚୀନ ବିଷ୍ଣୁ ପ୍ରତିମାରେ ବିଷ୍ଣୁଙ୍କ ଶରୀର ପୃଥୁଳ ଏବଂ ତାଙ୍କ ସହିତ ଗରୁଡ଼ ଦେଖାଯାଏନାହିଁ। ଏହି ଲକ୍ଷଣ ଯୁକ୍ତ କେନ୍ଦୁଲିର ପ୍ରତିମାଟି ମଧ ପ୍ରାଚୀନ ହୋଇଥିବା ସମ୍ଭବ। ପଶ୍ଚିମଓଡ଼ିଶାର ବେଲଖଣ୍ଡି ଓ ରାଣୀପୁର-ଝରିଆଲ୍ ଠାରେ ମଧ୍ୟଭାରତୀୟ ଶୈଳୀର ଲକ୍ଷ୍ମୀନାରାୟଣ ପ୍ରତିମାର ଭଗ୍ନାବଶେଷ ଦେଖିବାକୁମିଳେ।

ଲକ୍ଷ୍ମୀନାରାୟଣଙ୍କ ଦୁଇଟି ବିକଶିତ କଳାଶୈଳୀର ମଧ୍ୟଯୁଗୀୟ ମୂର୍ତ୍ତି ମଧ୍ୟରୁ ଗୋଟିଏ ଭୁବନେଶ୍ୱରର ଲିଙ୍ଗରାଜମନ୍ଦିର ପରିସରରେ ଓ ଅନ୍ୟଟି ପ୍ରାଚୀନଦୀ ଅବବାହିକାର ଚଉରାଶି ଗ୍ରାମର ଲକ୍ଷ୍ମୀନାରାୟଣ ମନ୍ଦିର ମଧ୍ୟରେ ରହିଛି। ଉଭୟର ଉପସ୍ଥାପନା ଧାରାରେ ଯଥେଷ୍ଟ ସମତା ରହିଥିବାବେଳେ ଚଉରାଶିର କଚିଟି ନିଖୁଣ, କମନୀୟ ଓ ଜୀବନ୍ତ ମନେହୁଏ। ଏଠାରେ ନାରାୟଣ ସିଂହାସନ ଉପରେ ଲଳିତଭଙ୍ଗୀରେ ବସିଥିବାବେଳେ ଲକ୍ଷ୍ମୀ ତା'ଙ୍କ ବାମଜାନୁ ଉପରେ ସେହି ଭଙ୍ଗୀରେ ଆସନ ଗ୍ରହଣ କରିଛନ୍ତି। ଲକ୍ଷ୍ମୀଙ୍କ ଦକ୍ଷିଣହସ୍ତ ନାରାୟଣଙ୍କ ସ୍କନ୍ଧ ଉପରେ ରହିଥିବାବେଳେ ବାମହସ୍ତରେ ଦେବୀ ଏକ ମଦ୍ ଧାରଣ କରିଛନ୍ତ। ନାରାୟଣ ତା'ଙ୍କ ଉପର ଦକ୍ଷିଣହସ୍ତରେ ପଦ୍ମ, ବାମହସ୍ତରେ ଚକ୍ର ଧାରଣକରି ମୁଖ୍ୟ ବାମହସ୍ତରେ ଦେବୀଙ୍କ ବାମ ବକ୍ଷୋଜ ସ୍ପର୍ଶ କରୁଥିବାବେଳେ ମୁଖ୍ୟ ଦକ୍ଷିଣହସ୍ତଟି ଅଭୟମୁଦ୍ରାରେ ନିଜ ବକ୍ଷଃ ନିକଟରେ ରହିଛି। ବିଷ୍ଣୁଙ୍କ ମସ୍ତକରେ ସୁଉଚ୍ଚ କିରୀଟ ମୁକୁଟ ଓ ଲକ୍ଷ୍ମୀ ମସ୍ତକରେ ଅଳକା ମୁକୁଟ ଦେଖାଯାଏ ଏବଂ ଉଭୟ ଦେବଦେବୀ ସୂକ୍ଷ୍ମ କାରୁକାର୍ଯ୍ୟପୂର୍ଣ୍ଣ, ସୁନ୍ଦର ବସ୍ତ୍ରାଳଙ୍କାର ପରିଧାନ କରିଛନ୍ତି। ମୂର୍ତ୍ତି ପ୍ରସ୍ଥଦର ମକରତୋରଣ ଦୁଇ ପାର୍ଶ୍ୱରେ ଉଡ୍ଡୀୟମାନ ଗନ୍ଧର୍ବ-ଅପ୍‌ସରା ପୁଷ୍ପମାଳା ଧାରଣ କରିଥିବାବେଳେ ନର, କିନ୍ନରମାନେ ବାଦ୍ୟଯନ୍ତ୍ର ବାଦନ ସହ ବିଭିନ୍ନ କାର୍ଯ୍ୟରେ ରତଥିବା ପରିଚାରକ,ପରିଚାରିକ ପିଢ଼ୀ ସ୍ଥାନିତ ହୋଇଛି। ଏହା ବ୍ୟତୀତ

ସିଂହାସନର ନିମ୍ନରେ ନାରାୟଣଙ୍କ ବାହନ ଗରୁଡ଼, ଲକ୍ଷ୍ମୀଙ୍କ ହସ୍ତୀ ସମେତ ଜଣେ ରାଜା ତାଙ୍କ ଅନୁଚରମାନଙ୍କ ସହିତ ଉପସ୍ଥିତ ଅଛନ୍ତି। କଳା ମୁଗୁନିପଥରରେ ନିର୍ମିତ ମୂର୍ତ୍ତିଟିର ଉଚ୍ଚତା ପ୍ରାୟ ୦.୮୫ ମିଟର ଅଟେ। ଆନୁମାନିକ ଖ୍ରୀ: ୧୩ଶ ଶତାବ୍ଦୀର ଏହି ପ୍ରତିମା ଓଡ଼ିଶା କାହିଁକି, ଭାରତୀୟ ମୂର୍ତ୍ତିକଳାର ଏକ ଶ୍ରେଷ୍ଠ ନମୁନା କହିଲେ ଅତ୍ୟୁକ୍ତି ହେବନାହିଁ।

କଟକରୁ ପ୍ରାପ୍ତ, ଭୁବନେଶ୍ୱର ରାଜ୍ୟ ସଂଗ୍ରାହଳୟରେ ଥିବା ଏକ ରଚନାରେ ବିଷ୍ଣୁଙ୍କ ସହିତ ଭୂଦେବୀ ଓ ଶ୍ରୀଦେବୀ ରହିଛନ୍ତି। ତେବେ, ଏହି ବିଶାଳ ମୂର୍ତ୍ତିଟିର ଉପର ଅଂଶ ଭଗ୍ନ। ବିଶ୍ୱପଦ୍ମ ଉପରେ ଲଳିତାସନରେ ବସିଥିବା ତିନିଦେବୀଙ୍କ ମସ୍ତକ ଓ ହସ୍ତ ବିଚ୍ୟୁତ ଘଟିଛି। ଏହି ପରିସ୍ଥିତିରେ ଆୟୁଧ ଗୁଡ଼ିକର କୌଣସି ସୂଚନା ମିଳୁନଥିବାବେଳେ ଆସନର ନିମ୍ନରେ ଗରୁଡ଼ଙ୍କ ସମେତ ଦୁଇଜଣ ନାରୀ ଓ ଜଣେ ପୁରୁଷ ଭକ୍ତ ନମସ୍କାର ମୁଦ୍ରାରେ ଉଭା ହୋଇଥିବା ଦେଖାଯାଏ। କଳା ମୁଗୁନି ପଥରରେ ନିର୍ମିତ କୃତିଟିର ଉଚ୍ଚତା ପ୍ରାୟ ୧.୪୦ମିଟର ଓ ପ୍ରସ୍ଥ ପ୍ରାୟ ୧.୦୦ମିଟର ଅଟେ। ଏହା ଖ୍ରୀ:୧୩ଶ-୧୪ଶ ଶତାବ୍ଦୀର କୃତିବୋଲି ଅନୁମାନ କରାଯାଏ। ତେବେ, ଏହି ପ୍ରକାର ବିଶାଳ ବିଷ୍ଣୁ ପ୍ରତିମା ଓଡ଼ିଶାରେ ବିରଳ।

## ବିଷ୍ଣୁଙ୍କ ଅବତାର ମୂର୍ତ୍ତି

ବିଷ୍ଣୁ ଅବତାରୀପୁରୁଷ। ତାଙ୍କର ବହୁବିଧ ଅବତାର ରହିଥିବାବେଳେ ତାହା ମଧ୍ୟରୁ ମତ୍ସ୍ୟ, କଚ୍ଛପ,ବରାହ, ନୃସିଂହ, ବାମନ,ରାମ, ପରଶୁରାମ,ବଳରାମ,ବୁଦ୍ଧ ଓ କଳ୍କୀ ଏହି ଦଶବିଧ ରୂପକୁ ଗୁରୁତ୍ୱ ଦିଆଯାଇଥାଏ। ଗୁପ୍ତଯୁଗରୁ ଉତ୍ତରଭାରତ ଓ ମଧ୍ୟଭାରତରେ ଦଶାବତାର ମନ୍ଦିର ଓ ମୂର୍ତ୍ତିମାନ ନିର୍ମିତ ହୋଇଥିବା ଜଣାଯାଏ। ଏହାର ପରବର୍ତ୍ତୀ ସମୟରେ କେତେକ ଅବତାରର ବିଶାଳ ପ୍ରତିମାମାନ ଭାରତର ବିଭିନ୍ନ ପ୍ରାନ୍ତରେ ନିର୍ମିତ ହୋଇଛି। ତେବେ, ଏହି ପ୍ରକାର ବିଶାଳ କୃତି ଦେଖାଯାଏନାହିଁ। ଓଡ଼ିଶାରେ ବିଷ୍ଣୁଙ୍କ ଦଶାବତାର ମୂର୍ତ୍ତିର ଗୁରୁତ୍ୱ ମଧ କ୍ଷୀଣ। କେତେକ ପ୍ରାଚୀନ ଶିବ ମନ୍ଦିର ଗାତ୍ରର ଆବରଣଦେବତାଙ୍କ ମଧ୍ୟରେ ବରାହ, ନୃସିଂହ ଓ ତ୍ରିବିକ୍ରମଙ୍କ କ୍ଷୁଦ୍ର ପିଢ଼ୁଳାମାନ ଦେଖିବାକୁମିଳେ। ମଧ୍ୟକାଳୀନ ଓ ପରବର୍ତ୍ତୀ ସମୟର ବୈଷ୍ଣବ ମନ୍ଦିର ପାର୍ଶ୍ୱଦେବତା ଭାବେ ବିଷ୍ଣୁଙ୍କ ତୃତୀୟ, ଚତୁର୍ଥ ଓ ପଞ୍ଚମ ଅବତାର ଅର୍ଥାତ୍ ବରାହ, ନୃସିଂହ ଓ ବାମନ ବା ତ୍ରିବିକ୍ରମ ରୂପକୁ ଗୁରୁତ୍ୱ ଦିଆଯାଇ ସେହି ମୂର୍ତ୍ତିମାନ ସ୍ଥାନିତ ହୋଇଛି। ଏହା ବ୍ୟତୀତ ଅଳ୍ପ କେତେକ ଶିବ ମନ୍ଦିରର ଓ ବିଷ୍ଣୁମନ୍ଦିର ଆବରଣଦେବତାଙ୍କ ମଧ୍ୟରେ ବିଷ୍ଣୁଙ୍କ ଦଶାବତାର ଛୋଟ ଛୋଟ ପ୍ରତିମାମାନ ଦେଖିବାକୁମିଳେ। ପୂର୍ବ ସୂଚୀତ ତିନି ପାର୍ଶ୍ୱଦେବତା ପ୍ରତିମା ମଧ୍ୟରୁ ବରାହ ଓ ନୃସିଂହଙ୍କ ଅର୍ଚ୍ଚାବିଗ୍ରହମାନ ମଧ କେତେକ ମନ୍ଦିରରେ ରହିଛି। ପ୍ରାଚୀନଦୀ ଅବବାହିକାର ଅଡ଼ଶପୁରର ବରାହନାଥ ମନ୍ଦିର, ଯାଜପୁରର ବରାହମନ୍ଦିର ଓ ଆଳିର ଲକ୍ଷ୍ମୀ-ବରାହ ମନ୍ଦିର ଏହାର ଉଦାହରଣ। ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ପରିସରର ନୃସିଂହମନ୍ଦିର ସମେତ ଓଡ଼ିଶାର ବହୁ ମନ୍ଦିର ଓ ମଠରେ ନୃସିଂହଙ୍କ ଅର୍ଚ୍ଚାବିଗ୍ରହମାନ ରହିଛି। ଏଣୁ ଓଡ଼ିଶାରେ ଏହି ତିନି ବୈଷ୍ଣବ ପାର୍ଶ୍ୱଦେବତା, ଅବତାର ମୂର୍ତ୍ତିର ସଂଖ୍ୟା ଅଧିକ।

### ବରାହ ଅବତାର

ପ୍ରଳୟଜଳ ଓ ନାଗମାନଙ୍କ ଉପଦ୍ରବରୁ ପୃଥିବୀକୁ ରକ୍ଷାକରିବା ନିମନ୍ତେ ବିଷ୍ଣୁଙ୍କ ବରାହ ରୂପ। ପୂର୍ବମୁଖ ବୈଷ୍ଣବ ମନ୍ଦିରର ଦକ୍ଷିଣପାର୍ଶ୍ୱ, ପାର୍ଶ୍ୱଦେବତା ଭାବେ ବିଷ୍ଣୁଙ୍କ ବରାହ ଅବତାର ମୂର୍ତ୍ତି ସ୍ଥାନିତ ହୋଇଥାଏ। ଏଥିରେ ସେ ବରାହମୁଖ ଓ ମାନବ ଶରୀର ଅଟନ୍ତି। ଚର୍ତୁଭୁଜ ଦେବତାଙ୍କ

ହସ୍ତରେ ବିଷ୍ଣୁଙ୍କ ଆୟୁଧ ସହ ଉତ୍ତୋଳିତ ବାମବାହୁ ଉପରେ ଭୂଦେବୀଙ୍କୁ ଧାରଣ କରିଥିବା ଦେଖାଯାଏ। ବରାହ ସାଧାରଣତଃ ଆଲୀଢ଼ ଭଙ୍ଗୀରେ ବାମପାଦ ଉତ୍ତୋଳିତ କରି, ବାମକୁ ମାଡ଼ି ଚାଲିଥାଆନ୍ତି। ଏହା ଏକ ବୀରଭଙ୍ଗୀ ଅଟେ। ତା'ଙ୍କ ପାଦତଳେ ଦଳିତ-ନାଗ କିମ୍ବା ଶରଣାପନ୍ନ ନାଗ, ନାଗୀଙ୍କ ପିତୁଳା ଦେଖିବାକୁମିଳେ। ଅଧିକାଂଶ ମଧ୍ୟଯୁଗୀୟ ମୂର୍ତ୍ତି ସାଧାରଣତଃ ବିଶ୍ୱପଦ୍ମ ଉପରେ ଦଣ୍ଡାୟମାନ ହୋଇଥିବାବେଳେ ମୂର୍ତ୍ତିର ପ୍ରଚ୍ଛଦରେ ମକରତୋରଣ ଓ ଅନନ୍ୟା ମଣ୍ଡନକୃତି ଦେଖାଯାଏ।

ଓଡ଼ିଶାର ବରାହ ଅବତାର ମୂର୍ତ୍ତିଗୁଡ଼ିକୁ ଦୁଇ ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ। ପ୍ରାରମ୍ଭ ପର୍ଯ୍ୟାୟ, ଅର୍ଥାତ୍, ଖ୍ରୀ: ୯ମ-୧୦ମ ଶତାବ୍ଦୀ କୃତିଗୁଡ଼ିକର କଳାଶୈଳୀ ଅପରିପକ୍ୱ। ଏଥିରେ ବରାହଙ୍କ ଶରୀର ଗଠନ କିଞ୍ଚିତ୍ ଖର୍ବ। ସେ ପାଦତଳେ ଏକ ନାଗକୁ ଦଳନ କରୁଥିବାବେଳେ ନାଗୀ ଯୋଡ଼ହସ୍ତରେ ଉଭାହୋଇଥିବା ଦେଖାଯାଏ। ଏଠାରେ ନାଗ ନାଗୀଙ୍କ ଊର୍ଦ୍ଧ୍ୱଭାଗ ମନୁଷ୍ୟ ଓ ନିମ୍ନଭାଗ ସର୍ପଶରୀର ଅଟେ। ବରାହଙ୍କ ଚର୍ତୁଭୁଜରୁ ମୁଖ୍ୟ ଦୁଇ ହସ୍ତର ଅଙ୍ଗୁଳି ଛନ୍ଦିତ ଅବସ୍ଥାରେ ବକ୍ଷ ନିକଟରେ ରହିଥିବାବେଳେ ଉତ୍ତୋଳିତ ବାମବାହୁ ଉପରେ ଭୂଦେବୀଙ୍କୁ, ଅନ୍ୟ ଦକ୍ଷିଣହସ୍ତରେ ଚକ୍ର ଓ ବାମହସ୍ତରେ ଶଙ୍ଖ ଧାରଣ କରିଥିବା ଦେଖାଯାଏ। ବେଶଭୂଷଣ ମଧ୍ୟରେ ବରାହଙ୍କ ମସ୍ତକରେ କିଞ୍ଚିତକେଶ ଓ କ୍ଷୀଣ ମୁକୁଟ, କର୍ଣ୍ଣରେ ରତ୍ନକୁଣ୍ଡଳ, ଗଳାରେ ରତ୍ନହାର, ସ୍କନ୍ଧରେ ଯଜ୍ଞୋପବୀତ ଓ ଦୀର୍ଘ ବନମାଳା, କଟିରେ ସ୍ୱଳବସ୍ତ୍ରର ପରିଧାନ ଉପରେ ଝରାବଳୀଯୁକ୍ତ ମେଖଳା ଏବଂ ପାଦରେ ନୂପର ରହିଥାଏ। ଏହି ପ୍ରକାର ପ୍ରାଚୀନ ବରାହ ମୂର୍ତ୍ତି ଭୁବନେଶ୍ୱରର ପଶ୍ଚିମେଶ୍ୱର ମନ୍ଦିର, ଯାଜପୁର, ମହାନଦୀ ଟାପୁର ସିଂହନାଥ ମନ୍ଦିର, ପ୍ରାଚୀ ଅବବାହିକାର କେତେକ ସ୍ଥାନ ଓ ମୁଖଲିଙ୍ଗମ୍‌ର ମଧୁକେଶ୍ୱର ମନ୍ଦିରରେ ଦେଖିବାକୁମିଳେ।

ଖ୍ରୀଷ୍ଟୀୟ ୧୧ଶ ଶତାବ୍ଦୀ ଓ ତା'ର ପରବର୍ତ୍ତୀ ସମୟର ପ୍ରାୟ ସମସ୍ତ ବରାହ ଅବତାର ମୂର୍ତ୍ତି ବିକଶିତ କଳାଶୈଳୀର ଅଟେ। ଏଥିରେ ବରାହଙ୍କ ଶରୀର ଦୀର୍ଘ ଓ ସୁଠାମ। ଗାମ୍ଭିର୍ଯ୍ୟପୂର୍ଣ୍ଣ ମୂର୍ତ୍ତିଗୁଡ଼ିକର ପ୍ରଚ୍ଛଦରେ ଏକ ପତ୍ରପୁଷ୍ପଯୁକ୍ତ ଛନ୍ଦମୟଲତା ଦେଖିବାକୁମିଳେ। ଏଠାରେ ବରାହଙ୍କ ମୁଖ୍ୟ ଦୁଇହସ୍ତ ଛନ୍ଦିତ ପରିବର୍ତ୍ତେ ମୁକ୍ତଥାଏ। ପୂର୍ବଭଳି ଉତ୍ତୋଳିତ ବାମବାହୁ ଉପରେ ଭୂଦେବୀଙ୍କୁ ଆଶ୍ରୟ ଦେଇଥିବାବେଳେ ଦକ୍ଷିଣହସ୍ତରେ ନିମ୍ନରେ ଥିବା ଜଣେ ନାରୀଙ୍କ (ଗଦାଦେବୀ)ଙ୍କ ହସ୍ତ ଧାରଣ କରିଥିବା ଦେଖାଯାଏ। ସେ ଅନ୍ୟ ହସ୍ତରେ ପୂର୍ବଭଳି ଚକ୍ର ଓ ଶଙ୍ଖ ଧାରଣ କରିଥାଆନ୍ତି। ଏହା ବ୍ୟତୀତ ଅଧିକାଂଶ ମୂର୍ତ୍ତିର ଆଲୀଢ଼ଭଙ୍ଗୀ, ଦୁଇପାଦ ମଧ୍ୟଭାଗ, ନିମ୍ନରେ ନାଗ କିମ୍ବା ନାଗୀ ନମସ୍କାର ମୁଦ୍ରାରେ ଦେଖାଯାଆନ୍ତି। କେତେକ ମୂର୍ତ୍ତିର ପ୍ରଚ୍ଛଦରେ ମକରତୋରଣ, ଊର୍ଦ୍ଧ୍ୱର ଦୁଇ ପାର୍ଶ୍ୱରେ ପଦ୍ମ କିମ୍ବା ଉଡ୍ଡୀୟମାନ ଭଙ୍ଗୀରେ ଗନ୍ଧର୍ବ ଓ ଅପ୍ସରାଙ୍କ ପିତୁଳା ସ୍ଥାନିତ ହୋଇଥାଏ। କେତେକ ରଚନାରେ ବରାହ ବିଶ୍ୱପଦ୍ମ ଉପରେ କିମ୍ବା ବିଶ୍ୱପଦ୍ମ-କୁଶନ ଉପରେ ଉଭା ହୋଇଥାଆନ୍ତି। କୃତିଗୁଡ଼ିକରେ



ବରାହ ଅବତାର, ମାଧବ ମନ୍ଦିର, ମାଧବ

ଦେହର ବସ୍ତ୍ରାଳଙ୍କାର କାରୁକଳାପୂର୍ଣ୍ଣ। ଏହି ପ୍ରକାର ବରାହ ଅବତାର ମୂର୍ତ୍ତି ପୁରୀର ଶ୍ରୀଜଗନ୍ନାଥ ମନ୍ଦିର, ଶ୍ରୀମନ୍ଦିର ପରିସରର ନୃସିଂହ ମନ୍ଦିର, ଭୁବନେଶ୍ୱରର ଅନନ୍ତ-ବାସୁଦେବ ମନ୍ଦିର, ପ୍ରାଚୀ ଅବବାହିକାର ମାଧବାନନ୍ଦ ମନ୍ଦିର, ଅଡ଼ଶପୁରର ବରାହ ନୃସିଂହ ମନ୍ଦିର, ମୁଦ୍ଗଳ ଗ୍ରାମ ସମେତ ଯାଜପୁରର କେତେକ ସ୍ଥାନରେ ରହିଛି। ଏହା ମଧ୍ୟରେ କଳାମୁଗୁନି ପଥରରେ ନିର୍ମିତ ଭୁବନେଶ୍ୱର, ଅନନ୍ତ-ବାସୁଦେବ ମନ୍ଦିରର ଓ ମାଧବାନନ୍ଦ ମନ୍ଦିରର ମୂର୍ତ୍ତିର ଉଚ୍ଚତା ପ୍ରାୟ ୧.୨୫ ମିଟର ଅଟେ। ଉତ୍କଳୀୟ ମୂର୍ତ୍ତିକଳାର ଏଗୁଡ଼ିକ ଉଲ୍ଲେଖଯୋଗ୍ୟ ରଚନା।

## ନୃସିଂହ ଅବତାର

ଅସୁରରାଜ ହିରଣ୍ୟକଶିପୁର ଅତ୍ୟାଚାରରୁ ଭକ୍ତ ପ୍ରହଲ୍ଲାଦକୁ ରକ୍ଷାକରିବା ନିମନ୍ତେ ବିଷ୍ଣୁଙ୍କ ନୃସିଂହ ଅବତାର। ସିଂହମୁଖ, ମାନବ ଶରୀର ମୂର୍ତ୍ତି ସାଧାରଣତଃ ଚର୍ତୁଭୁଜ ହେଲେହେଁ ଅଳ୍ପ କେତେକ ଦ୍ୱିଭୁଜ ପ୍ରତିମା ଦେଖିବାକୁମିଳେ। ଓଡ଼ିଶାରେ ବୈଷ୍ଣବ ମନ୍ଦିରମାନଙ୍କ ପଛପାଖ ବାଡ଼ରେ ପାର୍ଶ୍ୱଦେବତା ଭାବେ ନୃସିଂହଙ୍କ ପ୍ରତିମା ସ୍ଥାନିତ ହୋଇଥାଏ। ଏହା ବ୍ୟତୀତ ଅନେକ ପୂଜିତ ପ୍ରତିମା ମଧ ଦେଖିବାକୁ ମିଳେ। ଓଡ଼ିଶାର ନୃସିଂହ ମୂର୍ତ୍ତିଗୁଡ଼ିକୁ ସାଧାରଣତଃ ପାଞ୍ଚ ଶ୍ରେଣୀରେ ବିଭକ୍ତ କରାଯାଇପାରେ। ଯଥା: ହିରଣ୍ୟକଶିପୁ ବିଦାରଣ ନୃସିଂହ, ଲକ୍ଷ୍ମୀ-ନୃସିଂହ, ଗିରଜାନୃସିଂହ, ଜାନକନୃସିଂହ ଓ ସ୍ଥାନକନୃସିଂହ।

## ହିରଣ୍ୟକଶିପୁ ବିଦାରଣ ନୃସିଂହ

ଏହି ପ୍ରକାର ମୂର୍ତ୍ତି ସାଧାରଣତଃ ବୈଷ୍ଣବ ମନ୍ଦିରର ପାର୍ଶ୍ୱଦେବତା ଭାବେ ସ୍ଥାନିତ ହୋଇଥିବା ଦେଖାଯାଏ। ଏହି ପ୍ରକାର ନୃସିଂହ ଦଣ୍ଡାୟମାନ ଭଙ୍ଗୀରେ ବାମପାଦ କିଞ୍ଚିତ୍ ଉତ୍ତୋଳନ କରି ହିରଣ୍ୟକଶିପୁକୁ ସେହି ଜାନୁ ଉପରେ ଚିତ୍ ଭାବରେ ପକାଇ ତା'ର ଉଦରକୁ ଦୁଇ ମୁଖ୍ୟ ହସ୍ତର ନଖରେ ବିଦାରଣ କରୁଥିବା ଦେଖାଯାଏ। ଏତିକିବେଳେ ସେ ଉପର ଦୁଇ ହସ୍ତରେ ବିଷ୍ଣୁଙ୍କ କୌଣସି ଦୁଇ ଆୟୁଧ ଧାରଣ କରିଥାଆନ୍ତି। ଅଧିକାଂଶ ସ୍ଥଳେ ନୃସିଂହ ଚର୍ତୁଭୁଜ ହେଲେହେଁ ମୁଖଲିଙ୍ଗମ୍‌ର ମଧୁକେଶ୍ୱର ମନ୍ଦିରରେ ଏକ ଦ୍ୱିଭୁଜ ପ୍ରତିମା ରହିଛି। କେତେକ ସ୍ଥଳେ ତା'ଙ୍କ ପାଦତଳେ ଜଣେ କିମ୍ବା ଦୁଇଜଣ ଅସୁର ଦଳିତ ଅବସ୍ଥାରେ ପଡ଼ିଥିବା ଦେଖାଯାଏ। ନୃସିଂହଙ୍କ ଭୀଷଣ, ଉଗ୍ର ସିଂହ ମୁଖରେ ଦନ୍ତ ଓ ଜିହ୍ୱା ଦେଖାଯାଉଥିବାବେଳେ ମସ୍ତକରେ ଦୁଇପାର୍ଶ୍ୱର ଝୁଲିଥିବା କେଶ କିମ୍ବା ଚତୁଃପାର୍ଶ୍ୱରେ ଚକ୍ରାକାର କୁଞ୍ଚିତକେଶ ଦେଖିବାକୁମିଳେ। ଅଳ୍ପ କେତେକ ସ୍ଥଳେ ମୂର୍ତ୍ତିର ନିମ୍ନରେ ଗରୁଡ଼, ଅନ୍ୟ କୌଣସି ଆନୁଷଙ୍ଗିକ ଦୃଶ୍ୟ କିମ୍ବା ପରିଚାରକ, ପରିଚାରିକାଙ୍କ ପିତୁଳା ସ୍ଥାନିତ ହୋଇଥାଏ। ଏହି ପ୍ରକାର ମୂର୍ତ୍ତିର ଦେହରେ ସ୍ୱଚ୍ଛ ବସ୍ତ୍ରାଳଙ୍କାର ରହିଥାଏ। ଉପର ଦକ୍ଷିଣହସ୍ତରେ ଚକ୍ର ଓ ବାମହସ୍ତରେ ଶଙ୍ଖ ଧାରଣକରିଥିବା ଏହି ପ୍ରକାର 'ହିରଣ୍ୟକଶିପୁ-ବିଦାରଣ' ନୃସିଂହ ପ୍ରତିମା ମୁଖଲିଙ୍ଗମ୍ ମଧୁକେଶ୍ୱର ଓ ଭୁବନେଶ୍ୱରର ପଣ୍ଡିମେଶ୍ୱର ଏବଂ ମଣିଭଦ୍ରେଶ୍ୱର ମନ୍ଦିରରେ ରହିଛି। ପ୍ରାଚୀନଦୀ ଅବବାହିକାର ଏହି ପ୍ରକାର ଅଧିକାଂଶ ମୂର୍ତ୍ତିରେ ସେ ଉପର ଦକ୍ଷିଣହସ୍ତରେ ଚକ୍ର ଓ ବାମହସ୍ତରେ ଗଦା ଧାରଣ କରିଥିବା ଦେଖାଯାଏ। ଯାଜପୁର ଜିଲ୍ଲା ଧର୍ମଶାଳାର ଏକ କୃତିରେ ତା'ଙ୍କ ଉପର ଦକ୍ଷିଣହସ୍ତରେ ପଦ୍ମ ଓ ବାମହସ୍ତରେ ଗଦା ରହିଛି। ମଧୁକେଶ୍ୱର ମନ୍ଦିରର ଏକ ଚର୍ତୁଭୁଜ କୃତିରେ ସେ ସମ୍ପୂର୍ଣ୍ଣ ଆୟୁଧ ବିହୀନ ଅର୍ଥାତ୍, ତାଙ୍କର ଉପର ଦୁଇହସ୍ତ ଉନ୍ମୁକ୍ତ ରହିଛି।



ହିରଣ୍ୟକଶିପୁ ବିଦାରଣ ନୃସିଂହ, ସିଂହନାଥ



ଲକ୍ଷ୍ମୀନୃସିଂହ, ନୂଆପାଟଣା

## ଲକ୍ଷ୍ମୀନୃସିଂହ ଓ ଗିରିଜାନୃସିଂହ

ଏହି ଦୁଇ ରଚନାରେ ନୃସିଂହ ବିଶ୍ୱପଦ୍ମ-କୁଶନ ଉପରେ ଯୋଗସନରେ ବସିଥିବା ଦେଖାଯାଏ। ଏହି ସମୟରେ ତାଙ୍କ ପୃଷ୍ଠଭାଗ ଓ ଛନ୍ଦିତ ଅବସ୍ଥାରେ ଦୁଇଗୋଡ଼ ଏକ ଯୋଗପଟ ଦ୍ୱାରା ବନ୍ଧାଯାଇଥାଏ। ତାଙ୍କ ଚର୍ତୁଭୁଜରୁ ମୁଖ୍ୟ ଦୁଇହସ୍ତ ସଳଖଭାବେ ଆଣ୍ଠୁ ସ୍ପର୍ଶ କରୁଥିବାବେଳେ ଉପର ଦକ୍ଷିଣହସ୍ତରେ ଚକ୍ର ଓ ବାମହସ୍ତରେ ଶଙ୍ଖ ଧାରଣ କରିଥାଆନ୍ତି। ତା'ଙ୍କ ବାମଜାନୁରେ ଲକ୍ଷ୍ମୀ ଆସନ ଗ୍ରହଣ କରିଥିବା ପ୍ରତିମାଗୁଡ଼ିକ 'ଲକ୍ଷ୍ମୀନୃସିଂହ' ଏବଂ ଲକ୍ଷ୍ମୀବିହୀନ ପ୍ରତିମାଗୁଡ଼ିକୁ 'ଗିରିଜାନୃସିଂହ' କୁହାଯାଏ। ମୂର୍ତ୍ତିଗୁଡ଼ିକର ମସ୍ତକରେ କିରୀଟମୁକୁଟ ଓ ଶରୀରରେ ସ୍ୱଚ୍ଛ ବସ୍ତାଳଙ୍କାର ଦେଖାଯାଏ। କେତେକ ବିକଶିତ ମୂର୍ତ୍ତି ପ୍ରଚ୍ଛଦରେ ଅଗ୍ନିବଳୟ କିମ୍ବା ମକରତୋରଣ ସମେତ ନିମ୍ନଭାଗରେ ଗରୁଡ଼ ଓ ମଣ୍ଡନଧର୍ମୀ ପିତୁଳାମାନ ଦେଖିବାକୁମିଳେ। ଏହି ପ୍ରକାର କୃତି ସାଧାରଣତଃ ଅର୍ଚ୍ଚାବିଗ୍ରହ।

## ସ୍ଥାନକ ନୃସିଂହ

ଏହି ମୂର୍ତ୍ତିରେ ନୃସିଂହ ଏକ ସରଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଥାଆନ୍ତି। ସାଧାରଣତଃ ମୂର୍ତ୍ତିଗୁଡ଼ିକ ଦ୍ୱିଭୁଜ ଭଦ୍ରକ ନିକଟ କାଉପୁର, କୋଣାର୍କ ନିକଟ ବିଷ୍ଣୁପୁରରେ 'ସ୍ଥାନକ ନୃସିଂହ' ପ୍ରତିମା ଦେଖିବାକୁମିଳେ। ବିଷ୍ଣୁପୁରର ନୃସିଂହ ଅଗ୍ନିବଳୟ ମଧ୍ୟରେ ଦଣ୍ଡାୟମାନ ହୋଇଥିବାବେଳେ ତା'ଙ୍କ ଦକ୍ଷିଣପାର୍ଶ୍ୱ ନିମ୍ନରେ ଗରୁଡ଼ ଓ ବାମପାର୍ଶ୍ୱରେ ଜଣେ ନାରୀ ନମସ୍କାର ମୁଦ୍ରାରେ ଦଣ୍ଡାୟମାନ ହୋଇଛନ୍ତି।

## ତ୍ରିବିକ୍ରମ ବା ବାମନାଅବତାର

ବିଷ୍ଣୁ ତାଙ୍କ ବାମନଅବତାରରେ ପ୍ରଥମ ଦୁଇ ପାଦରେ ଭୂମି ଓ ଆକାଶ ଆଚ୍ଛାଦିତ କରିବା ପରେ ତୃତୀୟପାଦ ବଳିରାଜାଙ୍କ ମସ୍ତକ ଉପରେ ରଖି ତା'ଙ୍କୁ ପାତାଳରେ ଲୀନ କରାଇଥିଲେ। ଏହି ତିନି ପାଦର ପରାକ୍ରମ ଯୋଗୁ ସେ 'ତ୍ରିବିକ୍ରମ' ନାମରେ ଖ୍ୟାତ। ମୂର୍ତ୍ତିକଳାରେ ବାମନ ରୂପକୁ ଗୌଣ କରିଦିଆଯାଇ ବିଷ୍ଣୁଙ୍କ ସାଧାରଣ ରୂପରେ ତା'ଙ୍କ ପରାକ୍ରମ ଉପସ୍ଥାପିତ ହୋଇଥାଏ। ଓଡ଼ିଶାର ପ୍ରଥମ ପର୍ଯ୍ୟାୟ ତ୍ରିବିକ୍ରମ ମୂର୍ତ୍ତିଗୁଡ଼ିକ ଅପରିପକ୍ୱ ଶୈଳୀର ହୋଇଥିବାବେଳେ ପରବର୍ତ୍ତୀକାଳୀନ ମୂର୍ତ୍ତିଗୁଡ଼ିକ ବିକଶିତ କଳାଶୈଳୀର ଅଟେ। ଏହି ପ୍ରକାର ରଚନାରେ ଚର୍ତୁଭୁଜ ତ୍ରିବିକ୍ରମ-ବିଷ୍ଣୁ ନିଜ ଆୟୁଧମାନ ବିଭିନ୍ନ ଭାବରେ ଧାରଣ କରିବା ସହିତ ଦକ୍ଷିଣପାଦ ଭୂମି ଉପରେ ରଖି ବାମପାଦ ଉତ୍ତୋଳନ କରି ସ୍ୱର୍ଗକୁ ଆଚ୍ଛାଦିତ କରୁଥିବାଭାବ ପ୍ରଦର୍ଶନ କରିଥାଆନ୍ତି। ଅଳ୍ପ କେତେକ ସ୍ଥଳେ ବାମପାଦ ଭୂମି ଉପରେ ରଖି ଦକ୍ଷିଣପାଦ ଉତ୍ତୋଳନ କରିଥିବା ମଧ୍ୟ ଦେଖିବାକୁମିଳେ। ଏହି ପ୍ରକାର ମୂର୍ତ୍ତିରେ ସେ ମସ୍ତକରେ କିରୀଟମୁକୁଟ ସମେତ ଦେହରେ ପାରମ୍ପରିକ ବସ୍ତ୍ରାଳଙ୍କାର ପରିଧାନ କରିଥାଆନ୍ତି। ଉଭୟ ସମୟର ମୂର୍ତ୍ତିଗୁଡ଼ିକରେ ନିମ୍ନ, ମଧ୍ୟଭାଗରେ ବଳିରାଜା ଶୁକ୍ରାଚାର୍ଯ୍ୟଙ୍କ ଉପସ୍ଥିତିରେ ବାମନକୁ ଦାନ କରୁଥିବା ଦୃଶ୍ୟ ଏବଂ ଉତ୍ତୋଳିତ ପାଦ ଉପରେ ଅର୍ଥାତ୍, ସ୍ୱର୍ଗରେ ଯୋଗାସନରେ ବସିଥିବା ବ୍ରହ୍ମାଙ୍କ କ୍ଷୁଦ୍ର ପିତୁଳା ଦେଖିବାକୁମିଳେ।

ପ୍ରଥମ ପର୍ଯ୍ୟାୟ ଅର୍ଥାତ୍ ଅପରିପକ୍ୱ କଳାଶୈଳୀର ଛୋଟ ଓ ମଧ୍ୟମ ଉଚ୍ଚତା ବିଶିଷ୍ଟ ତ୍ରିବିକ୍ରମ ପ୍ରତିମା ମହାନଦୀ ଟାପୁ ସିଂହନାଥ ମନ୍ଦିର, ଯାଜପୁର, ପ୍ରାଚୀ ଅବବାହୀକାର କାକଟପୁର, ଜାମୁଗୋରଡ଼ି ଓ ଅନ୍ୟକେତେକ ସ୍ଥାନରେ ରହିଥିବାବେଳେ ପରବର୍ତ୍ତୀ ପର୍ଯ୍ୟାୟର ବିକଶିତମୂର୍ତ୍ତି ପୁରୀର ଶ୍ରୀଜଗନ୍ନାଥମନ୍ଦିର, ନୃସିଂହ ମନ୍ଦିର, ଭୁବନେଶ୍ୱରର ଅନନ୍ତବାସୁଦେବ ମନ୍ଦିର, ଲିଙ୍ଗରାଜମନ୍ଦିର ପରିସର, ପ୍ରାଚୀ ଅବବାହିକାର ଲତାହରଣ, ନନ୍ଦୀଗ୍ରାମ, ନୂଆପାଟଣା, ମୁଦୁଳ ମାଧବ ଓ ମାଧବର ମାଧବାନନ୍ଦ ମନ୍ଦିର ସମେତ ଅନ୍ୟ କେତେକ ସ୍ଥାନରେ ଦେଖାଯାଏ। ତ୍ରିବିକ୍ରମଙ୍କ ହସ୍ତ ଆୟୁଧର ସ୍ଥାନ ପରିବର୍ତ୍ତନର ଉଦାହରଣ ଏହି କି; ଅନନ୍ତ-ବାସୁଦେବ, ନୃସିଂହମନ୍ଦିର ଓ ନୂଆପାଟଣାର ମୂର୍ତ୍ତିରେ ତା'ଙ୍କ ଉପର ଦକ୍ଷିଣହସ୍ତରେ ଗଦା, ତଳହସ୍ତରେ ପଦ୍ମ, ଉପର ବାମହସ୍ତରେ ଚକ୍ର ଓ ତଳହସ୍ତରେ ଶଙ୍ଖ ରହିଥିବାବେଳେ ମୁଦୁଳର ମୂର୍ତ୍ତିରେ ସେ ଉପର ଦକ୍ଷିଣହସ୍ତରେ ପଦ୍ମ ତଳହସ୍ତରେ ଚକ୍ର ଉପର ବାମହସ୍ତରେ ଶଙ୍ଖ ଓ ତଳ ହସ୍ତରେ ଗଦା ଧାରଣ କରିଛନ୍ତି। ଅନେକ ବିକଶିତ ମୂର୍ତ୍ତିର ନିମ୍ନରେ ବିଶ୍ୱପଦ୍ମାସନ ପୃଷ୍ଠଭାଗରେ ମକରତୋରଣ, ପଦ୍ମ ଦୁଇପାର୍ଶ୍ୱରେ ଭୂଦେବୀ, ଶ୍ରୀଦେବୀ କିମ୍ବା ଲକ୍ଷ୍ମୀ ଓ ସରସ୍ୱତୀ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଥିବା ଦେଖାଯାଏ। ଏହା ସହିତ ପାରମ୍ପରିକ ମଣ୍ଡନକୃତି ମଧ୍ୟ ସ୍ଥାନିତ ହୋଇଥାଏ।


ତ୍ରିବିକ୍ରମ ବିଷ୍ଣୁ, ନୂଆପାଟଣା

## ବିଷ୍ଣୁଙ୍କ ଦଶାବତାର

ଉତ୍କଳୀୟ କବି ଜୟଦେବଙ୍କ ଦଶାବତାର ସ୍ତୁତି ସଂସ୍କୃତ ରଚନାରେ ଏକ ଅନବଦ୍ୟ କୃତି ହୋଇଥିବାବେଳେ ଓଡ଼ିଶାର ମନ୍ଦିର ମୂର୍ତ୍ତିକଳାରେ ଦଶାବତାର ମୂର୍ତ୍ତି ଗୌଣ ହୋଇପଡ଼ିଛି

କହିଲେ ଅତ୍ୟୁକ୍ତି ହେବନାହିଁ। ତେବେ, ଅଳ୍ପ କେତେକ ଦଶାବତାର ମୂର୍ତ୍ତି ମଧ୍ୟରୁ କେତେକ ବିଷ୍ଣୁ ଓ କୃଷ୍ଣ-ବିଷ୍ଣୁ ମୂର୍ତ୍ତି ସହିତ ଓ ଅନ୍ୟ କେତେକ ମନ୍ଦିରମାନଙ୍କ ଆବରଣଦେବତା ମଧ୍ୟରେ ଦେଖିବାକୁ ମିଳେ। କଳାହାଣ୍ଡି ଜିଲ୍ଲାର ସଇଁତଲାଠାରେ ଥିବା ଏକ ପ୍ରାଚୀନ ବିଷ୍ଣୁମୂର୍ତ୍ତି ସହିତ ଓ ରାଜ୍ୟ ସଂଗ୍ରହାଳୟର ଏକ କୃଷ୍ଣ-ବିଷ୍ଣୁ ମୂର୍ତ୍ତିରେ ଦଶାବତାର ପିଢ଼ୁଳାମାନ ଉତ୍‌କୀର୍ଣ୍ଣ ହୋଇଛି। ମନ୍ଦିର ଦେହର ମୂର୍ତ୍ତି ମଧ୍ୟରେ ରାଣୀପୁର-ଝରିଆଲ୍‌ର ଇଟାନିର୍ମିତ ମନ୍ଦିରରେ ଦଶାବତାର ମଧ୍ୟରୁ ଅଳ୍ପ କେତୋଟି ଅବତାରମୂର୍ତ୍ତି ଅବକ୍ଷୟ ଅବସ୍ଥାରେ ଦେଖିବାକୁମିଳେ। ବୌଦ ନିକଟ ଗନ୍ଧରାଡ଼ିର ନୀଳମାଧବ ମନ୍ଦିର ଗାତ୍ରରେ ମଧ୍ୟ କେତେକ ମୂର୍ତ୍ତି ଭଗ୍ନ ଅବସ୍ଥାରେ ରହିଛି। କଟକ ଜିଲ୍ଲାର ଗଣେଶ୍ୱରପୁରର ବିଷ୍ଣୁମନ୍ଦିରରେ ସୁନ୍ଦର ଦଶାବତାର ପ୍ରତିମାମାନ ସ୍ଥାନିତ ହୋଇଛି। ମାତ୍ର ମନ୍ଦିର ସହିତ ଏଥିରୁ ଅନେକ ପ୍ରତିମା ନଷ୍ଟ ହୋଇପଡ଼ିଛି। ଭୁବନେଶ୍ୱରର ମଣିଭଦ୍ରେଶ୍ୱର ଶିବମନ୍ଦିରର ଆବରଣ ଦେବତାମାନଙ୍କ ମଧ୍ୟରେ ପରଶୁରାମ ଓ ବୁଦ୍ଧଙ୍କ ବ୍ୟତୀତ ଅନ୍ୟ ଆଠ ଅବତାର ପ୍ରତିମା ଦେଖିବାକୁମିଳେ। ପ୍ରାଚୀ ଅବବାହିକା, ମାଧବ ଗ୍ରାମର ମାଧବାନନ୍ଦ ମନ୍ଦିରର ଅନୁରଥ ଓ ପ୍ରତିରଥ ମାନଙ୍କରେ କ୍ରମବିହୀନ ଭାବେ ଦଶାବତାର ପିଢ଼ୁଳାମାନ ସ୍ଥାନିତ ହୋଇଛି।

କଟକ ଜିଲ୍ଲାର ଏରସମା ନିକଟ ତଅଁରା ଗ୍ରାମରେ ଏକ ବିଷ୍ଣୁମନ୍ଦିରର ଭଗ୍ନାବଶେଷ ରହିଥିବାବେଳେ ସେଠାର ତୀର୍ଥମଠରେ ଏହି ମନ୍ଦିରରୁ ସଂଗୃହୀତ ମଧ୍ୟମ ଉଚ୍ଚତା ବିଶିଷ୍ଟ ନୃସିଂହ, ବାମନ, ରାମ, ପରଶୁରାମ ଓ ବଳରାମଙ୍କ ବିଗ୍ରହ ଦେଖିବାକୁମିଳେ। ବୋଧହୁଏ ଏଗୁଡ଼ିକ ପୂଜାର୍ଚ୍ଚନା ନିମନ୍ତେ ସ୍ୱତନ୍ତ୍ର ଭାବେ ମନ୍ଦିର ମଧ୍ୟରେ ସ୍ଥାନିତ ହୋଇଥିଲା।





ଭୁବନେଶ୍ୱର, ମଣିଭଦ୍ରେଶ୍ୱର ମନ୍ଦିର ଗାତ୍ରର ଦଶବତାର ମୂର୍ତ୍ତି ମଧ୍ୟରୁ ମତ୍ସ୍ୟ,କଚ୍ଛପ, ବରାହ, ନୃସିଂହ ଓ ବାମନାବତାର










ବଳରାମ ଓ କଳ୍କୀ ଅବତାର, ମଣିକଣ୍ଠେଶ୍ୱର ମନ୍ଦିର, ଭୁବନେଶ୍ୱର

ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ସିଂହଦ୍ୱାର ଉପରେ ଓ ଶ୍ରୀମନ୍ଦିରର ବାଡ଼ ଉପର ଜଂଘ ପୀଢ଼ମୁଣ୍ଡିମାନଙ୍କରେ ଅନ୍ୟ ଦେବତାଙ୍କ ସହିତ ଦଶାବତାର ମୂର୍ତ୍ତିମାନ ଉତ୍କୀର୍ଣ୍ଣ ହୋଇଥିବା ଦେଖାଯାଏ। ଏହା ବ୍ୟତୀତ ମନ୍ଦିର ପରିସରରେ ଥିବା ନୃସିଂହ ମନ୍ଦିର ଦେହରେ ସମ୍ପୂର୍ଣ୍ଣ ଦଶାବତାର ମୂର୍ତ୍ତି ରହିଥିବାବେଳେ ଲକ୍ଷ୍ମୀମନ୍ଦିର ବାଡ଼ରେ ଅଳ୍ପ କେତୋଟି ଅବତାର ମୂର୍ତ୍ତି ସ୍ଥାନିତ ହୋଇଛି।

## ଗୋପୀନାଥ ଓ କୃଷ୍ଣ-ବିଷ୍ଣୁ

ବୈଷ୍ଣବ କବି ଜୟଦେବଙ୍କ ଗୀତଗୋବିନ୍ଦର ଲୋକପ୍ରିୟତା ଦ୍ୱାରା ବିଷ୍ଣୁ ଓ କୃଷ୍ଣ ଏକ ଓ ବିଭିନ୍ନଭାବ ଜନମାନସରେ ଦୃଢ଼ିଭୂତ ହୋଇଥିଲା। ଏହାଦ୍ୱାରା ଖ୍ରୀ: ୧୨ଶ ଶତାବ୍ଦୀର ଶେଷଭାଗ ଓ ଖ୍ରୀ: ୧୩ଶ ଶତାବ୍ଦୀର ପ୍ରଥମ ଭାଗରେ ଓଡ଼ିଶାର ମୂର୍ତ୍ତିକଳାରେ ବହୁ ସୁନ୍ଦର କୃଷ୍ଣ ବା ଗୋପୀନାଥ ପ୍ରତିମା ଓ ଅଳ୍ପକେତୋଟି କୃଷ୍ଣ-ବିଷ୍ଣୁପ୍ରତିମା ପୂଜାର୍ଚ୍ଚନା ନିମନ୍ତେ ନିର୍ମିତ ହୋଇଥିବା ଜଣାଯାଏ। ଏହି ଅର୍ଚ୍ଚାବିଗ୍ରହଗୁଡ଼ିକ ସାଧାରଣତଃ କଳା ମୁଗୁନିପଥରରେ ନିର୍ମିତ ଉଚ୍ଚକୋଟୀର କଳାଶୈଳୀର ଅଟେ। ତେବେ, ମନ୍ଦିର ମଧ୍ୟରେ ରହିଥିବା ଅଳ୍ପକେତେକ ଏହି ପ୍ରକାର କୃତି ନିଖୁଣ ଅବସ୍ଥାରେ ରହିଥିବାବେଳେ ଅଧିକାଂଶ ଭଗ୍ନ।

ଗୋ, ଗୋପୀ ପରିବେଷ୍ଟିତ ବଂଶୀଧାରୀ କୃଷ୍ଣ 'ଗୋପୀନାଥ' ଭାବେ ପରିଚିତ ହୁଅନ୍ତି। ଏଠାରେ ସେ ତ୍ରିଭଙ୍ଗୀ ଠାଣିରେ ଦଣ୍ଡାୟମାନ ହୋଇଥିବାବେଳେ ତା'ଙ୍କ ପ୍ରଚ୍ଛଦରେ ଏକ ଛନ୍ଦମୟ (କଦମ୍ବ) ବୃକ୍ଷ, ପାଦାସନ ତଳେ ଗୋଗୋଷ୍ଠ, ଗୋପାଳ ବାଳକ ଓ ଦୁଇ ପାର୍ଶ୍ୱରେ ଅଷ୍ଟପଟ୍ଟମହିଷୀ କିମ୍ବା ପରିଚାରିକାଙ୍କ ସହିତ ରୁକ୍ମିଣୀ ଓ ସତ୍ୟଭାମା, ଉଭା ହୋଇଥାନ୍ତି। ଏହା ସହିତ ପାଦ ନିକଟରେ ଗରୁଡ଼ ଯୋଡ଼ହସ୍ତରେ ଉପସ୍ଥିତଥିବା ଦେଖାଯାଏ। ଏଠାରେ ଗୋପୀନାଥଙ୍କ ମସ୍ତକରେ ସୁଉଚ୍ଚ କିରୀଟମୁକୁଟ, କଣ୍ଠରେ କୌସ୍ତୁଭ, ରତ୍ନହାର ଆଜାନୁ ଲମ୍ବିତ ବନମାଳା ଓ ସ୍କନ୍ଧରେ ଉପବିତ ସମେତ ଶରୀରରେ ଉଚ୍ଚକୋଟୀର ପାରମ୍ପରିକ ବସ୍ତ୍ରାଳଙ୍କାର ଏବଂ ପାଦରେ କମନୀୟ ପାଦୁକା ପରିଧାନ କରିଥାଆନ୍ତି। ଏହା ସହିତ ମୂର୍ତ୍ତିର ପ୍ରଚ୍ଛଦରେ ମକରତୋରଣ ଓ ଗନ୍ଧର୍ବ-ଅପ୍ସରାଙ୍କ ମୂର୍ତ୍ତି ମଧ ଉତ୍କୀର୍ଣ୍ଣ ହୋଇଥାଏ।

ପୁରୀ, ଖୋର୍ଦ୍ଧା ଓ କଟକ ଜିଲ୍ଲାରେ ସର୍ବାଧିକ ଗୋପୀନାଥଙ୍କ ପ୍ରତିମା ଦେଖିବାକୁମିଳେ। ଏହାମଧ୍ୟରେ ହୀରାପୁର, ପୁବାଶାସନ, ବାଲିଅନ୍ତା, ବାଗେଶ୍ୱରପୁର, ଗଣେଶ୍ୱରପୁର,

ଜାନକୀଦେଈପୁର, ଦାଣ୍ଡମୁକୁନ୍ଦପୁର, ସରକଣା, ପୁରୁଣାଶ୍ୱେତାଙ୍ଗ, ସୋମେଶ୍ୱରପୁର, ସମେତ ପ୍ରାଚୀନଦୀ ଅବବାହିକାର ଭିଙ୍ଗାରପୁର, ଅର୍ନ୍ତବେଦୀମଠ, ବରାହପୁର, କୁରାଙ୍ଗଶାସନ, ମଣିକର୍ଣ୍ଣିକା, ନିଭରଣ ଓ ପାଣ୍ଡବକୁଦର ମୂର୍ତ୍ତିଗୁଡ଼ିକ ଉଲ୍ଲେଖଯୋଗ୍ୟ। ଏହା ବ୍ୟତୀତ ଯାଜପୁର ଓ ଧର୍ମଶାଳାରେ ମଧ୍ୟ ଗୋପୀନାଥଙ୍କ ପ୍ରତିମା ରହିଥିବାବେଳେ ବାଲେଶ୍ୱର ଜିଲ୍ଲାର ଖୀରଚୋରା-ଗୋପୀନାଥ ପ୍ରଖ୍ୟାତ ଅଟନ୍ତି। ବିଭିନ୍ନ ସ୍ଥାନରୁ ସଂଗୃହୀତ ରାଜ୍ୟ ସଂଗ୍ରାହଳୟରେ ତିନୋଟି ଗୋପୀନାଥ ମୂର୍ତ୍ତି ରହିଛି।

ମନ୍ଦିର ଗାତ୍ରରେ ଥିବା ଆବରଣଦେବତା ମଧ୍ୟରେ ଗୋପୀନାଥ ମୂର୍ତ୍ତିଗୁଡ଼ିକର ଉପସ୍ଥାପନା ଶୈଳୀ ଉପରୋକ୍ତ ଅର୍ଚ୍ଚାବିଗ୍ରହ ଠାରୁ ଅନେକାଂଶରେ ଭିନ୍ନ। ଭୁବନେଶ୍ୱର ଚିତ୍ରକାରିଣୀ ମନ୍ଦିର ଗାତ୍ରର ରଚନାରେ ବଂଶୀଧାରୀ କୃଷ୍ଣ ଛନ୍ଦିତ ପାଦରେ ଏକ କୁଶନଆସନ ଉପରେ ବସିଥିବାବେଳେ ତାଙ୍କ ଦୁଇ ପାର୍ଶ୍ୱରେ ଚାମରଧାରିଣୀ ଗୋପୀ ଓ ଗୋବତ୍ସମାନଙ୍କୁ ଦେଖିବାକୁମିଳେ। ନିମାପଡ଼ା ନିକଟ ବିଷ୍ଣୁପୁରର ଏକ ମୂର୍ତ୍ତିରେ ବଂଶୀଧାରୀ କୃଷ୍ଣ ତ୍ରିଭଙ୍ଗରେ ଦଣ୍ଡାୟମାନ ହୋଇଥିବାବେଳେ ତା'ଙ୍କ ଦୁଇ ପାର୍ଶ୍ୱରେ ରୁକ୍ମିଣୀ ଓ ସତ୍ୟଭାମାଙ୍କ ଦୁଇ କ୍ଷୁଦ୍ର ପିତୁଳା ସ୍ଥାନିତ ହୋଇଛି। ଏହା ବ୍ୟତୀତ ଉଭୟ ପାର୍ଶ୍ୱରେ ଅଠରଜଣ ସୁନ୍ଦରୀ ଗୋପାଙ୍ଗନା ଚାମର ଓ ଅନ୍ୟାନ ସେବା ଉପକରଣ ଧାରଣ କରି ବିଭିନ୍ନ ଭଙ୍ଗୀରେ ଉଭା ହୋଇଛନ୍ତି। କିଷନପୁର, ଘଟେଶ୍ୱରମନ୍ଦିର, ଗୋପୀନାଥ ପ୍ରତିମାର ଉତ୍‌କୀର୍ଣ୍ଣ ଶୈଳୀ ରୁକ୍ଷ। ଏଠାରେ ତ୍ରିଭଙ୍ଗରେ ଦଣ୍ଡାୟମାନ ବଂଶୀଧାରୀ କୃଷ୍ଣଙ୍କ ସହିତ ଗୋ ଓ ଗୋପୀକାଙ୍କ ପିତୁଳାଗୁଡ଼ିକ ସଂକ୍ଷିପ୍ତରେ ଉପସ୍ଥାପିତ ହୋଇଛି।



ଗୋପୀନାଥ



କୃଷ୍ଣବିଷ୍ଣୁ

ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର

କୃଷ୍ଣ, ବିଷ୍ଣୁଙ୍କ ମିଳିତ ପ୍ରତିମା ଓଡ଼ିଶାରେ ମାତ୍ର ଦୁଇଟି ରହିଛି। ଯାଜପୁରର ଧର୍ମଶାଳାରୁ ସଂଗୃହୀତ ପ୍ରଥମ ପ୍ରତିମାଟି ଓଡ଼ିଶାର ରାଜ୍ୟ ସଂଗ୍ରହାଳୟର ସମ୍ପତି ହୋଇଥିବାବେଳେ ଅନୁରୂପ ଏକ ମୂର୍ତ୍ତି ପୁରୀର ଜଗନ୍ନାଥବଲ୍ଲଭ ମଠରେ ଦେଖିବାକୁ ମିଳେ। ରାଜ୍ୟ ସଂଗ୍ରହାଳୟର ମନୁଷ୍ୟାକୃତି ମୂର୍ତ୍ତିଟିରେ ଦେବତା ବିଷ୍ଣୁଙ୍କ ଭଳି ସମଭଙ୍ଗରେ ଦଣ୍ଡାୟମାନ ହେବା ସହିତ କୃଷ୍ଣଙ୍କ ଭଳି ଦକ୍ଷିଣପାଦ ବାମପାଦ ଉପରେ ଛନ୍ଦିତ ଅବସ୍ଥାରେ ରଖିଛନ୍ତି। ତା'ଙ୍କ ଚର୍ତୁଭୁଜରୁ ଉପର ଦୁଇ ହସ୍ତରେ ବିଷ୍ଣୁଙ୍କ ଆୟୁଧ ଚକ୍ର ଓ ଶଙ୍ଖ ଧାରଣକରି ମୁଖ୍ୟ ଦୁଇ ହସ୍ତରେ କୃଷ୍ଣଙ୍କ ଭଳି ବଂଶୀବାଦନ କରୁଛନ୍ତି। କିନ୍ତୁ ମୂର୍ତ୍ତିଟିରେ ବଂଶୀଟି ଚ୍ୟୁତ ହୋଇପଡ଼ିଛି। ଏହି ଯୁଗ୍ମମୂର୍ତ୍ତିର ମସ୍ତକରେ କିରୀଟମୁକୁଟ ଦେହରେ ବିଷ୍ଣୁ ଓ କୃଷ୍ଣଙ୍କ ପାରମ୍ପରିକ ବସ୍ତାଳଙ୍କାର ଦେଖିବାକୁ ମିଳେ। ମୂର୍ତ୍ତି ନିମ୍ନଭାଗ ଦୁଇପାର୍ଶ୍ୱ ବିଶ୍ୱପଦ୍ମ ଉପରେ ଦଣ୍ଡାୟମାନ ଚରିନାରୀ ପ୍ରତିମା ଲକ୍ଷ୍ମୀ, ସରସ୍ୱତୀ, ରୁକ୍ମିଣୀ ଏବଂ ସତ୍ୟଭାମା ବୋଲି ଅନୁମାନ କରାଯାଉଥିବାବେଳେ ଚତୁଃପାର୍ଶ୍ୱରେ ସ୍ଥାନିତ ହୋଇଥିବା ଦଶାବତାର ପିଢ଼ୁଳା ଏହି ରଚନାର ଅନ୍ୟ ଏକ ବିଶେଷତ୍ୱ ଅଟେ। ଏହା ବ୍ୟତୀତ ମୂର୍ତ୍ତିର ପାଦାସନ ନିମ୍ନରେ ଗୋଗୋଷ୍ଠ ଓ ମୂର୍ତ୍ତିର ପ୍ରଚ୍ଛଦରେ ମକରତୋରଣ ଓ ମଣ୍ଡନଧର୍ମୀ ପିଢ଼ୁଳାମାନ ସ୍ଥାନିତ ହୋଇଛି। କଳା ମୁଗୁନିପଥର ନିର୍ମିତ କୃତିଟି ଖ୍ରୀ:୧୨ଶ-୧୩ଶ ଖ୍ରୀଷ୍ଟାବ୍ଦର ହୋଇଥିବାବେଳେ ଏହାର ଉଚ୍ଚତା ପ୍ରାୟ ୧.୨୭ ମିଟର ଅଟେ।





ବିଷ୍ଣୁଙ୍କ ସହିତ, ଭୂଦେବୀ, ଶ୍ରୀଦେବୀ,
କେନ୍ଦୁଲି, ପ୍ରାଚୀନଦୀ ଅବବାହିକା



ଲକ୍ଷ୍ମୀ ନାରାୟଣ, ଚଉରାଶି

# ବୈଷ୍ଣବ ତ୍ରିମୂର୍ତ୍ତି: ଅନନ୍ତ, ବାସୁଦେବ ଓ ଏକନଂଶା

ଭାଗବତ ପୁରାଣର ତିନି ମୁଖ୍ୟ ଦେବତା ଶଙ୍କର୍ଷଣ, ବାସୁଦେବ ଏବଂ ଏକନଂଶାଙ୍କ ପୂଜାର ପରମ୍ପରା ଭାରତରେ ବହୁ ପ୍ରାଚୀନ କାଳରୁ ପ୍ରଚଳିତ ଥିବା ଜଣାଯାଏ। ଖ୍ରୀଷ୍ଟପୂର୍ବ ୨ୟ ଓ ୧ମ ଶତାବ୍ଦୀରେ ନିର୍ମିତ ଏହି ଦେବତାମାନଙ୍କ ପ୍ରସ୍ତର ପ୍ରତିମା ପାକିସ୍ତାନର କରାଚୀ ଓ ପେଶୱାର ସଂଗ୍ରହାଳୟରେ ରହିଛି। ଏହା ବ୍ୟତୀତ ଉତ୍ତରଭାରତର ଲକ୍ଷ୍ନୌ, ପାଟ୍‌ନା, ଚଣ୍ଡୀଗଡ଼ ଓ ମଥୁରା ସଂଗ୍ରହାଳୟରେ ମଧ୍ୟ ଏହି ମୂର୍ତ୍ତିମାନଙ୍କ ପ୍ରତ୍ନାବଶେଷ ଦେଖିବାକୁମିଳେ। କିନ୍ତୁ, ଓଡ଼ିଶାରେ ଏହି ଉପାସନା ମଧ୍ୟଯୁଗରେ ହିଁ ପ୍ରଚଳିତ ହୋଇଥିବା ଜଣାଯାଏ। ତେବେ, କେତେକ ଅଭିଲେଖ ଓ ଏହି ତ୍ରିମୂର୍ତ୍ତିଙ୍କ ଉପାସ୍ଥାପନା ଶୈଳୀକୁ ଅନୁଧ୍ୟାନ କରି ଗବେଷକମାନେ ମତ ଦିଅନ୍ତି ଯେ, ପ୍ରଥମେ ଏଠାରେ କେବଳ ଅନନ୍ତ ଓ ବାସୁଦେବଙ୍କ ପୂଜା ପ୍ରଚଳିତ ଥିଲା। ପରବର୍ତ୍ତୀ ପର୍ଯ୍ୟାୟରେ ଏମାନଙ୍କ ସହିତ ଏକନଂଶାଙ୍କୁ ସାମିଲ୍ କରାଯାଇଛି। ପୁରୀର ଶ୍ରୀମନ୍ଦିର ମଧ୍ୟରେ ଅଧିଷ୍ଠିତ ଦାରୁଦେବତା ବଳଭଦ୍ର, ସୁଭଦ୍ରା ଓ ଶ୍ରୀ ଜଗନ୍ନାଥ ମଧ୍ୟ ଏମାନଙ୍କ ରୂପାନ୍ତର ବୋଲି ବିଦ୍ୱାନମାନେ ମତ ଦିଅନ୍ତି। ପ୍ରଥମାବସ୍ଥାରେ ଗୋଟିଏ ସିଂହାସନ ଉପରେ ଶିବଲିଙ୍ଗ, ମହିଷମର୍ଦ୍ଦିନୀ ଦୁର୍ଗା ଓ ଶ୍ରୀଜଗନ୍ନାଥଙ୍କ ଆଦ୍ୟରୂପ ଏକତ୍ର ପୂଜା ପ୍ରଚଳନ ଥିବା ପ୍ରତ୍ନତାତ୍ତ୍ୱିକ ପ୍ରମାଣ ରହିଛି। ଏହି ପ୍ରକାର ମୂର୍ତ୍ତି ପୁରୀର ଶ୍ରୀ ଜଗନ୍ନାଥ ମନ୍ଦିର ଓ କୋଣାର୍କର ସୂର୍ଯ୍ୟ ମନ୍ଦିରରେ ଦେଖିବାକୁମିଳେ। ପରବର୍ତ୍ତୀ ସମୟରେ ଏହି ତିନି ପ୍ରତିମାଙ୍କୁ ଏକ ସମଶୈଳୀରେ ପ୍ରସ୍ତୁତ କରାଯାଇଛି; ଯାହାକି ବଳଭଦ୍ର ସୁଭଦ୍ରା ଓ ଜଗନ୍ନାଥଙ୍କ ଦାରୁବିଗ୍ରହ ଅଟେ। ଏହି ତିନି ଦେବତା ବାସ୍ତବରେ ଶିବ, ଶକ୍ତି ଓ ବିଷ୍ଣୁ ହେଲେ ହେଁ ଏମାନେ ସମସ୍ତେ ବୈଷ୍ଣବ ପରମ୍ପରା ସହିତ ସାମିଲ୍ ହୋଇପଡ଼ିଛନ୍ତି।



ଅନନ୍ତ, ଏକନଂଶା ଓ ବାସୁଦେବ ମୂର୍ତ୍ତି, ତୁରିନ୍ତରା

ଭୁବନେଶ୍ୱରର ଅନନ୍ତ-ବାସୁଦେବ ମନ୍ଦିର ମଧ୍ୟରେ ଅନନ୍ତ, ଅର୍ଥାତ୍ ଶଙ୍କର୍ଷଣ ବା ବଳଭଦ୍ର, ବାସୁଦେବ ଅର୍ଥାତ୍ ବିଷ୍ଣୁ ଏବଂ ଏକନଂଶା ବା ଯୋଗମାୟା ସୁଭଦ୍ରାଙ୍କ ମୂର୍ତ୍ତି ପ୍ରତିଷ୍ଠିତ ହୋଇଛି। ସେହିପରି ଲିଙ୍ଗରାଜ ମନ୍ଦିର ପରିସରରେ ଥିବା ଅନନ୍ତେଶ୍ୱର ମନ୍ଦିର ମଧ୍ୟରେ ଏହି ପ୍ରକାର ତ୍ରିମୂର୍ତ୍ତିଙ୍କୁ ପୂଜାର୍ଚ୍ଚନା କରାଯାଏ। ଭୁବନେଶ୍ୱର ନିକଟ ତୁରିନ୍ତରା ଗ୍ରାମରେ ଏହି ତିନିଦେବତାଙ୍କ ସୁନ୍ଦର ପ୍ରତିମା ଏକ ଭଗ୍ନଇଟା ମନ୍ଦିର ମଧ୍ୟରେ ଆବିଷ୍କୃତ ହୋଇଥିଲା। ବର୍ତ୍ତମାନ ଏହି ମୂର୍ତ୍ତିଗୁଡ଼ିକ ନବନିର୍ମିତ ମନ୍ଦିର ମଧ୍ୟରେ ପୂଜା

ପାଉଛନ୍ତି। ତେବେ, ଏହି ସମସ୍ତ କୃତି ମଧ୍ୟଯୁଗର ବୋଲି ପ୍ରତିୟମାନ ହୁଏ। ଏହି ଦେବତାମାନଙ୍କ ମୂର୍ତ୍ତିତତ୍ତ୍ୱ ଏହି ଯେ, ଅନନ୍ତ ହସ୍ତରେ ହଳ, ମୂଷଳ ଓ ଗଦା ଧାରଣ କରିଥିବାବେଳେ ବାସୁଦେବ ଶଙ୍ଖ,ଚକ୍ର,ଗଦା ଓ ପଦ୍ମ ଧାରଣ କରିଥିବା ଦେଖାଯାଏ। ଏକାନଂଶା ସାଧାରଣତଃ କେବଳ ଏକ ପଦ୍ମ ଧାରଣା କରିଥିବା ସୂଚନାମିଳେ। ଏହା ବ୍ୟତୀତ ବିଶ୍ୱପଦ୍ମ ଉପରେ ଅନନ୍ତ ଓ ବାସୁଦେବ ସମଭଙ୍ଗରେ ଏବଂ ଏକନଂଶା ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇଥାଆନ୍ତି। ଅନନ୍ତଙ୍କ ମସ୍ତକ ଉପରେ ବାସୁକୀନାଗର ପ୍ରସାରିତ ସପ୍ତଫଣା ଓ ବାସୁଦେବଙ୍କ ପାଦ ନିକଟରେ ଗରୁଡ଼ ଯୋଡ଼ହସ୍ତରେ ଉଭା ହୋଇଥିବା ଦେଖାଯାଏ। ପ୍ରାଚୀନଦୀ ଅବବାହୀକାର ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣବେଳେ ଏହି ପ୍ରକାର ଛୋଟଛୋଟ ମୂର୍ତ୍ତିର କେତେକ ଭଗ୍ନାବଶେଷ ପ୍ରାପ୍ତ ହୋଇଥିଲା।



## ଉତ୍କଳୀୟ ମୂର୍ତ୍ତିକଳାରେ ସୂର୍ଯ୍ୟ

ଭାରତରେ ସୂର୍ଯ୍ୟପୂଜାରେ ପରମ୍ପରା ଅତି ପ୍ରାଚୀନ। ଏପରିକି ଅନେକ ପ୍ରାଗୈତିହାସିକ ଗୁମ୍ଫାରେ ସୂର୍ଯ୍ୟଙ୍କ ଚିତ୍ର ରହିଥିବାବେଳେ ସିନ୍ଧୁସଭ୍ୟତାର କେତେକ ପୂଜିତ ମୋହରରେ ମଧ୍ୟ ତା'ଙ୍କ ସଂକେତ ଦେଖିବାକୁମିଳେ। ବୈଦିକ ଯୁଗରେ ସେ ଆଦିତ୍ୟ ନାମରେ ଖ୍ୟାତ। ବେଦମାନଙ୍କରେ ଆଦିତ୍ୟଙ୍କ ସଂଖ୍ୟା ଭିନ୍ନ ଭିନ୍ନ ହେଲେ ହେଁ ସ୍ଥୂଳତଃ ସେ ଦ୍ୱାଦଶ ସଂଖ୍ୟାରେ ପୂର୍ଣ୍ଣତା ଲାଭକରିଛନ୍ତି। ପୌରାଣିକ ଯୁଗରେ ଶୈବ, ବୈଷ୍ଣବ ଏପରିକି ଶାକ୍ତ ମତବାଦରେ ମଧ୍ୟ ସୂର୍ଯ୍ୟ ଏକ ଉଲ୍ଲେଖଯୋଗ୍ୟ ସ୍ଥାନର ଅଧିକାରୀ। ତେବେ, ବିଷ୍ଣୁଙ୍କ ସହିତ ତା'ଙ୍କ ସମ୍ପର୍କ ଅତି ନିବିଡ଼। ଅନେକ ଧର୍ମଶାସ୍ତ୍ର ଓ ପୁରାଣରେ ବିଷ୍ଣୁ ଓ ସୂର୍ଯ୍ୟ ଏକ ଏବଂ ଅଭିନ୍ନ ବୋଲି ଉଲ୍ଲେଖ କରାଯାଇଛି। ଏହି ପରିପ୍ରେକ୍ଷୀରେ ସୂର୍ଯ୍ୟନାରାୟଣ ଓ ବିରଞ୍ଚିନାରାୟଣ ନାମର ସୃଷ୍ଟି। ବୈଦିକ ଓ ପୌରାଣିକ ଆଖ୍ୟାନ ଅନୁଯାୟୀ ସୂର୍ଯ୍ୟ ଅଦିତିଙ୍କ ପୁତ୍ର ହୋଇଥିବାରୁ ତାଙ୍କ ନାମ ଆଦିତ୍ୟ। ପ୍ରଥମେ ଉଷା ସୂର୍ଯ୍ୟଙ୍କ ପତ୍ନୀ ଥିଲେ। ପରବର୍ତ୍ତୀ ସମୟରେ ପ୍ରତ୍ୟୁଷା, ରଜନୀ, ରକ୍ଶୁଭା, ଛାୟା ଓ ଶୁଭ୍ରକେଶାଙ୍କ ନାମ ବିଭିନ୍ନ ରଚନାରେ ଦେଖିବାକୁ ମିଳେ। ସୂର୍ଯ୍ୟଙ୍କର ଚାରିପୁତ୍ର ହେଉଛନ୍ତି; ରେବନ୍ତ, ଯମ ଓ ଦୁଇ ମନୁ ତେବେ, ଶନି ଛାୟାଙ୍କ ଗର୍ଭରୁ ଜାତ ହୋଇଥିବାରୁ 'ସୂର୍ଯ୍ୟପୁତ୍ର' ଅଟନ୍ତି। ଏହା ବ୍ୟତୀତ ତା'ଙ୍କ ଦୁଇ ଅନୁଚର ହେଲେ ଦଣ୍ଡି ଓ କୁଣ୍ଡି ବା ଦଣ୍ଡି ଓ ପିଙ୍ଗଳ। ତାଙ୍କ ସାରଥୀ ଅରୁଣ ସପ୍ତ ଅଶ୍ୱଯୁକ୍ତ ଏକଚକ୍ର ବିଶିଷ୍ଟ ରଥକୁ ଚାଳନ କରିନ୍ତି। ପ୍ରାଚୀନ ଗ୍ରନ୍ଥମାନଙ୍କରେ ଏହି ଅଶ୍ୱର ସଂଖ୍ୟା ଚାରି ହୋଇଥିବାବେଳେ ପରବର୍ତ୍ତୀ ପର୍ଯ୍ୟାୟରେ ଏମାନଙ୍କ ସଂଖ୍ୟା ସାତକୁ ବୃଦ୍ଧି ପାଇଛି। ସୂର୍ଯ୍ୟଙ୍କ ପ୍ରିୟପୁଷ୍ପ ପଦ୍ମ ଓ କେତକୀ। ତା'ଙ୍କ ପରିଧାନ ଶ୍ୱେତବସ୍ତ୍ର, ପ୍ରିୟ ଭୋଗ ଅନ୍ନ, ଘୃତ ଓ ଶର୍କରା। ଉତ୍ତରଭାରତୀୟ ସୂର୍ଯ୍ୟପୂଜା ପରମ୍ପରାରେ ଇରାନୀ ଧର୍ମଧାରଣାର ବିଳିଷ୍ଟ ପ୍ରଭାବ ଦେଖାଯାଏ। ଗବେଷକଙ୍କ ମତରେ ଇରାନରୁ ଆସିଥିବା 'ମାଗ' ସୂର୍ଯ୍ୟପୂଜକ ବା ପୁରୋହିତମାନେ ଭାରତରେ ଏହି ପୂଜାର ଏକ ଧାରା ପ୍ରଚଳନ କରିଥିଲେ। ଏଣୁ ଉତ୍ତରଭାରତର ଅଧିକାଂଶ ସୂର୍ଯ୍ୟପ୍ରତିମାରେ ବିଦେଶୀ ଇରାନୀ ପୋଷାକ ଦେଖିବାକୁମିଳେ। ଏପରିକି ଓଡ଼ିଶାର ସୂର୍ଯ୍ୟ ମୂର୍ତ୍ତିମାନଙ୍କରେ ମଧ୍ୟ ଏହି ପ୍ରଭାବ ସ୍ପଷ୍ଟ। ମୂର୍ତ୍ତିକଳାରେ ଏହି ବିଦେଶୀ ପୋଷାକ ହେଲା; ବକ୍ଷଃରେ ଧାତବ ସାଞ୍ଜୁ ଓ ପାଦରେ ମୋଜା। ସୂର୍ଯ୍ୟଙ୍କ ପ୍ରତିମା ପୂଜା ବ୍ୟତୀତ ତା'ଙ୍କ ପ୍ରତୀକ 'ପଦ୍ମ' ପୂଜାର ମଧ୍ୟ ପରମ୍ପରା ପ୍ରଚଳିତ ଅଛି।

ସୂର୍ଯ୍ୟଙ୍କ ସହିତ ଅଧିକାଂଶ ସ୍ଥଳେ ସପ୍ତାଶ୍ୱଯୁକ୍ତ ଏକଚକ୍ର ରଥ କିମ୍ବା ତା'ର ସଂକେତ ରହୁଥିବାବେଳେ ଅଳ୍ପ କେତେକ ମୂର୍ତ୍ତି ଅଶ୍ୱ ଓ ରଥ ବିହୀନ ହୋଇଥାଏ । ଏହି ପ୍ରକାର ଗଠନା ଆସନ କିମ୍ବା ସ୍ଥାନକ ଭଙ୍ଗୀରେ ଦେଖାଯାଏ । ସୂର୍ଯ୍ୟ ମୂର୍ତ୍ତିଗୁଡ଼ିକ ସାଧାରଣତଃ ଦ୍ୱିଭୁଜ ବିଶିଷ୍ଟ ଏବଂ ହସ୍ତରେ ସେ ଲମ୍ବ ବୃନ୍ତଯୁକ୍ତ ପ୍ରସ୍ଫୁଟିତ ପଦ୍ମ ଧାରଣ କରିଥାଆନ୍ତି । ତା'ଙ୍କ ମୂର୍ତ୍ତିରେ ବିଦେଶୀ ପୋଷାକର ବିଶେଷତ୍ୱ ହେଉଛି; ମସ୍ତକରେ ଟୋପୀଭଳି ମୁକୁଟ, ବକ୍ଷଃର ସାଞ୍ଜୁ କିମ୍ବା ଦେହରେ ଲମ୍ବକୁର୍ତ୍ତା ଏବଂ ପାଦରେ ପୂରା ମୋଜା ସହିତ ଯୋତା । ଏହା ବ୍ୟତୀତ ସେ ଦେହରେ କେତେକ ଭାରତୀୟ ଅଳଙ୍କାର ପରିଧାନ କରିଥାଆନ୍ତି । ନିଆଳିର ଶୋଭନେଶ୍ୱର ମନ୍ଦିର ଓ ବୁଢ଼ସାପୁର ନିକଟ ବଟେଶ୍ୱର ଶିବମନ୍ଦିର ଗାତ୍ରରେ ପଦ୍ମାସନରେ ବସିଥିବା ଏହି ପ୍ରକାର ସୂର୍ଯ୍ୟ ପ୍ରତିମା ରହିଛି । କୋଣାର୍କର ନବଗ୍ରହଙ୍କ ମଧ୍ୟରେ ଥିବା ରବି ଓ ଅନ୍ୟ ସ୍ଥାନର ଗ୍ରହମାନଙ୍କ ମଧ୍ୟରେ ରବିଙ୍କ ସହିତ ଅଶ୍ୱ ଓ ରଥର ସଂକେତ ଦେଖିବାକୁ ମିଳେନାହିଁ । ସେହିପରି ଭୁବନେଶ୍ୱର ପରଶୁରାମେଶ୍ୱର ମନ୍ଦିର, ଲକ୍ଷ୍ମଣେଶ୍ୱର ମନ୍ଦିର, ମୁଖଲିଙ୍ଗମ୍‌ର ମଧୁକେଶ୍ୱର ମନ୍ଦିରର ଆବରଣଦେବତା ଓ ବାଲେଶ୍ୱର ଜିଲ୍ଲାର ଛତ୍ରପଦାଠାରେ ଥିବା ସୂର୍ଯ୍ୟଙ୍କ ଦଣ୍ଡାୟମାନ ମୂର୍ତ୍ତିଗୁଡ଼ିକ ମଧ୍ୟ ରଥ ଓ ଅଶ୍ୱ ବିହୀନ ଅଟେ । ମୁଖଲିଙ୍ଗମ୍, ମଧୁକେଶ୍ୱର ମନ୍ଦିରରେ ଥିବା ଅନ୍ୟ ଏକ ସୂର୍ଯ୍ୟମୂର୍ତ୍ତିର ଦେହରେ ବିଦେଶୀ ପୋଷାକ ଦେଖାଯାଏନାହିଁ । ଏହା ଦକ୍ଷିଣଭାରତୀୟ ମୂର୍ତ୍ତିତତ୍ତ୍ୱର ପ୍ରଭାବବୋଲି ଜଣାଯାଏ ।

ଓଡ଼ିଶାରେ ସୂର୍ଯ୍ୟଙ୍କ ରଥାରୂଢ଼ ପ୍ରତିମା ସାଧାରଣତଃ ତିନି ପ୍ରକାର । ପ୍ରଥମ ପ୍ରକାର ଗଠନାରେ ପଦ୍ମାସନରେ ବସିଥିବା ସୂର୍ଯ୍ୟଙ୍କ ଆସନ ତଳେ ସପ୍ତାଶ୍ୱଯୁକ୍ତ ରଥକୁ ସାରଥୀ ଅରୁଣ ଚଳାଉଥିବା ଦେଖାଯାଏ । ଦ୍ୱିତୀୟ ପ୍ରକାର ଗଠନାରେ; ମୂର୍ତ୍ତିର ନିମ୍ନ ଭାଗରେ ଥିବା ସାରଥୀ, ରଥ ଓ ଅଶ୍ୱ ଅପରିବର୍ତ୍ତିତ ରହି ସୂର୍ଯ୍ୟ ତା'ଉପରେ ସମଭଙ୍ଗରେ ଦଣ୍ଡାୟମାନ ହୋଇଥାଆନ୍ତି । ତୃତୀୟ ପ୍ରକାର ଶୈଳୀରେ; ରଥ ମଧ୍ୟରେ ସୂର୍ଯ୍ୟଙ୍କ ଆଣ୍ଠୁ ପର୍ଯ୍ୟନ୍ତ ଲୁଚିଯାଇଥିବାବେଳେ ଊର୍ଦ୍ଧ୍ୱଭାଗ ଅର୍ଥାତ୍ ଶରୀର ଦୁଇତୃତୀଆଂଶ ମାତ୍ର ଦୃଶ୍ୟମାନ ହୋଇଥାଏ ।



ସୂର୍ଯ୍ୟ, ବୈତାଳ ଦେଉଳ, ଭୁବନେଶ୍ୱର



ସୂର୍ଯ୍ୟ ବାରାହୀ ମନ୍ଦିର, ଚଉରାଶି

ଦ୍ୱିତୀୟ ଓ ତୃତୀୟପ୍ରକାରର କେତେକ ରଚନାରେ ସୂର୍ଯ୍ୟଙ୍କ ସହିତ ତାଙ୍କ ଦୁଇ ପତ୍ନୀ ଉଷା ଓ ପ୍ରତ୍ୟୁଷା ଧର୍ନୁବାଣ ବିଧକରି ଅନ୍ଧକାରରୂପୀ ଅସୁରକୁ ବିନାଶ କରୁଥିବା ଦେଖାଯାଏ। ଅନ୍ୟ କେତେକ ରଚନାରେ ସୂର୍ଯ୍ୟଙ୍କ ଦୁଇ ପାର୍ଶ୍ୱରେ ଦଣ୍ଡି ଓ କୁଣ୍ଡି କିମ୍ବା ପରିଚାରିକାମାନେ ଛିଡା ହୋଇଥାଆନ୍ତି। ପ୍ରଥମ ପ୍ରକାର ଆସନ ଭଙ୍ଗୀ ବା ବସିଥିବା ଭଙ୍ଗୀର ରଥାରୂଢ଼ ସୂର୍ଯ୍ୟପ୍ରତିମା ପ୍ରାଚୀନଦୀ ଅବବାହିକାର ଚଉରାଶୀଠାରେ ଥିବା ବାରାହୀ ମନ୍ଦିରର ପାର୍ଶ୍ୱଦେବତା ଭାବେ ରହିଥିବାବେଳେ ଅନ୍ୟ ଏକ ଅନୁରୂପ ପ୍ରତିମା ମୟୂରଭଞ୍ଜ ଜିଲ୍ଲା ଖିଚିଂ ସଂଗ୍ରହାଳୟରେ ଦେଖିବାକୁମିଳେ। ସମଭଙ୍ଗରେ ଦଣ୍ଡାୟମାନ ସୂର୍ଯ୍ୟମୂର୍ତ୍ତିର ନିମ୍ନରେ ସାରଥୀ ଓ ସପ୍ତାଶ୍ୱଯୁକ୍ତ ରଥର ସଂକେତ ଥିବା ରଚନା ସଂଖ୍ୟା ସର୍ବାଧିକ। ଏହି ପ୍ରକାର ଦୁଇଟି ପ୍ରାଚୀନ ସୂର୍ଯ୍ୟମୂର୍ତ୍ତି ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ପରିସର ଓ ଗୋଟିଏ ଭବାନୀଶଙ୍କର ମନ୍ଦିର ପରିସରରେ ରହିଛି। ଅନୁରୂପ ଶୈଳୀର ମଧ୍ୟଯୁଗୀୟ କେତେକ ପ୍ରତିମା ଖିଚିଂ, ବାଲେଶ୍ୱରଜିଲ୍ଲାର ସେରଗଡ଼, ପ୍ରାଚୀ ଅବବାହିକାର ମୋଟିଆ ଓ ବାଲୁଙ୍କେଶ୍ୱର ମନ୍ଦିରରେ ଦେଖାଯାଏ।

ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ପରିସରରେ ସୂର୍ଯ୍ୟଙ୍କର ଏକ ସ୍ୱତନ୍ତ୍ର ପ୍ରକାର 'ରଥାରୂଢ଼ ମୂର୍ତ୍ତି' ଦେଖିବାକୁମିଳେ। ଅନ୍ୟ ରଚନାରେ ସୂର୍ଯ୍ୟଙ୍କ ଆସନ ତଳେ ଅଶ୍ୱ ଓ ରଥର ସଙ୍କେତ ରହୁଥିବାବେଳେ ଏଠାରେ ରଥ ମଧ୍ୟରେ ସୂର୍ଯ୍ୟଦେବତା ଦୁଇ ହସ୍ତରେ ପଦ୍ମ ଧାରଣକରି ସମଭଙ୍ଗରେ ଦଣ୍ଡାୟମାନ ହୋଇଛନ୍ତି। ରଥର ଉପର ଭାଗରେ କଳସ ଓ ତିନି ପଟଳର ପୀଢ଼, ମଧ୍ୟଭାଗରେ ରଥର ଖୁଣ୍ଟ, ଝରାବଳୀ ଓ କୀର୍ତ୍ତିମୁଖଯୁକ୍ତ ଆଡୁଆଦଣ୍ଡ ଏବଂ ତୋରଣ ରହିଛି। ନିମ୍ନ ଭାଗରେ ରଥର ପୀଠ ଉପରେ ଅରୁଣ ଆସନ ଗ୍ରହଣକରି ଚାରିଅଶ୍ୱଯୁକ୍ତ ରଥକୁ ଚାଳନ କରୁଛନ୍ତି। ଏହି ରଥର ମଧ୍ୟଭାଗର 'ଏକଚକ୍ର' ବ୍ୟତୀତ ଦୁଇ ପାର୍ଶ୍ୱରେ ମଧ ଚକ୍ର ସଂଯୋଗ ହୋଇଛି। ଚାରି ଅଶ୍ୱଯୁକ୍ତ ଏହି ବିରଳ କୃତିଟି ପ୍ରାଚୀନ ଅର୍ଥାତ୍ ଖ୍ରୀ: ୬ଷ-୭ମ ଶତାବ୍ଦୀର ହୋଇଥିବା ସମ୍ଭବ।



ରଥାରୂଢ଼ ସୂର୍ଯ୍ୟମୂର୍ତ୍ତି
ଲିଙ୍ଗରାଜ ମନ୍ଦିରପରିସର,
ଭୁବନେଶ୍ୱର

ରଥ ମଧ୍ୟରେ ସୂର୍ଯ୍ୟଙ୍କ ଆଣ୍ଠୁଯାଏଁ ଲୁଚିଯାଇଥିବା ଶୈଳୀର ପ୍ରତିମା ପ୍ରାଚୀନ କାଳରୁ ଉତ୍ତରଭାରତ ସମେତ ଓଡ଼ିଶାରେ ମଧ୍ୟ ଲୋକପ୍ରିୟ ଥିଲା। ଏହି ପ୍ରକାର ମୂର୍ତ୍ତି ମନ୍ଦିରଗାତ୍ର ବ୍ୟତୀତ ଖୋଲାଭାବେ ମଧ ଦେଖିବାକୁମିଳେ। ଭୁବନେଶ୍ୱରର ବୈତାଳଦେଉଳ ସମ୍ମୁଖ ବକ୍ରମସ୍ତକ ଉପରେଥିବା ଲାଲ କନ୍ଦାପଥରରେ ଉତ୍କୀର୍ଣ୍ଣ ପ୍ରତିମାଟି ଆକର୍ଷଣୀୟ ଅଟେ। ଏଠାରେ ସୂର୍ଯ୍ୟ ଦୁଇ ହସ୍ତରେ ପ୍ରସ୍ଫୁଟିତ ପଦ୍ମ ଧାରଣ କରିଥିବାବେଳେ ତା'ଙ୍କ ମସ୍ତକରେ ଟୋପୀ ସଦୃଶ ମୁକୁଟ ଗଳାରେ ରତ୍ନହାର, କର୍ଣ୍ଣରେ କୁଣ୍ଡଳ, ବକ୍ଷରେ କବଚ, ହସ୍ତରେ କଙ୍କଣ କଟିରେ କଟିସୂତ୍ର ଓ ବସ୍ତ୍ର ଶୋଭାପାଉଛି। ଦୁଇ ପାର୍ଶ୍ୱରେ ତାଙ୍କ ଦୁଇ ପତ୍ନୀ ଉଷା ଓ ପତ୍ୟୁଷା ଓ ଧନୁରେ ଶର ନିକ୍ଷେପକରି ଅନ୍ଧକାରରୂପୀ ଅସୁରକୁ ବିନାଶ ବା ବିତାଡ଼ିତ କରୁଛନ୍ତି। ଏହା ବ୍ୟତୀତ ମୂର୍ତ୍ତିର ଊର୍ଦ୍ଧ୍ୱ ଦୁଇ ପାର୍ଶ୍ୱରେ ଗନ୍ଧର୍ବମାନେ ପୁଷ୍ପମାଳା ଧାରଣକରି ଉଡ୍ଡୀୟମାନ ଭଙ୍ଗୀରେ ରହିଛନ୍ତି। ମୂର୍ତ୍ତିର କଟି ସମ୍ମୁଖରେ ରଥ ଉପରେ ଅରୁଣ ଦକ୍ଷିଣହସ୍ତରେ ଚାବୁକ ଓ ବାମ ହସ୍ତରେ ଘୋଡ଼ାର ଲଗାମ୍ ଧରି ସପ୍ତାଶ୍ୱଯୁକ୍ତ ରଥକୁ ଚାଳନ କରୁଥିବା ଦେଖାଯାଏ। ଏହି କୃତିଟି ଖ୍ରୀ: ୯ମ ଶତାବ୍ଦୀର ଅଟେ।

ଏହି ପ୍ରକାର ଅନ୍ୟ କେତେକ ମୂର୍ତ୍ତିରେ ସୂର୍ଯ୍ୟଙ୍କ ସହିତ ତାଙ୍କ ଦୁଇ ପତ୍ନୀ ପରିବର୍ତ୍ତେ ଦୁଇ ପରିଚାରିକା କିମ୍ବା ଦଣ୍ଡି ଓ କୁଣ୍ଡିଙ୍କ ପିତୁଳା ଦେଖିବାକୁମିଳେ। କେତେକ ରଚନାରେ ଅରୁଣ ଓ ଅଶ୍ୱମାନଙ୍କ ବ୍ୟତୀତ ଅନ୍ୟ ମୂର୍ତ୍ତି ଦେଖାଯାଏ ନାହିଁ। ସୂର୍ଯ୍ୟଙ୍କ ସହିତ ଉଷା ଓ ପ୍ରତ୍ୟୁଷା ରହିଥିବା ମୂର୍ତ୍ତି ଭୁବନେଶ୍ୱର କପିଳେଶ୍ୱର ମନ୍ଦିର ପରିସର, ରାଜ୍ୟ ସଂଗ୍ରହାଳୟ ସମେତ ସିଂହନାଥ ଓ ମୁଖଲିଙ୍ଗମ୍‌ରେ ରହିଛି। ସୂର୍ଯ୍ୟଙ୍କ ଦୁଇ ପାର୍ଶ୍ୱରେ ପରିଚାରକ, ପରିଚାରିକା ରହିଥିବା ରଚନା ପ୍ରାଚୀନଦୀ ଅବବାହିକାର ଲତାହରଣ, ବାଲେଶ୍ୱର ଜିଲ୍ଲାର ସେରଗଡ଼ ଓ ରାୟଗଡ଼ା ନିକଟ ପାଇକପଡ଼ାଠାରେ ଦେଖିବାକୁମିଳେ। ସୂର୍ଯ୍ୟଙ୍କ ସହିତ ଦଣ୍ଡି ଓ କୁଣ୍ଡି ରହିଥିବା ଏକ ରଚନା ଭଦ୍ରକ ନିକଟ କାଉପୁର  ଠାରେ ରହିଛି। ମାହାଙ୍ଗା ନିକଟ ଶୁକ୍ଳେଶ୍ୱରଠାରେ ଥିବା ସୂର୍ଯ୍ୟଙ୍କ ସହିତ ଅରୁଣଙ୍କ ବ୍ୟତୀତ ଅନ୍ୟ କୌଣସି ପିତୁଳା ନାହିଁ। କେତେକ ସ୍ଥଳେ ମୂର୍ତ୍ତିର ଦୁଇ ପାର୍ଶ୍ୱରେ ଉଷା ଓ ପ୍ରତ୍ୟୁଷାଙ୍କ ସହିତ ଅନୁଚର, ଅନୁଚରୀ ମଧ ଦେଖାଯାଆନ୍ତି।

ସୂର୍ଯ୍ୟଙ୍କସହ ତାଙ୍କ ପତ୍ନୀ ଛାୟାଦେବୀ ଥିବା ପୂଜିତ ପ୍ରତିମା ପ୍ରାୟ ଦେଖାଯାଏ ନାହିଁ। ତେବେ,ବଡ଼ମ୍ବା-ନରସିଂହପୁର ନିକଟ ଚମ୍ପେଶ୍ୱର ମନ୍ଦିର ପରିସରରେ ସୂର୍ଯ୍ୟ ଓ ଛାୟାଦେବୀଙ୍କ ଦୁଇଟି ଯୁଗଳ ପ୍ରତିମା ରହିଛି। ଏଠାରେ ସମଭଙ୍ଗରେ ଦଣ୍ଡାୟମାନ ସୂର୍ଯ୍ୟ ଦୁଇ ହସ୍ତରେ କେତେକୀ ଓ ପଦ୍ମ ଧାରଣ କରିଛନ୍ତି। ତାଙ୍କ ଦୁଇ ପାର୍ଶ୍ୱରେ ଧନୁରେ ବାଣ ବିନ୍ଧ କରୁଥିବା ଉଷା ପ୍ରତ୍ୟୁଷାଙ୍କ ସମେତ ଖଡ୍ଗ ଓ ଢ଼ାଲ ଧାରଣ କରିଥିବା ଦୁଇ ପରିଚାରିକା, ଗଣ ଓ ଗର୍ନ୍ଧବ ରହିଥିବାବେଳେ ପ୍ରଚ୍ଛଦରେ ସୁନ୍ଦର ମକରତୋରଣ ଉତ୍କୀର୍ଣ୍ଣ ହୋଇଛି। ସୂର୍ଯ୍ୟଙ୍କ ଆସନ ତଳେ ସାଧାରଣତଃ ଅରୁଣ ସପ୍ତାଶ୍ୱ ଚାଳନ କରୁଥିବାସ୍ଥଳେ ଏଠାରେ ମାତ୍ର ପାଞ୍ଚ ଅଶ୍ୱ ଓ ଦୁଇ ପାର୍ଶ୍ୱରେ ଦୁଇ ଗଣଙ୍କ ପ୍ରତିମା ସ୍ଥାନିତ ହୋଇଛି। ଛାୟାଦେବୀ ବିଶ୍ୱପଦ୍ମ ଉପରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନ ହୋଇ ଦକ୍ଷିଣହସ୍ତରେ ଅଞ୍ଜନପାତ୍ରୀ ଓ ବାମ ହସ୍ତରେ ଦର୍ପଣ ଧାରଣ କରିଛନ୍ତି। ତାଙ୍କ ଦୁଇ ପାର୍ଶ୍ୱରେ ଦୁଇ ପରିଚାରିକା ଉଭା ହୋଇଥିବାବେଳେ ପ୍ରଚ୍ଛଦରେ ଥିବା ମକର ତୋରଣର ଦୁଇ କୋଣରେ ଦୁଇ ପ୍ରସ୍ଫୁଟିତ ପଦ୍ମ ସ୍ଥାନିତ ହୋଇଛି। କଳାଶୈଳୀରୁ ଏହି ବିରଳ କୃତି ଦ୍ୱୟ ଖ୍ରୀ:୧୧ଶ-୧୨ଶ ଶତାବ୍ଦୀର ବୋଲି ଅନୁମାନ କରାଯାଏ।

କୋଣାର୍କ ସୂର୍ଯ୍ୟମନ୍ଦିର ତା'ର କଳା ଓ ସ୍ଥାପତ୍ୟ ନିମନ୍ତେ ବିଶ୍ୱବିଦିତ। ଏହି ମନ୍ଦିରର ବିଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ଆକାର ପ୍ରକାରର ସୂର୍ଯ୍ୟପ୍ରତିମାମାନ ରହିଥିଲା। ମନ୍ଦିର ସହିତ ଅନେକ ପ୍ରତିମା ଭାଙ୍ଗିପଡ଼ିଥିବାବେଳେ ଅନ୍ୟ କେତେକ ମୂର୍ତ୍ତି ଦେଶବିଦେଶର ବିଭିନ୍ନ ସ୍ଥାନକୁ ସ୍ଥାନାନ୍ତରିତ ହୋଇଯାଇଛି। ଶାସ୍ତ୍ରୀୟ ମତରେ ନିର୍ମିତ

ସୂର୍ଯ୍ୟଙ୍କ ବିଭିନ୍ନ ରୂପ ପ୍ରକାଶ କରୁଥିବା ମୂର୍ତ୍ତି ବ୍ୟତୀତ ସୂର୍ଯ୍ୟଙ୍କ ଅଶ୍ୱାରୂଢ଼ ମୂର୍ତ୍ତି ଗୁଡ଼ିକ ଓଡ଼ିଶା କାହିଁକି ଭାରତୀୟ ମୂର୍ତ୍ତିକଳାରେ ଏକ ଉଲ୍ଲେଖଯୋଗ୍ୟ ସ୍ଥାନ ଅଧିକାରକରେ। କୋଣାର୍କର ଦୁଇଟି ଅଶ୍ୱାରୂଢ଼ ମୂର୍ତ୍ତି ମଧ୍ୟରୁ ଗୋଟିଏ ସୂର୍ଯ୍ୟମନ୍ଦିରର ଉତ୍ତରଦିଗର ପାର୍ଶ୍ୱଦେବତା ଭାବେ ଓ ଅନ୍ୟଟି ମହାଗାୟତ୍ରୀ ମନ୍ଦିରର ପାର୍ଶ୍ୱଦେବତା ଭାବେ ଅବସ୍ଥାପିତ। ସୂର୍ଯ୍ୟମନ୍ଦିର ସୂର୍ଯ୍ୟଙ୍କ ଅଶ୍ୱଟି ଲମ୍ଫଦେବା ଭଙ୍ଗୀରେ ରହିଥିବାବେଳେ ମହାଗାୟତ୍ରୀ ମନ୍ଦିରର କୃତିରେ ଅଶ୍ୱଟି ଦଣ୍ଡାୟମାନ ହୋଇଛି। ଦୁଇ ମୂର୍ତ୍ତିର ହସ୍ତ ଓ ଅନ୍ୟକେତେକ ଅଂଶ ବହୁ ଭାବରେ ଭଗ୍ନ। ସୂର୍ଯ୍ୟ ମନ୍ଦିରର ଅଶ୍ୱାରୂଢ଼ ମୂର୍ତ୍ତିକୁ ସୂର୍ଯ୍ୟଙ୍କ 'ହରିଦାଶ୍ୱ' ରୂପ ଭାବେ ଚିହ୍ନିତ କରାଯାଇଛି। କୃତିଟିର କଳାଶୈଳୀ ଉଚ୍ଚକୋଟୀର। ଉଭୟ ମୂର୍ତ୍ତି ବିଭିନ୍ନ ବସ୍ତ୍ରାଳଙ୍କାରରେ ବିଭୂଷିତ। ଏହା ବ୍ୟତୀତ ମୂର୍ତ୍ତିର ନିମ୍ନରେ ରାଜା ଓ ପୂଜକଙ୍କ ପିତୂଳା ରହିଥିବାବେଳେ ଦୁଇପାର୍ଶ୍ୱରେ ଅସ୍ତ୍ରଧାରୀ ପରିଚାରକ ପୁଷ୍ପଧାରଣ କରିଥିବା ପରିଚାରିକା ଯୁଗଳଙ୍କ ସମେତ ପ୍ରଚ୍ଛଦର ମକରତୋରଣର ଦୁଇ ପାର୍ଶ୍ୱରେ ବ୍ରହ୍ମା ଓ ବିଷ୍ଣୁଙ୍କ ପ୍ରତିମା, ଊର୍ଦ୍ଧ୍ୱ ଭାଗରେ କୀର୍ତ୍ତିମୁଖ, ଉଡ୍ଡୀୟମାନ ଗନ୍ଧର୍ବ-ଅପ୍ସରା ଏବଂ ବିଭିନ୍ନ ବାଦ୍ୟଯନ୍ତ୍ର ବାଦନକରି ନୃତ୍ୟ କରୁଥିବା ରମଣୀମାନଙ୍କ ଛନ୍ଦମୟ ପିତୂଳା ଦେଖିବାକୁମିଳେ। କଳା ମୁଗୁନିପଥରେ ନିର୍ମିତ ସୂର୍ଯ୍ୟମନ୍ଦିର, କୃତିଟିର ଉଚ୍ଚତା ପ୍ରାୟ ୩.୫୦ ମିଟର ଓ ଚଉଡ଼ା ପ୍ରାୟ ୧.୭୫ମିଟର ଅଟେ। ମହାଗାୟତ୍ରୀ ମନ୍ଦିରର ସୂର୍ଯ୍ୟଙ୍କ ଅଶ୍ୱାରୂଢ଼ ପ୍ରତିମାଟିର କଳାଶୈଳୀ ପୂର୍ବ ବର୍ଣ୍ଣିତ ମୂର୍ତ୍ତି ଅପେକ୍ଷା ନିମ୍ନମାନର ଓ ଅଳଙ୍କରଣ ସୀମିତ। ଏହି ମୂର୍ତ୍ତିକୁ ବିଦ୍ୱାନମାନେ ସୂର୍ଯ୍ୟଙ୍କ 'ଭାସ୍କର' ରୂପବୋଲି ମନେ କରନ୍ତି। କଳା ମୁଗୁନିପଥରରେ ନିର୍ମିତ ଏହି ମୂର୍ତ୍ତିର ଉଚ୍ଚତା ପ୍ରାୟ ୨.୧୦ ମିଟର ଓ ଚଉଡ଼ା ପ୍ରାୟ ୧.୧୦ ମିଟର ଅଟେ।



ପାର୍ଶ୍ୱଦେବତା ସୂର୍ଯ୍ୟ, ସୂର୍ଯ୍ୟମନ୍ଦିର, କୋଣାର୍କ



କୋଣାର୍କର ସୂର୍ଯ୍ୟ ମୂର୍ତ୍ତି, ଜାତୀୟ ସଂଗ୍ରହାଳୟ, ନୂଆ ଦିଲ୍ଲୀ

କୋଣାର୍କ, ସୂର୍ଯ୍ୟମନ୍ଦିର ଓ ମହାଗାୟତ୍ରୀ ମନ୍ଦିରର ଅନ୍ୟ ପାର୍ଶ୍ୱଦେବତାମାନଙ୍କ ସୂର୍ଯ୍ୟଙ୍କ ସ୍ଥାନକ ବା ଦଣ୍ଡାୟମାନ ଭଙ୍ଗୀର ପ୍ରତିମା ଦେଖିବାକୁମିଳେ। ଏହା ମଧ୍ୟରୁ ସୂର୍ଯ୍ୟମନ୍ଦିରର ପଶ୍ଚିମପାର୍ଶ୍ୱ ମୂର୍ତ୍ତିକୁ 'କୁଶାନ' ଓ ଦକ୍ଷିଣପାର୍ଶ୍ୱ ମୂର୍ତ୍ତିକୁ 'ମିତ୍ର' ବୋଲି ବିଦ୍ୱାନମାନେ ଚିହ୍ନିତ କରିଛନ୍ତି। ଉଭୟ ପ୍ରତିମାର ନିମ୍ନଭାଗରେ ଅରୁଣ ସପ୍ତାଶ୍ୱଯୁକ୍ତ ରଥ ଚାଳନ କରୁଥିବା ଦୃଶ୍ୟ ରହିଥିବାବେଳେ ଦୁଇ ପାର୍ଶ୍ୱରେ ପୂଜକଙ୍କ ସହିତ ମନ୍ଦିରର ନିର୍ମାତା ରାଜା, ନରସିଂହଦେବ-୧ମ, ଯୋଡ଼ହସ୍ତରେ ଉଭାହୋଇଛନ୍ତି। ଏହା ବ୍ୟତୀତ ମୂର୍ତ୍ତିର ଦୁଇ ପାର୍ଶ୍ୱରେ ପରିଚାରକ, ପରିଚାରିକା,ବ୍ରହ୍ମା ଓ ବିଷ୍ଣୁ ଏବଂ ଊର୍ଦ୍ଧ୍ୱଭାଗରେ ବିଭିନ୍ନ ବାଦ୍ୟଯନ୍ତ୍ର ବାଦନକରୁଥିବା ନର୍ତ୍ତକୀଗଣ, ଉଡ୍ଡୀୟମାନ ଗନ୍ଧର୍ବ-ଅପ୍ସରା ଓ କମନୀୟ ପ୍ରଚ୍ଛଦ ତୋରଣର ମଧ୍ୟଭାଗରେ କୀର୍ତ୍ତିମୁଖ ସ୍ଥାନିତ ହୋଇଛି। ଉଭୟ ପ୍ରତିମାର ମୌଳିକ ଅଳଙ୍କରଣ ଓ ଭଙ୍ଗୀରେ ସମତା ରହିଥିବାବେଳେ ମୁଖର ଭାବ ଓ ମସ୍ତକର ମୁକୁଟରେ ପାର୍ଥକ୍ୟ ଦେଖାଯାଏ। ଉଦାହରଣ ସ୍ୱରୂପ କୁଶାନଙ୍କ ମସ୍ତକରେ ସୁଉଚ୍ଚ କିରୀଟମୁକୁଟ ରହିଥିବାବେଳେ ମିତ୍ରଙ୍କ ମସ୍ତକରେ ଗଭାଯୁକ୍ତ ଏକ ସ୍ୱଳ୍ପ ଉଚ୍ଚତାର ଶିରସ୍ତ୍ରାଣ ଦେଖିବାକୁମିଳେ। ଏହି ଦ୍ୱିଭୁଜ ମୂର୍ତ୍ତିମାନଙ୍କର ହସ୍ତଗୁଡ଼ିକ ଭଗ୍ନହେଲେହେଁ ହସ୍ତରେ ଧାରଣ କରିଥିବା ପ୍ରସ୍ଫୁଟିତ ପଦ୍ମଗୁଡ଼ିକ ଦୁଇ ପାର୍ଶ୍ୱରେ ସ୍ପଷ୍ଟ ଦୃଶ୍ୟମାନ ହୁଏ। କଳା ମୁଗୁନିପଥରରେ, ନବତାଳମାନରେ ନିର୍ମିତ କମନୀୟ କୃତିରୁ ପ୍ରତ୍ୟେକର ଉଚ୍ଚତା ପ୍ରାୟ ୩.୩୫ ମିଟର ଓ ଚଉଡ଼ା ପ୍ରାୟ ୧.୮୦ ମିଟର ଅଟେ। ମହାଗାୟତ୍ରୀ ମନ୍ଦିରର ଦକ୍ଷିଣ ପାର୍ଶ୍ୱଦେବତା ପ୍ରତିମାଟି ମଧ୍ୟ ସୂର୍ଯ୍ୟମନ୍ଦିରର ପୂର୍ବୋକ୍ତ ଦୁଇ ସମଭଙ୍ଗ ମୂର୍ତ୍ତି ଅନୁରୂପ। କିନ୍ତୁ, ଏହାର ଉପସ୍ଥାପନା ଶୈଳୀ ସରଳ। ମୂର୍ତ୍ତିର ମସ୍ତକ ଓ ପ୍ରଚ୍ଛଦ ତୋରଣର ଉପର ଅଂଶ ବହୁଭାବରେ ଭଗ୍ନ। ଏଠାରେ ସୂର୍ଯ୍ୟ ବିଶ୍ୱପଦ୍ମ ଉପରେ ଉଭା ହୋଇଥିବାବେଳେ ତାଙ୍କ ଆସନ ନିମ୍ନରେ ଅରୁଣ କିମ୍ବା ସପ୍ତାଶ୍ୱର ସଂକେତ ଦେଖିବାକୁ ମିଳେନାହିଁ। ଅନ୍ୟ ମୂର୍ତ୍ତି ମଧ୍ୟରୁ ଦୁଇ ପାର୍ଶ୍ୱର ଖଡ୍ଗ ଓ ଢାଲ ଧାରଣ କରିଥିବା ପରିଚାରକ ଓ ବାମପାର୍ଶ୍ୱରେ ଚାମର ଧାରଣ କରିଥିବା ଜଣେ ପରିଚାରିକାର ପିତୁଳା ନିଖୁଣ ରହିଛି। କଳା ମୁଗୁନିପଥରରେ ନିର୍ମିତ କୃତିଟିର ଉଚ୍ଚତା ପ୍ରାୟ ୧.୪୦ ମିଟର ଓ ଚଉଡ଼ା ପ୍ରାୟ ୦.୯୦ ମିଟର ଅଟେ।

କୋଣାର୍କ ସୂର୍ଯ୍ୟମନ୍ଦିରର କେତେକ ମଧ୍ୟମ ଆକାରର ସୁନ୍ଦର ସୂର୍ଯ୍ୟମୂର୍ତ୍ତି ଦେଶବିଦେଶର ବିଭିନ୍ନ ସଂଗ୍ରହାଳୟରେ ରହିଛି। ଏଗୁଡ଼ିକ ସାଧାରଣତଃ ସ୍ଥାନକମୂର୍ତ୍ତି। କୋଣାର୍କର ପ୍ରତ୍ନତତ୍ତ୍ୱ ସଂଗ୍ରାଳହୟରେ ଥିବା ଏକ ରଚନାରେ ସୂର୍ଯ୍ୟ ଏବଂ ଶିବଙ୍କ ମିଳିତ ମୂର୍ତ୍ତିତତ୍ତ୍ୱ ଦେଖିବାକୁ ମିଳେ। ଏଠାରେ ଆସନର ନିମ୍ନରେ ଅରୁଣ ଓ ସପ୍ତାଶ୍ୱଙ୍କ ପିତୁଳା ରହିଥିବାବେଳେ ଚତୁର୍ଭୁଜ ଦେବତାଙ୍କ ମୁଖ୍ୟଦୁଇ ହସ୍ତରେ ପଦ୍ମ ଦକ୍ଷିଣ ପୃଷ୍ଠଭାଗ ହସ୍ତରେ ତ୍ରିଶୂଳ ଓ ବାମହସ୍ତ ବରଦମୁଦ୍ରାରେ ଥିବା ଦେଖାଯାଏ। ବିଦ୍ୱାନମାନେ ମୂର୍ତ୍ତିଟିକ 'ଶିବ-ସୂର୍ଯ୍ୟ'ବୋଲି ଚିହ୍ନିତ କରିଛନ୍ତି। ଏହା ବ୍ୟତୀତ ନୂଆଦିଲ୍ଲୀସ୍ଥିତ ଜାତୀୟ ସଂଗ୍ରହାଳୟ ଓ ଲଣ୍ଡନର ବ୍ରିଟିଶ ମ୍ୟୁଜିୟମରେ ଥିବା ସୁନ୍ଦର ସୂର୍ଯ୍ୟମୂର୍ତ୍ତି ଦ୍ୱୟ ମଧ୍ୟ ଉଲ୍ଲେଖଯୋଗ୍ୟ। ଖ୍ରୀଷ୍ଟୀୟ-୧୩ଶ ଶତାବ୍ଦୀରେ ନିର୍ମିତ ସୂର୍ଯ୍ୟମନ୍ଦିରର ଏହି ସୂର୍ଯ୍ୟ ପ୍ରତିମାଗୁଡ଼ିକ ଓଡ଼ିଶା କାହିଁକି ଭାରତୀୟ ମୂର୍ତ୍ତିକଳାରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାରକରେ।



# ଗୌଣ ମୂର୍ତ୍ତି: ବ୍ରହ୍ମା

ବ୍ରହ୍ମତତ୍ତ୍ୱର ଦେବତା ବ୍ରହ୍ମା, ବେଦର ସ୍ରଷ୍ଟା ଅଟନ୍ତି। ବ୍ରାହ୍ମଣ୍ୟ ଧର୍ମର ତିନି ମୁଖ୍ୟ ଦେବତାଙ୍କ ମଧ୍ୟରେ ଅଗ୍ରଗଣ୍ୟ ହେଲେହେଁ ପୁରାଣକାରଙ୍କ ଦ୍ୱାରା ସେ ନିନ୍ଦିତହୋଇ ଅପୂଜ୍ୟ ହୋଇପଡ଼ିଛନ୍ତି। ଏହଦ୍ୱାରା ବ୍ରହ୍ମାଙ୍କ ମୂର୍ତ୍ତି ସଂଖ୍ୟା ସୀମିତ ହୋଇପଡ଼ିଛି। ବ୍ରହ୍ମା ଚର୍ତୁମୁଖ ହୋଇଥିବାବେଳେ ଯୋଗ ଓ ଯଜ୍ଞ ସମ୍ପର୍କୀୟ ବସ୍ତୁ ଯଥା: ଜପମାଳା, କମଣ୍ଡଳୁ, ପୁସ୍ତକ ବା ବେଦ ଓ ସ୍ରୁବ ତାଙ୍କର ମୁଖ୍ୟ ଆୟୁଧ। ସରସ୍ୱତୀ ତାଙ୍କ ଶକ୍ତି ହୋଇଥିବାବେଳେ କେତେକ ପୁରାଣରେ ଦେବୀଙ୍କୁ ବ୍ରହ୍ମାଙ୍କ ପତ୍ନୀ ଭାବରେ ଚିତ୍ରଣ କରାଯାଇଛି।

ଓଡ଼ିଶାର କେତେକ ପ୍ରାଚୀନ ମନ୍ଦିରର ବର୍ଣ୍ଣନାତ୍ମକ ମୂର୍ତ୍ତିକଳାରେ ବ୍ରହ୍ମାଙ୍କ ମୂର୍ତ୍ତି ଦେଖିବାକୁମିଳେ। ଶିବବିବାହ ଦୃଶ୍ୟ, 'କଲ୍ୟାଣସୁନ୍ଦରମୂର୍ତ୍ତି' ରେ ଓ କାର୍ତ୍ତିକେୟଙ୍କ ଅଭିଷେକ ମୂର୍ତ୍ତିରେ ସେ ଦେଖାଯାଆନ୍ତି। ତେବେ, ଭୁବନେଶ୍ୱରର ସ୍ୱର୍ଣ୍ଣଜଳେଶ୍ୱର ମନ୍ଦିର ଗାତ୍ରରେ ଯୋଗାସନରେ ଥିବା ବ୍ରହ୍ମାଙ୍କ ଦ୍ୱିଭୁଜ ପ୍ରତିମା ରହିଛି। ଏଠାରେ ସେ ଦକ୍ଷିଣହସ୍ତରେ ଜପମାଳା ଓ ବାମହସ୍ତରେ କମଣ୍ଡଳୁ ଧାରଣ କରିଛନ୍ତି। ଏହା ବ୍ୟତୀତ ଭୁବନେଶ୍ୱରର ବିନ୍ଦୁସାଗର କୂଳରେ ବ୍ରହ୍ମାଙ୍କର ଏକ ସ୍ୱତନ୍ତ୍ର ମନ୍ଦିର ଓ ମୂର୍ତ୍ତି ରହିଛି। ଏହି ମୂର୍ତ୍ତି ଅନୁରୂପ ଦଣ୍ଡାୟମାନ ଭଙ୍ଗୀର ଅନ୍ୟ ଏକ ମୂର୍ତ୍ତି ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ଦେଖିବାକୁମିଳେ। ତ୍ରିମୁଖ ଦୃଶ୍ୟମାନ ହେଉଥିବା ଏହି ଦେବତାଙ୍କ ଚତୁର୍ଥ ମୁଖଟି ପଶ୍ଚାତ୍ ଭାଗରେ ଥିବା ଧାରଣା କରାଯାଏ। ଏହି ଚର୍ତୁଭୁଜ ଦେବତା ତାଙ୍କ ମୁଖ୍ୟ ଦକ୍ଷିଣହସ୍ତରେ ଜପମାଳା ଧାରଣ କରିଥିବାବେଳେ କମଣ୍ଡଳୁ ଧାରଣ କରିଥିବା ବାମହସ୍ତଟି ଭଗ୍ନ। ତେବେ, ତାଙ୍କ ଉପର ଦକ୍ଷିଣହସ୍ତର ବେଦ ଓ ବାମହସ୍ତରେ ସ୍ରୁବ ଥିବା ଜଣାଯାଏ। ଓଡ଼ିଶାର ଅନ୍ୟ କେତେକ ସ୍ଥାନରେ ପରବର୍ତ୍ତୀ ସମୟର କେତୋଟି ବ୍ରହ୍ମା ମୂର୍ତ୍ତି ରହିଛି। ତେବେ, ଏଗୁଡ଼ିକର ମୂର୍ତ୍ତିତତ୍ତ୍ୱରେ କୌଣସି ବିଶେଷ ପରିବର୍ତ୍ତନ ପରିଲକ୍ଷିତ ହୁଏନାହିଁ। ଏପରିକି, କଳାଶୈଳୀ ମଧ୍ୟ ଅନାକର୍ଷଣୀୟ ମନେହୁଏ।



ବ୍ରହ୍ମା, ପରଶୁରାମେଶ୍ୱର ମନ୍ଦିର, ଭୁବନେଶ୍ୱର



ବ୍ରହ୍ମା, ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର

# ନବଗ୍ରହ

ଗ୍ରହମାନେ ମନୁଷ୍ୟ, ପ୍ରାଣୀଜଗତ ଏପରିକି ଦେବତାମାନଙ୍କରେ ମଧ୍ୟ ଭାଗ୍ୟନୀୟନ୍ତା ବୋଲି ବିଶ୍ୱାସ କରାଯାଏ। ଜ୍ୟୋତିଷ ଶାସ୍ତ୍ର ଅନୁଯାୟୀ ଏମାନଙ୍କ ଶୁଭଦୃଷ୍ଟି ମନୁଷ୍ୟ ପାଇଁ ଅପରିହାର୍ଯ୍ୟ। ଏଣୁ, ଦେବତା ଦର୍ଶନ ପୂର୍ବରୁ ଦେଉଳର ପ୍ରବେଶଦ୍ୱାର ପ୍ରଥମ ତୋରଣ ଉପରେ ସ୍ଥାନିତ ଏମାନଙ୍କ ପ୍ରତିମା ଦର୍ଶନୀୟ ଅଟେ। ପ୍ରାଚୀନ ମନ୍ଦିରମାନଙ୍କର ପାଟପଥର ଉପରେ ତତ୍‌କାଳୀନ ପରମ୍ପରା ଅନୁଯାଇ ଅଷ୍ଟଗ୍ରହଙ୍କ ମୂର୍ତ୍ତି ସ୍ଥାନିତ ହେଉଥିଲା। ଏହି ବିଧିରେ କେତୁଙ୍କୁ ଏକ ଭିନ୍ନ ଗ୍ରହଭାବେ ଗ୍ରହଣ କରାଯାଉନଥିଲା। କିନ୍ତୁ, ଖ୍ରୀ: ୬ଷ୍ଠ ଶତାବ୍ଦୀରେ ପ୍ରଖ୍ୟାତ ଜ୍ୟୋତିଷଶାସ୍ତ୍ର ପ୍ରଣେତା ବରାହମିହରଙ୍କ 'ବୃହତ ସଂହିତା'ରେ ନବଗ୍ରହଙ୍କୁ ଗୁରୁତ୍ୱ ଦିଆଯିବାରୁ ଏହା ଧିରେ ଧିରେ ଲୋକପ୍ରିୟ ହେବା ସଙ୍ଗେ ସଙ୍ଗେ ପରବର୍ତ୍ତୀ ସମୟର ମନ୍ଦିରମାନଙ୍କରେ କେତୁଙ୍କୁ ଗ୍ରହଣ କରାଯାଇ ନବଗ୍ରହ ମୂର୍ତ୍ତିମାନ ନିର୍ମାଣ କରାଗଲା। ଏହି ମୂର୍ତ୍ତିଗୁଡ଼ିକ ମନ୍ଦିରର ପ୍ରବେଶଦ୍ୱାର ବା ପାଟପଥର ଉପରେ, କ୍ରମାନ୍ୱୟରେ ଖୋଦିତ ହୋଇଥିବା ଦେଖାଯାଏ।

ଏହି ନବଗ୍ରହ ହେଲେ ରବି ବା ସୂର୍ଯ୍ୟ, ସୋମ ବା ଚନ୍ଦ୍ର, ପୃଥିବୀପୁତ୍ର ନାମରେ ପରିଚିତ ମଙ୍ଗଳ, ଚନ୍ଦ୍ରଙ୍କ ପୁତ୍ର ବୁଧ, ଦେବତାମାନଙ୍କ ଗୁରୁ ବୃହସ୍ପତି, ଭୃଗୁଙ୍କ ପୁତ୍ର ତଥା ଅସୁରମାନଙ୍କ ଗୁରୁ ଶୁକ୍ର, ସୂର୍ଯ୍ୟ ଓ ଛାୟାଙ୍କ ପୁତ୍ର ଶନି, ସିଂହପୁତ୍ର ରାହୁ, ଶୁକ୍ରଙ୍କ ପୁତ୍ର କେତୁ ଓ ସେ ରାହୁଙ୍କ ଖଣ୍ଡିତ ଅଂଶ ଅଟନ୍ତି। ପ୍ରଥମ ସାତୋଟି ଗ୍ରହ ସାଧାରଣତଃ ପଦ୍ମାସନରେ ବସିଥିବାବେଳେ ହସ୍ତରେ ନିଜ ନିଜର ଆୟୁଧ ଓ ବସ୍ତୁ ଧାରଣ କରିଥାଆନ୍ତି। କିନ୍ତୁ, ରାହୁ ଏକ ଅସୁରର ମସ୍ତକ ଏବଂ କେତୁଙ୍କ ନିମ୍ନଭାଗ ସର୍ପଶରୀର ଦେଖିବାକୁମିଳେ।



ଏକ ପ୍ରାଚୀନ ମନ୍ଦିରର ଅଷ୍ଟଗ୍ରହ (ପାଟପଥର) ମଧ୍ୟରୁ ସାତଗ୍ରହ ଥିବା ଏକ ଖଣ୍ଡିତ ଅଂଶ



କୋଣାର୍କ ସୂର୍ଯ୍ୟମନ୍ଦିରର ନବଗ୍ରହଙ୍କ ମଧ୍ୟରୁ ବୁଦ୍ଧ, ବୃହସ୍ପତି ଓ ଶୁକ୍ରଙ୍କ ମୂର୍ତ୍ତି

ପ୍ରତ୍ୟେକ ମନ୍ଦିରରେ ନବଗ୍ରହ ମୂର୍ତ୍ତି ଏକ ମୁଖ୍ୟ ଅଂଶ ହୋଇଥିବାବେଳେ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର, ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ଓ ନିମାପଡ଼ା ନିକଟ ବିଷ୍ଣୁପୁର ଗ୍ରାମର ଶିବମନ୍ଦିର ଓ କୋଣାର୍କର ସୂର୍ଯ୍ୟମନ୍ଦିରରୁ ଚ୍ୟୁତ ହୋଇଥିବା ନବଗ୍ରହପାଟର କଳାଶୈଳୀ ଉଲ୍ଲେଖଯୋଗ୍ୟ। କୋଣାର୍କର ସୂର୍ଯ୍ୟମନ୍ଦିରର ମୁଖ୍ୟ ନବଗ୍ରହ ମୂର୍ତ୍ତିଗୁଡ଼ିକ ସ୍ଥାନାନ୍ତରିତ ହୋଇ ବର୍ତ୍ତମାନ କୋଣାର୍କ ମନ୍ଦିର ନିକଟ ଏକ କୋଠାଘରେ ସଂରକ୍ଷିତ ହୋଇଛି। ଗୋଟିଏ କଳା ମୁଗୁନିପଥରରେ ନିର୍ମିତ ପାଟପଥରଟି ବ୍ରିଟିଶ୍ ଶାସନ ସମୟରେ କେତେ ଖଣ୍ଡରେ ବିଭକ୍ତ କରାଯାଇଛି ଏବଂ ଏହାର ଓଜନ ହ୍ରାସ ନିମନ୍ତେ ପୃଷ୍ଠଭାଗରୁ କେତେକାଂଶ କାଟି ଦିଆଯାଇଛି। ଏହି ମୂଳ ପାଟପଥରଟି ଲମ୍ବ ପ୍ରାୟ ୬.୦୦ ମିଟର, ପ୍ରସ୍ଥ ୧.୪୦ମିଟର ଓ ଉଚ୍ଚତା ୧.୧୦ମିଟର ଥିବା ଜଣାଯାଏ। ଏଥିରେ ଖୋଦିତ ନବଗ୍ରହଙ୍କ ମୂର୍ତ୍ତିର କଳାଶୈଳୀ ଆକର୍ଷଣୀୟ। ଏହି ସମସ୍ତ ବିଗ୍ରହ ଦ୍ୱିଭୁଜ। ରାହୁ ଓ କେତୁଙ୍କ ବ୍ୟତୀତ ଅନ୍ୟ ସମସ୍ତ ଗ୍ରହ ପଦ୍ମାସନରେ ଉପବିଷ୍ଟ ରବିଙ୍କ ଦୁଇ ହସ୍ତରେ ପଦ୍ମ ରହିଥିବାବେଳେ ରାହୁଙ୍କ ଦୁଇ ହସ୍ତରେ ଅର୍ଦ୍ଧଚନ୍ଦ୍ର ଓ କେତୁଙ୍କ ହସ୍ତରେ ଖଡ୍ଗ ଏବଂ ଅଗ୍ନିପାତ୍ର ଦେଖିବାକୁମିଳେ। ଅନ୍ୟ ଛଅ' ଗ୍ରହଙ୍କ ହସ୍ତରେ ଜପମାଳା ଓ କମଣ୍ଡଳୁ ରହିଛି। କୋଣାର୍କ ସୂର୍ଯ୍ୟମନ୍ଦିର ପରିସରର ଅନ୍ୟ କୌଣସି ଏକ ନବଗ୍ରହ ପାଟପଥର ପୁରୀର ଗୁଣ୍ଡିଚା ମନ୍ଦିରର ପ୍ରବେଶଦ୍ୱାର ଉପରେ ସ୍ଥାପିତ ହୋଇଛି।

# ଦିଗ୍‌ପାଳ, ଦିଗ୍‌ପାଳିକା

ବୈଦିକ ଯୁଗରେ ବିଭିନ୍ନ ଦିଗ ଓ ତା'ର ପାଳନକର୍ତ୍ତା ଦେବତା ଭାବରେ ଦିକ୍‌ପାଳ ବା ଦିଗପାଳମାନଙ୍କର ପରିକଳ୍ପନା କରାଯାଇଥିଲା। ଏମାନେ ସମସ୍ତେ ଗୋଟିଏ ଗୋଟିଏ ପ୍ରାକୃତିକ ଶକ୍ତି। ସେ ସମୟରେ ଏମାନଙ୍କୁ ମୁଖ୍ୟ ଦେବତା ଭାବେ ବେଶ୍ ଗୁରୁତ୍ୱ ଦିଆଯାଉଥିବାବେଳେ ପରବର୍ତ୍ତୀ ସମୟରେ ଅନ୍ୟ ଦେବତାମାନଙ୍କ ମହତ୍ତ୍ୱ ବୃଦ୍ଧି ପାଇବା ଦ୍ୱାରା ଦିଗପାଳମାନଙ୍କୁ ଉପଦେବତାଭାବେ ଗଣନା କରାଗଲା। ତେବେ, ପରମ୍ପରା ଅନୁଯାଇ ବୈଦିକ ଧର୍ମାନୁଷ୍ଠାନ ପୂଜା,ହୋମ ଓ ଯଜ୍ଞମାନଙ୍କରେ ଏହି ଦିଗପାଳମାନଙ୍କୁ ଆବାହନ, ସମର୍ପଣ ସମେତ ଆହୁତି ପ୍ରଦାନ କରାଯାଇଥାଏ। ସର୍ବମୋଟ ଏହି ଦିଗପାଳମାନଙ୍କ ସଂଖ୍ୟା ଦଶ। ଅର୍ଥାତ୍ ଚାରିଦିଗ, ଚାରିକୋଣ, ଆକାଶ ଓ ପାତାଳ। ତେବେ, ମନ୍ଦିର ଗାତ୍ରରେ ଅଷ୍ଟଦିଗ୍‌ପାଳଙ୍କ ମୂର୍ତ୍ତି ସ୍ଥାପିତ ହେଉଥିବାବେଳେ ଦେଉଳ ମୁଦ ପଥରରେ ପଦ୍ମଚିତ୍ର ସୂର୍ଯ୍ୟ ବା ଆକାଶର ସଙ୍କେତ ଓ ଭୂମି ମଧ୍ୟରେ ସ୍ଥାପନ କରାଯାଇଥିବା ବାସ୍ତୁନାଗର ପ୍ରତୀକକୁ ପାତାଳର ରକ୍ଷାକର୍ତ୍ତା ବା ସଙ୍କେତ ଭାବେ ଗ୍ରହଣ କରାଯାଇଥାଏ।

ଓଡ଼ିଶାର ପ୍ରଥମ ପର୍ଯ୍ୟାୟ ପ୍ରାଚୀନ ମନ୍ଦିରଗୁଡ଼ିକରେ ଅଳ୍ପ କେତେକ ଦିଗପାଳଙ୍କ ମୂର୍ତ୍ତି ଦେଉଳ ବାଡ଼ରେ ଅନର୍ଦ୍ଦିଷ୍ଟ ଭାବେ ଦେଖିବାକୁମିଳେ। ଭୁବନେଶ୍ୱର ଲକ୍ଷ୍ମଣେଶ୍ୱର ମନ୍ଦିର ପୁଞ୍ଜ ଓ ସୁବର୍ଣ୍ଣଜଳେଶ୍ୱର ମନ୍ଦିରର ବହୁ ଅଂଶ ଭାଙ୍ଗି ପଡ଼ିଥିବାଯୋଗୁ ଏଥିରେ ଦିଗପାଳମାନଙ୍କ ମୂର୍ତ୍ତି ସ୍ଥାପିତ ହୋଇଥିଲା କି ନାହିଁ କହିବା କଷ୍ଟକର। ତେବେ, ପର୍ଶୁରାମେଶ୍ୱର ମନ୍ଦିର ଜଗମୋହନର ଦକ୍ଷିଣ ପାର୍ଶ୍ୱ ବାଡ଼ରେ ଇନ୍ଦ୍ର, ଯମ ଓ ବରୁଣଙ୍କ ସମେତ ଅନ୍ୟ ତିନି ମୂର୍ତ୍ତି ରହିଥିବାବେଳେ ବ୍ରିଟିଶ୍ ସମୟରେ ମନ୍ଦିର ମରାମତିବେଳେ ଅନ୍ୟ ଦିଗପାଳ ମୂର୍ତ୍ତିଗୁଡ଼ିକ ଭାଙ୍ଗିପଡ଼ିଥିବାରୁ ସେହି ସ୍ଥାନରେ ଏକ ଗବାକ୍ଷ ସଂଯୋଗ ହୋଇଛିବୋଲି ଅନୁମାନ କରାଯାଏ। ଏହାର ପରବର୍ତ୍ତୀ ସମୟର ମାର୍କଣ୍ଡେଶ୍ୱର ମନ୍ଦିରର ଦ୍ୱାରବନ୍ଧରେ ପଦ୍ମାସନରେ ବସିଥିବା ଅଗ୍ନି ଓ ବରୁଣଙ୍କ ମୂର୍ତ୍ତି ଦେଖିବାକୁମିଳେ। ସେହିପରି, ଗୌରୀମନ୍ଦିର ବାଡ଼ରେ ଅଗ୍ନିଙ୍କ ମୂର୍ତ୍ତି ରହିଛି। ଭୁବନେଶ୍ୱର

ବାହାର ବୈଦ୍ୟେଶ୍ୱରଗର ସିଂହନାଥ ମନ୍ଦିର ଗାତ୍ରରେ ଅଗ୍ନି ଓ ଯମଙ୍କ ମୂର୍ତ୍ତି, ମୁଖଲିଙ୍ଗମ୍‌ର ମଧୁକେଶ୍ୱର ମନ୍ଦିରରେ ଇନ୍ଦ୍ର ଓ ସୋମେଶ୍ୱର ମନ୍ଦିରରେ ଅଗ୍ନିଙ୍କ ଦେଖାଯାଏ।

ଖ୍ରୀଷ୍ଟୀୟ ୧୦ମ ଶତାବ୍ଦୀରେ ପଞ୍ଚରଥ ଶୈଳୀ ମନ୍ଦିରମାନଙ୍କ ନିର୍ମାଣ ସହିତ ଦେଉଳ ବାଡ଼ରେ ଏକ ପୂର୍ଣ୍ଣସଂଖ୍ୟା ଅର୍ଥାତ୍, ଅଷ୍ଟଦିଗ୍‌ପାଳଙ୍କ ମୂର୍ତ୍ତି ସ୍ଥାନିତ କରିବା ବ୍ୟବସ୍ଥା ହୋଇଥିଲା। ତେବେ, ଖ୍ରୀଷ୍ଟାବ୍ଦ ୧୨ଶ-୧୩ଶ ଶତାବ୍ଦୀର ପଞ୍ଚରଥ ଓ ସପ୍ତରଥ ଶୈଳୀ ମନ୍ଦିରଗୁଡ଼ିକରେ ଶାସ୍ତ୍ରୀୟ ମତରେ ନିର୍ଦ୍ଦିଷ୍ଟ ଦିଗ ଓ କୋଣମାନଙ୍କରେ ଏହି ଦେବତାମାନଙ୍କୁ ସ୍ଥାପନ କରାଗଲା।

ଓଡ଼ିଶାର ମନ୍ଦିର ଗାତ୍ରରେ ଦେଖାଯାଉଥିବା ଏହି ଦିଗ୍‌ପାଳ ମୂର୍ତ୍ତିଗୁଡ଼ିକ ସାଧାରଣତଃ ଦ୍ୱିଭୁଜ ହୋଇଥିବାବେଳେ କେତେକ ସ୍ଥଳେ ଐଶାନ୍ୟ କୋଣର ଦେବତା ଇଶାନ (ଶିବ) ଚର୍ତୁଭୁଜ ହୋଇଥାଆନ୍ତି। ଏମାନେ ଆୟୁଧ ଧାରଣକରି ଆସନ ଭଙ୍ଗୀ କିମ୍ବା ସ୍ଥାନକ ଭଙ୍ଗୀରେ ନିଜ ନିଜର ବାହନ ଉପରେ କିମ୍ବା ବାହନ ଉପରେଥିବା ବିଶ୍ୱପଦ୍ମ ଉପରେ ଉଭା ହୋଇଥାଆନ୍ତି। ବିକଶିତ କଳାଶୈଳୀ ମୂର୍ତ୍ତିଗୁଡକର ମସ୍ତକରେ କିରୀଟମୁକୁଟ୍ ଓ ଦେହରେ ସୁନ୍ଦର ବସ୍ତ୍ରାଳଙ୍କାର ଦେଖାଯାଏ। ଏହି ଦେବତାମାନଙ୍କ ନାମ ସେମାନଙ୍କର ସ୍ଥାନ ବା ଦିଗ, ବାହନ ତଥା ଆୟୁଧର ସୂଚନା ନିମ୍ନରେ ପ୍ରଦତ୍ତ ହେଲା।

| ନାମ | ଦିଗ ବା କୋଣ | ବାହନ | ମୁଖ୍ୟ ଆୟୁଧ |
|---|---|---|---|
| ଇନ୍ଦ୍ର | ପୂର୍ବଦିଗ | ଐରବତହସ୍ତୀ | ବଜ୍ର ଓ ଅଙ୍କୁଶ |
| ଅଗ୍ନି | ଦକ୍ଷିଣ-ପୂର୍ବ | ମେଷ କିମ୍ବା ଛାଗ | ଅଗ୍ନି ଓ ସ୍ତୃକ୍ସ |
| ଯମ | ଦକ୍ଷିଣ | ମହିଷ | ଦଣ୍ଡ ଓ ପାଶ |
| ନୈରତ | ଦକ୍ଷିଣ-ପଶ୍ଚିମ | ମନୁଷ୍ୟ ଶବ | ଛିନ୍ନ ମସ୍ତକ, ଖଡ୍ଗ |
| ବରୁଣ | ପଶ୍ଚିମ | ମକର | ପାଶ,ଅଭୟମୁଦ୍ରା |
| ବାୟୁ | ଉତ୍ତର-ପଶ୍ଚିମ | ମୃଗ | ପତାକା |
| କୁବେର | ଉତ୍ତର | ମନୁଷ୍ୟ କିମ୍ବା ହସ୍ତୀ | ନିଧିଭାଣ୍ଡ |
| ଇଶାନ | ଉତ୍ତର-ପୂର୍ବ | ବୃଷଭ | ତ୍ରିଶୂଳ, ଡ଼ମ୍ବରୁ |

ପ୍ରାଚୀନ ମନ୍ଦିରର ଅଳ୍ପ କେତେକ ଦିଗପାଳ ପଦ୍ମାସନରେ ବସିଥିବାବେଳେ ଅଧିକାଂଶ ମଧ୍ୟଯୁଗୀୟ କୃତି ବାହନ ଉପରେ ଲଳିତାସନରେ ବସିଥିବା ଦେଖାଯାଏ। ଏହି ପ୍ରକାର ରଚନା ଭୁବନେଶ୍ୱରର ଲିଙ୍ଗରାଜମନ୍ଦିର, ବ୍ରହ୍ମେଶ୍ୱର, ଅନନ୍ତ ବାସୁଦେବ ଏବଂ ଭୁବନେଶ୍ୱର ବାହର ଗାରେଡ଼ିପାଞ୍ଚଣର ବୃଦ୍ଧନାଥ ମନ୍ଦିର, ପ୍ରାଚୀ ଅବବାହିକା, ମାଧବର ମାଧବାନନ୍ଦ ମନ୍ଦିର, ଖୋର୍ଦ୍ଧା ନିକଟ କାକୁଡ଼ିଆ ଓ ବୁଢ଼ାପଡ଼ାର ଶିବମନ୍ଦିର, କୋଣାର୍କର ସୂର୍ଯ୍ୟମନ୍ଦିର, ବୟାଳିଶିବାଟୀର ଗଙ୍ଗେଶ୍ୱରୀ ମନ୍ଦିର ଓ କିଶନପୁରର ଚାଟେଶ୍ୱର ମନ୍ଦିରରେ ଦେଖିବାକୁମିଳେ। ସୂଚନାଯୋଗ୍ୟ ଯେ, ମାଧବାନନ୍ଦ ମନ୍ଦିର, ବାଣପୁରର ଦକ୍ଷପ୍ରଜାପତି ମନ୍ଦିର ଭଳି କେତେକ ସ୍ଥାନରେ ଦିଗପାଳମାନେ ବାହନ ଉପରେ ଥିବା ପଦ୍ମ ଉପରେ ଆସନ ଗ୍ରହଣ କରିଛନ୍ତି।

ସ୍ଥାନକ ବା ଦଣ୍ଡାୟମାନ ଭଙ୍ଗୀର ଦିଗପାଳ ମୂର୍ତ୍ତି ମଧ୍ୟରେ ଭୁବନେଶ୍ୱର ରାଜରାଣୀ ମନ୍ଦିରର କୃତିଗୁଡ଼ିକ ଉଚ୍ଚକୋଟୀର କଳାଶୈଳୀର ଅଟେ। ଏହା ବ୍ୟତୀତ ଏଠାର ଯମେଶ୍ୱର ଓ ଚିତ୍ରକାରିଣୀ ମନ୍ଦିର ଗାତ୍ରରେ ମଧ୍ୟ ଏହି ପ୍ରକାର ରଚନା ରହିଛି। ଏହି ସବୁ ପ୍ରତିମାର ମୌଳିକ ମୂର୍ତ୍ତିତତ୍ତ୍ୱ ଏକ ହୋଇଥିବାବେଳେ ସମୟାନୁକ୍ରମ କଳାଶୈଳୀରେହିଁ ପାର୍ଥକ୍ୟ ଦେଖାଯାଏ। ଭୁବନେଶ୍ୱର ରାଜାରାଣୀ ମନ୍ଦିରର ସ୍ଥାନକ ବା

ଦଣ୍ଡାୟମାନ ଭଙ୍ଗୀର ମୂର୍ତ୍ତି ଓ କୋଣାର୍କ ସୂର୍ଯ୍ୟମନ୍ଦିରରେ ବାହନ ଉପର ଦିଗପାଳ, ଆସନମୂର୍ତ୍ତିଗୁଡ଼ିକ କମନୀୟ, ଉଚ୍ଚକୋଟୀର ରଚନା, ଯାହାକି ଓଡ଼ିଶା କାହିଁକି ଭାରତୀୟ ମୂର୍ତ୍ତିକଳାରେ ଏକ ଉଲ୍ଲେଖ୍ୟଯୋଗ୍ୟ ସ୍ଥାନ ଅଧିକାରକରେ।





ଦିଗପାଳ: ଈଶାନ



ବାୟୁଙ୍କ ଶକ୍ତି

ବରୁଣ, ରାଜାରାଣୀ ମନ୍ଦିର, ଭୁବନେଶ୍ୱର

ଶକ୍ତି ପରମ୍ପରାର ବିକାଶ ଦ୍ୱାରା ଦିଗପାଳମାନଙ୍କ ସହିତ ତାଙ୍କ ଶକ୍ତି, ଦିଗପାଳିକାମାନଙ୍କ ମୂର୍ତ୍ତିର ପରିକଳ୍ପନା କରାଗଲା। ପ୍ରଥମେ ଏହି ଧାରା ଚୌରାଶୀର ବାରାହୀ ମନ୍ଦିର ଗାତ୍ରରେ ଉପସ୍ଥାପିତ ହୋଇଥିବା ଜଣାଯାଏ। ଏହାର ପରବର୍ତ୍ତୀ ପର୍ଯ୍ୟାୟରେ ଖ୍ରୀ: ୧୧ଶ-୧୩ଶ ଶତାବ୍ଦୀ ମଧ୍ୟରେ ନିର୍ମିତ ଅଧିକାଂଶ ଶିବ ତଥା ବିଷ୍ଣୁ ମନ୍ଦିରମାନଙ୍କ ପାଗର ନିମ୍ନଭାଗରେ ଦିଗପାଳ ଓ ଊର୍ଦ୍ଧ୍ୱଭାଗରେ ଦିଗପାଳିକାମାନଙ୍କ ମୂର୍ତ୍ତି ସ୍ଥାନିତ କରିବା ପରମ୍ପରା ପ୍ରଚଳନ ହେଲା। ସୂଚନାଯୋଗ୍ୟ ଯେ, ଦିଗପାଳଙ୍କ ଅନୁରୂପ କଳାଶୈଳୀର ଏହି ଦେବୀମାନେ ନିଜ ନିଜ ସ୍ୱାମୀଙ୍କ ଆୟୁଧ ଓ ବାହନ ବ୍ୟବହାର କରିଥାଆନ୍ତି। ଏହି ଦେବୀମାନେ ମଧ୍ୟ କେତେକ ସ୍ଥଳେ ଲଳିତାସନରେ ଓ ଅନ୍ୟ କେତେକ ସ୍ଥଳେ ସ୍ଥାନକ ଭଙ୍ଗୀରେ ଦେଖାଯାଆନ୍ତି। ଭୁବନେଶ୍ୱର ମେଘେଶ୍ୱର, ଅନନ୍ତବାସୁଦେବ, ଯମେଶ୍ୱର, ଚିତ୍ରକାରିଣୀ ସମେତ ଅନ୍ୟ କେତେକ ମନ୍ଦିରରେ ଏହାର ଉଦାହରଣ ଦେଖିବାକୁ ମିଳେ। ଭୁବନେଶ୍ୱର ବାହାର ମାଧବାନନ୍ଦ ମନ୍ଦିର, ବୁଢ଼ାପଡ଼ା ଓ କାକୁଡ଼ିଆର ଶିବମନ୍ଦିର, ଗାରଡ଼ିପାଞ୍ଚଣର ବୁଦ୍ଧନାଥ ମନ୍ଦିର, କିଶନପୁରର ଚାଟେଶ୍ୱର ମନ୍ଦିର, ବାଣପୁରର ଦକ୍ଷପ୍ରଜାପତି ମନ୍ଦିର ଓ ବୟାଳିଶିବାଟୀର ଗଙ୍ଗେଶ୍ୱରୀ ମନ୍ଦିରରେ ଦିଗପାଳ ଓ ଦିଗପାଳିକାଙ୍କ ପ୍ରତିମାମାନ ରହିଛି।



# ମୂର୍ତ୍ତିତତ୍ତ୍ୱ ସମ୍ପର୍କୀୟ କେତେକ ସୂଚନା

ପ୍ରାଚୀନ ଭାରତୀୟ ମୂର୍ତ୍ତିତତ୍ତ୍ୱ ଏକ ବିଶାଳବିଷୟ । ବେଦ, ବୈଦିକ ସାହିତ୍ୟ, ପୁରାଣ, ତନ୍ତ୍ର, କାବ୍ୟ ଇତ୍ୟାଦିରେ ବର୍ଣ୍ଣିତ ଦେବଦେବୀଙ୍କ ରୂପ, ଗୁଣର ପରିକଳ୍ପନା ଉପରେ ଏହା ଆଧାରିତ । ଏଣୁ ମୂର୍ତ୍ତିତତ୍ତ୍ୱ ଭାରତୀୟ ସଂସ୍କୃତିର ଏକ ଅବିଚ୍ଛେଦ୍ୟ ଅଙ୍ଗ । ମୂର୍ତ୍ତିକଳା ଓ ତାର ତତ୍ତ୍ୱ ସମ୍ପର୍କୀୟ ନିର୍ବନ୍ଧ ପଠନ ପୂର୍ବରୁ ମୂର୍ତ୍ତିତତ୍ତ୍ୱର ଭିତ୍ତିଭୂମି ଯଥା, ଦେବତାଙ୍କ ଆସନ, ବାହନ, ଅବସ୍ଥା ବା ଭଙ୍ଗୀ, ହସ୍ତମୁଦ୍ରା ଓ ହସ୍ତରେ ଧାରଣକରୁଥିବା ବସ୍ତୁ ସମ୍ପର୍କରେ ସାଧାରଣ ଧାରଣା ଅନିବାର୍ଯ୍ୟ । ଏଗୁଡ଼ିକ ଦେବତାଙ୍କ ଗୁଣ, ଭାବ ଓ ଶକ୍ତିର ପରିଚୟ ପ୍ରଦାନ କରିଥାଏ । ଏହା ମଧ୍ୟରେ ହସ୍ତର ଆୟୁଧ ବା ବସ୍ତୁଗୁଡ଼ିକ ଗୁରୁତ୍ୱପୂର୍ଣ୍ଣ । ଭାରତର ବିଭିନ୍ନ ପ୍ରାନ୍ତରେ ଭିନ୍ନ ଭିନ୍ନ ସମୟରେ ନିର୍ମିତ ମୂର୍ତ୍ତିର ଏହି ବସ୍ତୁଗୁଡ଼ିକର ଆକାର ପ୍ରକାର ଓ କଳା ଶୈଳୀରେ ପାର୍ଥକ୍ୟ ଦେଖାଯାଏ । ଏଣୁ କୌଣସି ମୂର୍ତ୍ତି ଅଧ୍ୟୟନ ବେଳେ ଏହି ବସ୍ତୁଗୁଡ଼ିକୁ ସାବଧାନତାର ସହିତ ଚିହ୍ନିବା ଆବଶ୍ୟକ । ତେବେ ପୁସ୍ତକରେ ଆଲୋଚ୍ୟ ଦେବ ଦେବୀଙ୍କ ଏହି ବିଷୟର ସଂକ୍ଷିପ୍ତ ସୂଚନା ନିମ୍ନରେ ପ୍ରଦତ୍ତ ହେଲା ।

ଆସନ : ଦେବ ଦେବୀମାନେ ସାଧାରଣତଃ କୌଣସି ଏକ ଆସନ ଉପରେ ବସିଥିବା କିଂବା ଦଣ୍ଡାୟମାନ ହୋଇଥିବା ଦେଖାଯାଏ । ଏହା ମଧ୍ୟରେ ପଦ୍ମପୁଷ୍ପ ମୁଖ୍ୟସ୍ଥାନ ଅଧିକାର କରେ । ଏକ ପଦ୍ମର ପାଖୁଡ଼ାଗୁଡ଼ିକ କେବଳ ଊର୍ଦ୍ଧ୍ୱକୁ ଥିଲେ ତାହାକୁ 'ପଦ୍ମାସନ' ଏବଂ ପାଖୁଡ଼ାଗୁଡ଼ିକ ଊର୍ଦ୍ଧ୍ୱ ତଥା ନିମ୍ନକୁ ରହିଥିଲେ ତାହାକୁ 'ବିଶ୍ୱପଦ୍ମ' କୁହାଯାଏ । ଚଉକିଭଳି ଆସନର ଖୁରାରେ କିମ୍ବା ପ୍ରଚ୍ଛଦରେ ସିଂହମୂର୍ତ୍ତି ରହିଥିଲେ କିଂବା ଖୁରାଗୁଡ଼ିକ ସିଂହପାଦ ସଦୃଶ ହୋଇଥିଲେ ତାହା ସିଂହାସନ ଭାବେ ପରିଚିତ ହୁଏ । ଚକ୍ରାକାର ଅନୁଚ୍ଚ ଆସନରେ କଚ୍ଛପ ଗୋଡ଼ ସଦୃଶ ଛୋଟଖୁରା ଥିବା ଆସନଗୁଡ଼ିକ 'କୂର୍ମାସନ' ଅଟେ । ଏହା ବ୍ୟତୀତ କେତେକ ଦେବଦେବୀ ମୃଗଚର୍ମ, ବ୍ୟାଘ୍ରଚର୍ମ କିଂବା ଶବାସନ ଉପରେ ଦେଖାଯାଆନ୍ତି । ଅନ୍ୟ କେତେକ ନିଜ ନିଜ ବାହନ ଉପରେ ଆରୋହଣ କରିଥାଆନ୍ତି ।



ପଦ୍ମ



ବିଶ୍ୱପଦ୍ମ



କୂର୍ମାସନ



ସିଂହାସନ

ଅବସ୍ଥା ବା ଭଙ୍ଗୀ : ବହୁ ଦେବଦେବୀ ଚକ୍ରାମାଡି ବା ପଦ୍ମାସନରେ ବସିଥିବା ଦେଖାଯାଏ । ଏଥିରେ ଦୁଇପାଦ ବିପରୀତ ଗୋଡ଼ର ଆଣ୍ଠୁତଳଦେଇ, ଊର୍ଦ୍ଧ୍ୱମୁଖ ହୋଇଥାଏ । ଅନ୍ୟ ଭାବରେ ଏହା 'ଯୋଗାସନ' କିମ୍ବା 'ପାରାୟଣିକ' ଆସନ ଅଟେ । ଅନ୍ୟ ଏକ ଯୋଗାସନରେ ଦୁଇପାଦ ଛନ୍ଦିତ ଅବସ୍ଥାରେ ଭୂମି ଉପରେ ରହିଥିବାବେଳେ ଦୁଇ ଆଣ୍ଠୁ ତିର୍ଯ୍ୟକ ଭାବେ ଊର୍ଦ୍ଧ୍ୱକୁ ଥାଏ । ବସ୍ତ୍ରର ଏକ ପଟି ଦେହର ପୃଷ୍ଠଭାଗ ସହିତ ଦୁଇଗୋଡ଼କୁ ବାନ୍ଧି ରଖେ । ଏହି ବସ୍ତ୍ରକୁ 'ଯୋଗପଟ୍ଟ' କୁହାଯାଏ । ସାଧାରଣତଃ ନୃସିଂହ, ଲକୁଳୀଶ ଓ ମୁନି ଋଷିମାନେ ଏହି ଭଙ୍ଗୀରେ ଦେଖାଯାଆନ୍ତି । 'ଅର୍ଦ୍ଧପାରାୟଣିକ' ଏକ ସରଳ ବସିବା ଭଙ୍ଗୀ । ଏଥିରେ ଦକ୍ଷିଣପାଦ ଓ ବାମଜାନୁ ଭୂମି ଉପରେ ରହିଥିବାବେଳେ ଦକ୍ଷିଣଆଣ୍ଠୁ ଉପରକୁ ଥାଏ । ଚାମୁଣ୍ଡା ଓ ଭୈରବଙ୍କପରି କେତେକ ବିଲକ୍ଷଣ ଦେବଦେବୀ ଏହାର ବିପରୀତ ଭଙ୍ଗୀରେ ବସିଥାଆନ୍ତି । ଚଉକି ଉଚ୍ଚର କୌଣସି ଆସନରେ ବସିଥିବା ଦେବତାଙ୍କ ଗୋଟିଏ ଜାନୁ ଆସନ ଉପରେ ରହିଥିବାବେଳେ ଅନ୍ୟ ପାଦ ସରଳ ଭାବରେ ତଳକୁ ଝୁଲିଥିଲେ, ତାହାକୁ 'ଲଳିତାସନ' କୁହାଯାଏ । 'ରାଜଲୀଳାସନ'ରେ ଦେବତା ଗାମ୍ଭୀର୍ଯ୍ୟପୂର୍ଣ୍ଣ ଭଙ୍ଗୀରେ ବସିଥିବାବେଳେ ଦକ୍ଷିଣଆଣ୍ଠୁ ଉପରେ ଦକ୍ଷିଣହସ୍ତ ଓ ବାମଜାନୁ ଉପରେ ବାମହସ୍ତ ରହିଥାଏ । ଏଥିରେ ସାମାନ୍ୟ ପାର୍ଥକ୍ୟ ସହ ଆରାମଦାୟକ କୌଣସି ବସିବା ଭଙ୍ଗୀକୁ 'ସୁଖାସନ' କୁହାଯାଏ ।



ପଦ୍ମାସନ



ଯୋଗାସନ



ଅର୍ଦ୍ଧପାରାୟଣିକ



ଲଳିତାସନ



ସମଭଙ୍ଗ



ତ୍ରିଭଙ୍ଗ

ଦଣ୍ଡାୟମାନ ଅର୍ଥାତ୍, ଛିଡ଼ା ହୋଇଥିବା ମୂର୍ତ୍ତିଗୁଡ଼ିକୁ 'ସ୍ଥାନକମୂର୍ତ୍ତି' କୁହାଯାଏ । ଏଥିରେ ସାଧାରଣତଃ ତିନି ପ୍ରକାର ଭଙ୍ଗୀ ଦେଖାଯାଏ । ଦୁଇପାଦ ସଂଯୋଗ ଅବସ୍ଥାରେ ସଳଖଭାବେ ଛିଡ଼ା ହୋଇଥିବା ଭାବକୁ 'ସମଭଙ୍ଗ' କୁହାଯାଏ । ମୂର୍ତ୍ତିର କଟିଠାରୁ ଊର୍ଦ୍ଧ୍ୱକୁ ସାମାନ୍ୟ ବକ୍ରଭାବେ ଦଣ୍ଡାୟମାନ ଭଙ୍ଗୀକୁ 'ଦ୍ୱିଭଙ୍ଗ' କୁହାଯାଉଥିବାବେଳେ ଦଣ୍ଡାୟମାନ ଶରୀରରେ ତିନି ବକ୍ରଭାବ ରହିଥିଲେ ତାହା 'ତ୍ରିଭଙ୍ଗ' ଭାବେ ପରିଚିତ ହୁଏ । ଅର୍ଥାତ୍ ଏହା ଏକ ସାବଲୀଳ, ଛନ୍ଦମୟ ଦଣ୍ଡାୟମାନ ଭଙ୍ଗୀ । ଭୈରବ ଓ ବରାହଙ୍କଭଳି କେତେକ ଉଗ୍ରଦେବତା ବୀରଦର୍ପରେ ଆଗେଇ ଯାଉଥିବା ଭଙ୍ଗୀରେ ଦେଖାଯାଆନ୍ତି । ଏହି ଭାବରେ ବାମକୁ ମାଡ଼ି ଚାଲିଥିବା ଭଙ୍ଗୀ ଆଲୀଢ଼ ଏବଂ ଦକ୍ଷିଣକୁ ମାଡ଼ିଚାଲିବା ଭଙ୍ଗୀକୁ ପ୍ରତ୍ୟାଲୀଢ଼ କୁହାଯାଏ । ଏହା ବ୍ୟତୀତ କେତେକ ଦେବଦେବୀ ବିଭିନ୍ନ ନୃତ୍ୟ ଭଙ୍ଗୀରେ ଦେଖାଯାଆନ୍ତି ।

**ହସ୍ତମୁଦ୍ରା :** ହସ୍ତର ଭଙ୍ଗୀରେ ଦେବଦେବୀ ନିଜ ଅନ୍ତରର ଭାବକୁ ପ୍ରକାଶ କରିଥାଆନ୍ତି । ଦକ୍ଷିଣ ହସ୍ତର ପଦ୍ମ ସମ୍ମୁଖକୁ ଓ ଅଙ୍ଗୁଳିଗୁଡ଼ିକ ତଳକୁ ରହିଲେ ତାହା 'ବରଦ' ମୁଦ୍ରା ପ୍ରଦର୍ଶନ କରେ । ବାମ ହସ୍ତର ପଦ୍ମ ସମ୍ମୁଖକୁ ଓ ଅଙ୍ଗୁଳୀଗୁଡ଼ିକ ଊର୍ଦ୍ଧ୍ୱକୁ ରହିଲେ ତାହା 'ଅଭୟ' ମୁଦ୍ରା ଦର୍ଶାଏ । 'ଧର୍ମଚକ୍ରପ୍ରବର୍ତ୍ତନ' ମୁଦ୍ରାରେ ଦୁଇ ହସ୍ତର ତର୍ଜନୀ ଅଙ୍ଗୁଳି ବୃଦ୍ଧାଙ୍ଗୁଳି ସହିତ ସଂଯୋଗହୋଇ, ହୃଦୟ ନିକଟରେ ଦକ୍ଷିଣହସ୍ତ ଉପରେ ବାମହସ୍ତ ରହେ । 'ଜ୍ଞାନ' ମୁଦ୍ରାରେ ଏହିପରି ଭାବରେ କେବଳ ଦକ୍ଷିଣହସ୍ତଟି ହୃଦୟ ନିକଟରେ ରହିଥାଏ । ବ୍ୟାଖ୍ୟାନ ମୁଦ୍ରାରେ ମଧ୍ୟ ଏହି ଭଙ୍ଗୀ ପ୍ରଯୁଜ୍ୟ । ଏହା ଧର୍ମ ଶିକ୍ଷାଦେବା ଭାବ ପ୍ରଦର୍ଶନ କରେ । 'ଧ୍ୟାନ' ମୁଦ୍ରା ବା 'ଯୋଗ' ମୁଦ୍ରାରେ ଦେବତା ପଦ୍ମାସନରେ ବସିଥିବାବେଳେ ଊର୍ଦ୍ଧ୍ୱମୁଖ ଦୁଇ ହସ୍ତପଦ୍ମ, ବାମ ଉପରେ ଦକ୍ଷିଣ ରହି ପାଦଉପରେ ରହେ । 'ଭୂମିସ୍ପର୍ଶ' ମୁଦ୍ରାରେ ପଦ୍ମାସନରେ ବସିଥିବା ଦେବତାଙ୍କ ଦକ୍ଷିଣହସ୍ତ ଦକ୍ଷିଣଆଣ୍ଠୁ ସହିତ ଏବଂ ବାମହସ୍ତ ବାମଆଣ୍ଠୁ ସହିତ ସଂଯୋଗହୋଇ ଭୂମିକୁ ସ୍ପର୍ଶ କରୁଥାଏ । ଅନ୍ୟ କେତେକ ଦେବତା ବିଭିନ୍ନ ନୃତ୍ୟ ମୁଦ୍ରା ପ୍ରଦର୍ଶନ କରୁଥିବା ଦେଖାଯାଏ ।


ବରଦ


ଅଭୟ


ବ୍ୟାଖ୍ୟାନ

**ହସ୍ତର ଆୟୁଧ ବା ବସ୍ତୁ :** ଆୟୁଧ ଶବ୍ଦଟି ଦେବତାମାନେ ହସ୍ତରେ ଧାରଣ କରିଥିବା ଅସ୍ତ୍ରଶସ୍ତ୍ରକୁ ବୁଝାଉଥିବାବେଳେ ଦେବତାମାନେ ଅସ୍ତ୍ରଶସ୍ତ୍ର ବ୍ୟତୀତ ଅନ୍ୟ ବସ୍ତୁ ମଧ୍ୟ ଧାରଣ କରିଥାଆନ୍ତି । ତେବେ, ଏଥିରୁ ଅଧିକାଂଶ ବସ୍ତୁ ପରୋକ୍ଷରେ ଅସ୍ତ୍ରଭଳି କାର୍ଯ୍ୟ କରୁଥିବାରୁ ଦେବତାଙ୍କ ହସ୍ତର ଏହି ସମସ୍ତ ପଦାର୍ଥକୁ 'ଆୟୁଧ' କୁହାଯାଏ । ଏହି ପଦାର୍ଥଗୁଡ଼ିକର ଏକ ସାଧାରଣ ଅର୍ଥ ବୁଝାଉଥିବାବେଳେ ଅନ୍ୟ ଏକ ଗୂଢ଼ ଅର୍ଥ ମଧ୍ୟ ରହିଛି । ତେବେ, ଏହି ସମସ୍ତ ଆୟୁଧ ସାଧାରଣତଃ ପାଞ୍ଚ ଶ୍ରେଣୀର, ଯଥା : ଯୁଦ୍ଧାସ୍ତ୍ର ବା ଅସ୍ତ୍ର, ଫଳପୁଷ୍ପ, ପ୍ରାକୃତିକ ବସ୍ତୁ ଓ ପ୍ରାଣୀ, ବାଦ୍ୟଯନ୍ତ୍ର ଓ ବିଭିନ୍ନ ବ୍ୟବହାର୍ଯ୍ୟ ପଦାର୍ଥ ।

ଅସ୍ତ୍ର ମଧ୍ୟରେ ବିଷ୍ଣୁଙ୍କ 'ଚକ୍ର' ସମୟ ବା କାଳର ପ୍ରତୀକ ଏବଂ ବିନାଶକାରୀ ଶକ୍ତି ।'ଗଦା' ଚେତନାର ପ୍ରତୀକ। 'ତ୍ରିଶୂଳ' ତ୍ରିକାଳ, ତ୍ରିଶକ୍ତିଭଳି ବହୁବିଧ ତ୍ରିଅର୍ଥ ସୂଚକ। 'ପାଶ' ସଂଯମ ତଥା ବନ୍ଧନଶକ୍ତି। ଶୂଳ ଓ ଶର ଭେଦଶକ୍ତି। 'ଖଡ୍‌ଗ' ଛିନ୍ନଶକ୍ତି। 'ଖେଟକ' ପ୍ରତିରୋଧଶକ୍ତି। 'କର୍ତ୍ତରି' କର୍ତ୍ତନଶକ୍ତି। 'ଅଙ୍କୁଶ' ନିୟନ୍ତ୍ରଣଶକ୍ତି ଅଟେ। 'ପରଶୁ' ଅଜ୍ଞାନ ଅନ୍ଧକାରର ଦୂରକର୍ତ୍ତା, ବ୍ରହ୍ମଅସ୍ତ୍ର ଅଟେ।



ଚକ୍ର



ଗଦା


ତ୍ରିଶୂଳ


ପାଶ


ଅଙ୍କୁଶ


ଶୂଳ



ବଜ୍ର


ଧନୁ


ଶର


ଖଡ୍‌ଗ


ଖେଟକ



କର୍ତ୍ତରି


ପରଶୁ

ପୁଷ୍ପ ଓ ଫଳ ମଧ୍ୟରେ 'ପଦ୍ମ' ପବିତ୍ରତା ତଥା ଦିବ୍ୟଜ୍ଞାନର ପ୍ରତୀକ, 'ଚମ୍ପକ' ସୁଗନ୍ଧ ତଥା ସମର୍ପଣର ସଙ୍କେତ । 'ବୀଜପୂରକ' ଅର୍ଥାତ୍, ବୀଯପୂର୍ଣ୍ଣଫଳ, ସୃଷ୍ଟିଶକ୍ତିର ମୂଳାଧାର । 'ବିଲ୍ୱଫଳ' ଆରୋଗ୍ୟ ତଥା ନିରାମୟ ଜୀବନର ପ୍ରତୀକ। ଜାମ୍ବେଲ, ଟଗା ଇତ୍ୟାଦି ଦୂରଗୁଣର ସ୍ୱଙ୍କେତ ଅଟେ । 'ଆଖୁ, ଶସ୍ୟକେଣ୍ଡା' ସମୃଦ୍ଧିର ପ୍ରତୀକ।


ପଦ୍ମ




ଚମ୍ପକ


ବୀଜପୂରକ


ଜାମ୍ବେଲ

ପ୍ରାକୃତିକ ବସ୍ତୁ ମଧ୍ୟରେ 'ଅଗ୍ନି' ବିନାଶକାରକ ତଥା ପାପନାଶକ । ଜଳପୂର୍ଣ୍ଣ 'ପୂର୍ଣ୍ଣକୁମ୍ଭ' ପୂର୍ଣ୍ଣତା ତଥା ଜ୍ଞାନ ଓ ପ୍ରାଣର ସଙ୍କେତ । ପ୍ରାଣୀମାନଙ୍କ ମଧ୍ୟରେ 'ମୃଗ' ବେଗବାନ୍ ମନର ସଙ୍କେତ । ନାଗ ବା 'ନାଗପାଶ' କୁଣ୍ଡଳିନୀ ଶକ୍ତିର ପ୍ରତୀକ। 'ମନୁଷ୍ୟ' କାମନା ତଥା ଜୀବାତ୍ମାର ପ୍ରତୀକ। ଏମାନଙ୍କୁ ଧାରଣ କରିବା ଅର୍ଥ ଏହି ଶକ୍ତିମାନଙ୍କୁ ନିୟନ୍ତ୍ରଣ କରିବା । ଏହା ବ୍ୟତୀତ କୁକ୍କୁଟ ସୂର୍ଯ୍ୟାଲୋକ ବା ଜ୍ଞାନାଲୋକ ପ୍ରତି ସଚେତନତା, ନକୁଳ ବା ନେଉଳ ବୁଦ୍ଧି ତଥା ସମୃଦ୍ଧିର ସଙ୍କେତ । 'ଶଶା' ଶୀତଳତା ଓ ଚନ୍ଦ୍ରଙ୍କ ଗୁଣର ପ୍ରତିକ ଅଟେ ।


ପୂର୍ଣ୍ଣଘଟ


ମୃଗ


ନାଗପାଶ


ନର


ଅଗ୍ନି


ଶଙ୍ଖ


ଡମରୁ


ଘଣ୍ଟା


ବୀଣା


ଖର୍ଖରୀ

ସ୍ରୁବ ସ୍ରୁଚ

ଜପମାଳା

କମଣ୍ଡଳୁ

ପୁସ୍ତକ

ଦର୍ପଣ

ଲଡ୍ଡୁକ

ଅଞ୍ଜନପାତ୍ରୀ

ଲଡ୍ଡୁକପାତ୍ର

ଦନ୍ତଖଣ୍ଡ

ମୁଶଳ

ଦଣ୍ଡ

ଲକୁଟ

ଖଟ୍ୱାଙ୍ଗ

ଛତ୍ର

ଚାମର

ମାର୍ଜନୀ

ବାଦ୍ୟଯନ୍ତ୍ର ମଧ୍ୟରେ ସମୁଦ୍ରରୁ ଜାତ 'ଶଙ୍ଖ' ସୃଷ୍ଟିକ୍ରିୟାର ଆଦିଶବ୍ଦ ତଥା ଶୁଭ ଶବ୍ଦର ସ୍ରଷ୍ଟା । 'ଡମ୍ବରୁର' ଶବ୍ଦ ଜାଗ୍ରତକର୍ତ୍ତା । ବୀଣା ସ୍ୱର୍ଗୀୟ ଝଙ୍କାରର ସ୍ରଷ୍ଟା । 'ଘଣ୍ଟା' ଶବ୍ଦ କାଳପ୍ରତି ସଚେତନତାର ସଙ୍କେତ । ଲୌହ ଦଣ୍ଡ କିମ୍ବା ଲୌହ ଫଳକରେ ଲୌହ ବଳୟ ପୁଞ୍ଜ ଲାଗିଥିବା ଖର୍ଖରୀ ଏକ ରୁକ୍ଷ .ଏବଂ କର୍କଶ ଶବ୍ଦକାରକ । ଏହା ଭୟଙ୍କରତାର ସଙ୍କେତ ।

ଦେବତାମାନେ ଧାରଣ କରୁଥିବା ବିଭିନ୍ନ ପ୍ରକାର ବସ୍ତୁ ମଧ୍ୟରେ ଜପମାଳା, ଏକାଗ୍ରତା, କମଣ୍ଡଳୁ ପବିତ୍ରତା, ଓ ପୁସ୍ତକ ଜ୍ଞାନର ପ୍ରତୀକ ଅଟେ । 'ସ୍ରୁବ', 'ସ୍ରୁଚ' ଆହୁତି ବା ବଳୀର ସଂକେତ । 'ପୂର୍ଣ୍ଣଘଟ' ଜ୍ଞାନ ତଥା ପୂର୍ଣ୍ଣତା ଅଟେ । ଅନ୍ୟ ଭାବରେ ଏହା ଶରୀର ଓ ଆତ୍ମାକୁ ମଧ୍ୟ ବୁଝାଏ । କାଷ୍ଠଦଣ୍ଡ 'ଲକୁଟ' ଧାରଣ ବା ଅବଲମ୍ବନର ପ୍ରତୀକ ଅଟେ । ମୋଦକ ପାତ୍ର' ଐଶ୍ୱର୍ଯ୍ୟର ପ୍ରତିକ । 'ଦନ୍ତଖଣ୍ଡ' ଓ 'ମୁଷଳ' କୃଷିକର୍ମର ସଙ୍କେତ । 'ଦର୍ପଣ' ଆତ୍ମଦର୍ଶନ ଓ 'ଅଞ୍ଜନପାତ୍ରୀ' ଦିବ୍ୟ ଦୃଷ୍ଟିର ପ୍ରତୀକ ଅଟେ । 'ଚାମର' ସେବାର ପ୍ରତୀକ 'ଛତ୍ର' ରାଜକୀୟତା, 'ଦଣ୍ଡ' ସୁରକ୍ଷାର ଏବଂ 'ମାର୍ଜନୀ' ନିର୍ମଳତାର ସଂକେତ ଅଟେ ।



## ସହାୟକ ଗ୍ରନ୍ଥ ସୂଚୀ: BIBILOGRAPHY


01. J. Fergusson: Tree and Serpent worship in India, London,1873
02. Rajendralal Mitra: The Antiquities of Orissa, Vol- I&II, Calcutta,1875-1980
03. J. Dowson: Classical Dictionary of Hindu Mythology, London, 1903
04. E.W. Hopkines: Epic Mythology (EIAR), Starssburg,1915
05. T.A.Gopinath Rao: Elements of Hindu Iconography, Madras,1916
06. A.K.Coomaraswamy: Yaksas, Vol- I & II, Washington, 1928
07. R.D.Banarje: History of Orissa, Vol- I & II, Calcutta, 1930-1931
08. J.N.Banarjea: The Development of Hindu Iconography, Delhi,1956
09. Stella Kramrish: Indian Sculptures, Philladelphia, 1960
10. K.C.Panigrahi: Archaeological Remains at Bhubaneswar, Calcutta,1961
11. Debala Mitra: Bhubaneswar (A.S.I), New Delhi, 1961
12. Debala Mitra: Konarak (A.S.I), New Delhi, 1968
13. S.K. Saraswati: A Survery of Indian Sculpture, Bombay, 1968
14. Allice Getty: Ganesa, New Delhi,1971
15. Charles Louis Fabri: History of Art of Orissa, New Delhi,1974
16. B. Sahai: Iconography of Minor Hindu and Budhist Deties, New Delhi, 1975
17. Vidya Dahejia, Early Stone Temples of Orissa, New Delhi, 1979
18. K.C.Panigrahi: History of Orissa, Cuttack, 1981
19. R.P. Mohapatra: Khandagiri & Udayagiri, New Delhi,1984
20. S.C.Panda: Naga Cult in Orissa, Delhi,1984
21. T.E.Donaldson: The Hindu Temple Art of Orissa, Vol.- II & III, Leiden, 1987

୨୩. ପଣ୍ଡିତ ନୀଳକଣ୍ଠ ରଥ: ଚରିତ ଚିନ୍ତାମଣି, (ଓ.ସା.ଏ) ଭୁବନେଶ୍ୱର, ୧୯୬୨
୨୪. ଦୂର୍ଗା ଚ଼ରଣ ପଣ୍ଡା: କଳିଙ୍ଗର ମନ୍ଦିର ସ୍ଥାପତ୍ୟ, ଭୁବନେଶ୍ୱର, ୨୦୦୦
୨୫. ଦୂର୍ଗା ଚ଼ରଣ ପଣ୍ଡା: ଭାରତୀୟ ସଂସ୍କୃତି ଓ ମୂର୍ତ୍ତିକଳାରେ ହିନ୍ଦୁ ଦେବଦେବୀ, ୨୦୦୩




